# ବୈଷ୍ଣବ ସାହିତ୍ୟ ତତ୍ତ୍ୱ

## ପ୍ରଥମ ଭାଗ



ଡଃ ଆଶୁତୋଷ ପଟ୍ଟନାୟକ .....

# ବୈଷ୍ଣବ ସାହିତ୍ୟତତ୍ତ୍ୱ (୧)

ଲେଖକ :
ଡକ୍ଟର ଆଶୁତୋଷ ପଟ୍ଟନାୟକ
ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ ।

ପ୍ରକାଶକ :
ଶ୍ରୀ ଅମିତବିକ୍ରମ ପଟ୍ଟନାୟକ
ଭୁବନେଶ୍ୱର
ପ୍ରକାଶକାଳ :
ପ୍ରଥମ ସଂସ୍କରଣ
ବିଜୟାଦଶମୀ-୧୯୮୯
ମୁଦ୍ରଣ
କୁନିରାଇଜ ପ୍ରେସ୍
ମୂଲ୍ୟ : ଚାଳିଶି ଟଙ୍କା

**Vaishnab Sahitya Tatwa (1)**

Writer :
**Dr. Ashutosh Pattanayak**
Reader, P.G Deptt. of oriya
Utkal University

Publisher :
**Amitbikram Pattanayak**
Bhubaneswar
1st Edision

**Bijaya Dasami- 1989**
Printed at :
**Kuni Raija Press**
619, Sahid Nagar B B S R
**Price— Rupees Forty only**

# ମୁଖବନ୍ଧ

ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଛାତ୍ର-ଛାତ୍ରୀମାନଙ୍କୁ ସ୍ୱତନ୍ତ୍ର ପତ୍ର ଧର୍ମ ସାହିତ୍ୟର ଅଧ୍ୟାପନା କଲାବେଳେ ସବୁ ବର୍ଷ ସେମାନେ ବୈଷ୍ଣବ ସାହିତ୍ୟତତ୍ତ୍ୱ ସମ୍ବଳିତ ଓଡ଼ିଆ ଗ୍ରନ୍ଥର ଅଭାବ ବିଷୟରେ ଅଭିଯୋଗ କରନ୍ତି । ଏହି ଅଭାବ ପୂରଣ କରିବାପାଇଁ ମୋର ବହୁଦିନରୁ ଅଭୀପସା ଥିଲା । ଶାରୀରିକ ଅସୁସ୍ଥତା ଓ ଅନ୍ୟାନ୍ୟ ଅସୁବିଧା ହେତୁ ଗ୍ରନ୍ଥ ପରିକଳ୍ପନାକୁ ରୂପ-ଦେବାରେ ବିଳମ୍ବ ନିଶ୍ଚୟ ହୋଇଛି । ଏହି ଗ୍ରନ୍ଥଟି ମୁଁ ଛାତ୍ର-ଛାତ୍ରୀଙ୍କ ପାଇଁ କେବଳ ଲେଖୁନାହିଁ, ମୁଁ ଲେଖୁଛି ଓଡ଼ିଆ-ଧର୍ମ-ସାହିତ୍ୟର ପାଠକମାନଙ୍କ ପାଇଁ ।

ଓଡ଼ିଆ-ଧର୍ମ-ସାହିତ୍ୟ କହିଲେ ଅନେକ ଅଧ୍ୟାପକ ବନ୍ଧୁ ନାସିକା କୁଞ୍ଚନ କରନ୍ତି ଏବଂ ଏହାକୁ ସାହିତ୍ୟର ମର୍ଯ୍ୟାଦାଦେବାକୁ କୁଣ୍ଠାପ୍ରକାଶ କରନ୍ତି । ମୋର ସୂକ୍ଷ୍ମ ବିବେଚନାରେ ଏହା ମୋର ଅନୁମାନ ଯେ ଧର୍ମ ସାହିତ୍ୟରେ ବର୍ଣ୍ଣିତ ତତ୍ତ୍ୱଗୁଡ଼ିକରେ ଏକ ଗୂଢ଼ମର୍ମାର୍ଥ ଓ ସାଙ୍କେତିକ ଅର୍ଥଥିବାରୁ ସେଗୁଡ଼ିକ ସୁଖପାଠ୍ୟ ହୋଇପାରେ ନାହିଁ । ସେ ତତ୍ତ୍ୱଗୁଡ଼ିକୁ ଥରେ ବୁଝିନେଲେ ଧର୍ମ ସାହିତ୍ୟକୁ ବୁଝିବା ଯେପରି ସହଜ ହେବ ସେହିପରି ଆସ୍ୱାଦ୍ୟହେବ । ପରମପୂଜ୍ୟ ସ୍ୱର୍ଗତ ଡଃ ଆର୍ତ୍ତବଲ୍ଲଭ ମହାନ୍ତି "ବିଦଗ୍ଧ ଚିନ୍ତାମଣି," 'ମଥୁରା-ମଙ୍ଗଳ' 'ରସକଲ୍ଲୋଳ' ପ୍ରଭୃତି ଗ୍ରନ୍ଥରେ ଏହି ତତ୍ତ୍ୱଗୁଡ଼ିକର ଆଭାସ ଦେଇଛନ୍ତି । ତାହା ମୋତେ ଛାତ୍ର ଜୀବନରେ ଯେତିକି ପ୍ରଲୋଭିତ କରିଥିଲା, ସେହି ବିଷୟରେ ଅଧିକ ତଥ୍ୟପାଇଁ ଜିଜ୍ଞାସୁ କରିଥିଲା । ବହୁଦିନର ଶ୍ରଦ୍ଧା ଏବଂ ସେହି ଶ୍ରଦ୍ଧାପୂର୍ତ୍ତି ପାଇଁ ବିଭିନ୍ନ ତତ୍ତ୍ୱମୂଳକ ଗ୍ରନ୍ଥ ଅଧ୍ୟୟନର ପରିଣତି ହେଉଛି ମୋର ଏହି ଗ୍ରନ୍ଥ । ଏହାକୁ ତିନଟି ଖଣ୍ଡରେ ବିଭକ୍ତକରି ପ୍ରଥମ ଖଣ୍ଡରେ ଶୁଦ୍ଧାଭକ୍ତି, ଦ୍ୱିତୀୟ ଖଣ୍ଡରେ ଜ୍ଞାନମିଶ୍ରାଭକ୍ତି ଓ ତୃତୀୟ ଖଣ୍ଡରେ 'ଶ୍ରୀଜଗନ୍ନାଥ ଉପାସନା' ବିଷୟ ନିହିତ କରିବାର ଅଭିଳାଷ ଅଛି । ମୋର ଏହି ଅଭିଳାଷର ପ୍ରଥମ ପ୍ରକାଶ ହେଉଛି ଏହି ପ୍ରଥମ ଗ୍ରନ୍ଥ 'ବୈଷ୍ଣବ ସାହିତ୍ୟତତ୍ତ୍ୱ' (୧) । ଏହି ଗ୍ରନ୍ଥର ଦ୍ୱିତୀୟ ଖଣ୍ଡର ରଚନାକାର୍ଯ୍ୟ ବହୁଦୂର ଆଗେଇଥିଲେ ସୁଦ୍ଧା ଶାରୀରିକ ଅସୁସ୍ଥତା ହେତୁ ତାହା ସ୍ଥଗିତ ରହିଥିଲେ ହେଁ ଯଥାଶୀଘ୍ର ତାହାର ସମାପ୍ତି ପାଇଁ ଚେଷ୍ଟା କରୁଛି ।

ଏହି ଗ୍ରନ୍ଥକୁ ଏକ ମୌଳିକ ଗ୍ରନ୍ଥବୋଲି ମୁଁ ଦାବୀକରିବି ନାହିଁ । କାରଣ ଏହି ଗ୍ରନ୍ଥକୁ ରଚନା କଲାବେଳେ ବୈଷ୍ଣବ ଗୋସ୍ୱାମୀମାନଙ୍କ ରଚିତ ଗ୍ରନ୍ଥରେଥିବା ଆଲୋଚନା ଓ ଦୃଷ୍ଟାନ୍ତକୁ ସମ୍ପୂର୍ଣ୍ଣ ଭାବରେ ସୁରକ୍ଷିତ କରିବାକୁ ହେବ ।

ସେହିଭଳି ଶ୍ରୀମଦ୍ଭାଗବତ, ନାରଦଭକ୍ତିସୂତ୍ର, ଶାଣ୍ଡିଲ୍ୟ ଭକ୍ତିସୂତ୍ର, ପଞ୍ଚରାତ୍ର ଧର୍ମର ବିଭିନ୍ନ ସଂହିତା'—ଏଗୁଡ଼ିକୁ ମଧ୍ୟ ଅକ୍ଷରେ ଅକ୍ଷରେ ଅନୁସରଣ କରିବାକୁ ପଡ଼ିବ । ଏଥିରେ ମୌଳିକତା ହେଉଛି ମୋର ସୁସଂଯୋଜନା ବୋଧଗମ୍ୟ ଓ ଉପସ୍ଥାପନା ।

ପ୍ରାୟ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପ୍ରଥମ ଦଶନ୍ଧପର୍ଯ୍ୟନ୍ତ ପରିବ୍ୟାପ୍ତ ଓଡ଼ିଆ ବୈଷ୍ଣବ ସାହିତ୍ୟ ହେଉଛି ଶୁଦ୍ଧାଭକ୍ତି କେନ୍ଦ୍ରିକ । ରସକଲ୍ଲୋଳ, ବ୍ରଜବିହାର, ନବ ବୃନ୍ଦାବନ ବିହାର ଏବଂ ସଦାନନ୍ଦ ଓ ଅଭିମନ୍ୟୁଙ୍କର ବୈଷ୍ଣବ କାବ୍ୟ ସମୂହ ତଥା ସେ ସମୟର ଅନ୍ୟାନ୍ୟ ପ୍ରମୁଖ କବି ଭକ୍ତଚରଣ ଓ ଶ୍ୟାମସୁନ୍ଦର ଦେବଙ୍କ ବୈଷ୍ଣବ ସାହିତ୍ୟମାନଙ୍କରେ ଯେଉଁ ବିଷୟବସ୍ତୁ, ଚରିତ୍ର ଓ ପ୍ରେମ ପ୍ରଭୃତିର ଉପସ୍ଥାପନା କରାଯାଇଛି, ତାହାର ଏକ ସ୍ୱତନ୍ତ୍ର ନିୟମ ରହିଛି । ଏହି ନିୟମଗୁଡ଼ିକ ବୈଷ୍ଣବ ଗୋସ୍ୱାମୀକୃତ ତାତ୍ତ୍ୱିକ ଗ୍ରନ୍ଥର ଅନୁଶାସନରେ ପରିଚାଳିତ । ତେଣୁ ସେଗୁଡ଼ିକୁ ନଜାଣିଲେ ମଧ୍ୟଯୁଗୀୟ ଓଡ଼ିଆ କୃଷ୍ଣକାବ୍ୟ ବା ଅନ୍ୟ କୃଷ୍ଣ ସାହିତ୍ୟକୁ ଅନୁଶୀଳନ କରିବା ସହଜସାଧ୍ୟ ହେବନାହିଁ । ଏହି ଗ୍ରନ୍ଥରେ ମୁଁ ସେଗୁଡ଼ିକୁ ଯଥାସମ୍ଭବ ସୁବୋଧ୍ୟକରି ଲେଖିବାକୁ ଚେଷ୍ଟାକରିଅଛି । ଏହାସହିତ ବୈଷ୍ଣବ ଧର୍ମର ବିକାଶଧାରାରେ ଗୋପାଳକୃଷ୍ଣ ଉପାସନା ଓ ଶୁଦ୍ଧାଭକ୍ତି ସାଧନା ମାର୍ଗର ଅଭ୍ୟୁଦୟ ବିଷୟରେ ଆଲୋକପାତ କରିଛି । ବୈଷ୍ଣବଧର୍ମର ପୁଣ୍ୟପୀଠ ଓଡ଼ିଶା, ଓଡ଼ିଆବୈଷ୍ଣବ ସାହିତ୍ୟର ବିକାଶରେ କିପରି ସହାୟକ ହୋଇଛି, ତାହା ମୋର ଆଲୋଚନାର ପରିସରଭୁକ୍ତ । ଗ୍ରନ୍ଥର କଳେବର ବୃଦ୍ଧି ଆଶଙ୍କାରେ ମୁଁ ବିଭିନ୍ନ ଓଡ଼ିଆ କୃଷ୍ଣକାବ୍ୟରୁ ଉଦ୍ଧୃତି ଗ୍ରହଣ କରିନାହିଁ ।

ଏହି ଗ୍ରନ୍ଥ ରଚନା ପାଇଁ ମୋର ପୂଜ୍ୟ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କର ସସ୍ନେହ ପ୍ରେରଣା ଏବଂ ମୋର ସହଧର୍ମିଣୀ ଶ୍ରୀମତୀ ବିମଳା ମହାନ୍ତିଙ୍କର ଉତ୍ସାହ ନିଶ୍ଚିତଭାବରେ ମୋତେ ଉଦ୍‌ବୁଦ୍ଧ କରିଛି ! ମୋର ଅସୁସ୍ଥତା ସମୟରେ ଗ୍ରନ୍ଥ ରଚନା କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ମୋର ଶ୍ରଦ୍ଧେୟ ଛାତ୍ର ରଙ୍କନିଧି ବଳିଆରସିଂହଙ୍କର ସାହାଯ୍ୟ ଓ ସହଯୋଗଲାଗି ମୁଁ ତାଙ୍କର ଶୁଭକାମନା କରୁଛି ।

* ଶ୍ରୀକୃଷ୍ଣାର୍ପଣମସ୍ତୁ *

ଭୁବନେଶ୍ୱର, ବିନୀତ

ବିଜୟାଦଶମୀ-୧୯୮୯ ଆଶୁତୋଷ ପଟ୍ଟନାୟକ

# ସୂଚୀପତ୍ର

# ବୈଷ୍ଣବ ଧର୍ମର ଉଦ୍ଭବ ଓ ବିକାଶଧାରା

ବୈଷ୍ଣବଧର୍ମ ଭାରତ ବର୍ଷରେ ଏକ ପ୍ରାଚୀନତମ ତଥା ଗଣଧର୍ମ । ଏହି ବୈଷ୍ଣବ ଧର୍ମର ବିକାଶଧାରା ଦର୍ଶାଇବା ପୂର୍ବରୁ ପ୍ରଥମେ ବିଷ୍ଣୁ ଉପାସନାର ପରମ୍ପରା, ପୃଷ୍ଠଭୂମି ଓ ପ୍ରାଚୀନତା ସମ୍ପର୍କରେ ସୂଚନା ପ୍ରଦାନ କରିବା ଉଚିତ ମନେହୁଏ । ବିଷ୍ଣୁ ଉପାସନାର ମୂଳ ଅନ୍ୱେଷଣ କରିବାକୁ ଗଲେ ପ୍ରଥମେ ବେଦରେ ବିଷ୍ଣୁ ଉପାସନାର ସଙ୍କେତ ଦେଖିବାକୁ ମିଳିଥାଏ । କିନ୍ତୁ ଏଠାରେ ଉଲ୍ଲେଖଯୋଗ୍ୟ ଯେ ବେଦରେ ବର୍ଣ୍ଣିତ ବିଷ୍ଣୁ ଶଙ୍ଖ-ଚକ୍ର-ଗଦାପଦ୍ମଧାରୀ ନାରାୟଣ ବା ଧନୁର୍ଦ୍ଧାରୀ ଶ୍ରୀରାମ କିମ୍ବା ମୁରଲୀଧାରୀ ରାଧାବଲ୍ଲଭ ଶ୍ରୀକୃଷ୍ଣ ନୁହନ୍ତି । ଏଠାରେ "ବିଷ୍ଣୁ" ସର୍ବବ୍ୟାପକ ଅର୍ଥରେ ଗୃହୀତ ହୋଇଛନ୍ତି । "ବିଷ୍" ଅର୍ଥ ବ୍ୟାପ୍ତି । ତେଣୁ ଯେ ସର୍ବତ୍ର ପରିବ୍ୟାପ୍ତ, ସେ ହେଉଛନ୍ତି 'ବିଷ୍ଣୁ' । 'ବିଷ୍ଣୁ' ପୁରାଣରେ 'ବିଷ୍' ଶବ୍ଦଟି ପ୍ରବେଶ ଅର୍ଥରେ ସଙ୍କେତିତ ହେତୁ 'ବିଷ୍ଣୁ' ଶବ୍ଦର ଅନ୍ୟ ଅର୍ଥ ହେଉଛି, ଯେ ସର୍ବତ୍ର ପ୍ରବେଶ କରନ୍ତି । (୧) ଋଗ୍‌ବେଦରେ ଆକାଶ, ପୃଥିବୀ ଓ ସମସ୍ତ ଜଗତକୁ ବିଷ୍ଣୁ ଧାରଣ କରିଥିବା କୁହାଯାଇଛି । (୨) ପୁନଶ୍ଚ ତାଙ୍କୁ ପ୍ରଭୁ ଓ ମାନବ ଜଗତର କଲ୍ୟାଣ କର୍ତ୍ତା ରୂପେ ବର୍ଣ୍ଣନା କରାଯାଇଛି । (୩) ବିଷ୍ଣୁ ବିକ୍ରମର ସହିତ ତିନପାଦ ନିକ୍ଷେପ କରି ବିଶ୍ୱ ପ୍ରଦକ୍ଷିଣ କରୁଥିବାରୁ ତାଙ୍କୁ ତ୍ରିବିକ୍ରମ ମଧ୍ୟ କୁହାଯାଇଛି । ବେଦରେ ବିଷ୍ଣୁଙ୍କୁ ଯେଉଁଭଳି ଭାବେ ଚିତ୍ରଣ କରାଯାଇଛି, ସେଥିରୁ ମନେହୁଏ ବିଷ୍ଣୁ ଏବଂ ସୂର୍ଯ୍ୟ ଏକ ଓ ଅଭିନ୍ନ । ଅନ୍ୟ ଅର୍ଥରେ କହିଲେ ସୂର୍ଯ୍ୟଙ୍କର ଅନ୍ୟନାମ ହେଉଛି ବିଷ୍ଣୁ । (୫)

ବେଦୋତ୍ତର କାଳରେ ଉପନିଷଦ୍ ମଧ୍ୟ ବିଷ୍ଣୁଙ୍କର ପ୍ରାଧାନ୍ୟ ପ୍ରଖ୍ୟାପିତ କରିଛି । 'ମୈତ୍ରୀଉପନିଷଦ୍'ରେ ବିଷ୍ଣୁଙ୍କୁ ଅନ୍ନ ଏବଂ ଜଗତର ଧାରଣକର୍ତ୍ତା ରୂପେ ସୂଚିତ କରାଯାଇଛି । (୬)'କଠୋପନିଷଦ୍'ରେ ମଧ୍ୟ ସେହିଭଳି କୁହାଯାଇଛି । ଭଗବାନ୍ ବିଷ୍ଣୁଙ୍କର ଧାମ ହେଉଛି

ପରମପଦ । ଉନ୍ନତ ଆତ୍ମା କେବଳ ସେହି ଧାମକୁ ପ୍ରାପ୍ତ ହୋଇଥାଏ । ବେଦ ତଥା ଉପନିଷଦ୍‌ର ବିଭିନ୍ନ ପ୍ରମାଣରୁ ସୂଚନା ମିଳେ ଯେ ବୈଦିକ ଯୁଗରେ ବିଷ୍ଣୁ କେବଳ ପ୍ରଧାନ ଦେବତା ନଥିଲେ, ଗୃହ ଦେବତା ରୂପେ ମଧ୍ୟ ତାଙ୍କର ଯଥେଷ୍ଟ ପ୍ରାଧାନ୍ୟ ରହିଥିଲା ।

ବୈଦିକ ଯୁଗର ପ୍ରଥମାର୍ଦ୍ଧରେ ପ୍ରାର୍ଥନା ମାଧ୍ୟମରେ ବହୁ ଦେବଦେବୀ ଉପାସନା ଓ ଯଜ୍ଞଦ୍ୱାରା ଦେବତାମାନଙ୍କର ତୁଷ୍ଟି ବିଧାନ ଓ ଇପ୍‌ସିତ ଫଳଲାଭ ଉପରେ ପ୍ରାଧାନ୍ୟ ଦିଆଯାଉଥିଲା । କିନ୍ତୁ କ୍ରମଶଃ ବହୁ ଦେବଦେବୀଙ୍କ ଉପରେ ଜଣେ ପ୍ରଭାବଶାଳୀ ପ୍ରଧାନ ଦେବତାଙ୍କର ପରିକଳ୍ପନା ବୈଦିକ ଚିନ୍ତାଧାରାରେ ଦୃଢ଼ୀଭୂତ ହେବାକୁ ଲାଗିଥିଲା । ବୈଦିକ ଯୁଗର ଦ୍ୱିତୀୟାର୍ଦ୍ଧରେ ବହୁକାଳ ବ୍ୟାପୀ ବ୍ୟୟବହୁଳ ଦୁଷ୍କର ଯଜ୍ଞକ୍ରିୟାସ୍ଥାନରେ ଆତ୍ମତତ୍ତ୍ୱ ତଥା ବ୍ରହ୍ମତତ୍ତ୍ୱ ଚିନ୍ତନ ଓ ଅନ୍ତର୍ଦ୍ଧୃଷ୍ଟିରେ ବ୍ରହ୍ମାନୁଭୂତି ଜନିତ ମୋକ୍ଷଲାଭକୁ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ତେଣୁ ବୈଦିକ ଯୁଗର ଦ୍ୱିତୀୟାର୍ଦ୍ଧରେ ଅର୍ଥାତ୍ ଉପନିଷଦ ଯୁଗରେ ଯେଉଁ ବ୍ରହ୍ମଙ୍କର ବର୍ଣ୍ଣନା ଦେଖିବାକୁ ମିଳିଥାଏ, ସେ ବେଦବର୍ଣ୍ଣିତ ବିଷ୍ଣୁ କଳ୍ପନାର ରୂପାନ୍ତର ପରି ମନେହୁଅନ୍ତି ।

ବିଷ୍ଣୁ ଉପାସନା ବିକାଶର ଦ୍ୱିତୀୟ ପର୍ଯ୍ୟାୟରେ ନାରାୟଣ ଉପାସନା ଆତ୍ମପ୍ରକାଶ କରିଥିଲା । ଏହି ନାରାୟଣ ଉପାସନା ବିଷ୍ଣୁ ଉପାସନାର ବିକାଶ କ୍ରମରେ କିଭଳି ଗୁରୁତ୍ୱଲାଭ କରିଥିଲା, ତାହାର ସଂକ୍ଷିପ୍ତ ପରିଚୟ ଏଠାରେ ଦେବା ଆବଶ୍ୟକ ମନେହୁଏ । ଉତ୍ତର ବ୍ରାହ୍ମଣ ଓ ଆରଣ୍ୟକରେ ତଥା ପୁରାଣମାନଙ୍କରେ ନାରାୟଣଙ୍କର ମହିମା ବିଶେଷ ବର୍ଣ୍ଣିତ ହୋଇଥିବାର ଦେଖାଯାଇଥାଏ । କ୍ରମେ ବିଷ୍ଣୁ ଉପାସନା ଓ ନାରାୟଣ ଉପାସନା ଏକତ୍ରିତ ହୋଇ ବିଷ୍ଣୁ ଏବଂ ନାରାୟଣ ଏକ ତଥା ଅଭିନ୍ନ ରୂପରେ ପ୍ରତିପାଦିତ ହୋଇଥିଲେ । ବେଦରେ ନାରାୟଣଙ୍କର ନାମୋଲ୍ଲେଖ ନଥିଲେ ମଧ୍ୟ ଋଗ୍‌ବେଦର ପ୍ରକ୍ଷେପ ରୂପେ ଅନୁମିତ ପୁରୁଷ ସୂକ୍ତରେ ନାରାୟଣଙ୍କର ପ୍ରଶସ୍ତି ଦେଖିବାକୁ ମିଳେ । ପୁରୁଷସୂକ୍ତରେ ନାରାୟଣଙ୍କୁ ସହସ୍ରଶିର, ସହସ୍ରଚକ୍ଷୁ, ସହସ୍ର ପାଦ ବିଶିଷ୍ଟ ସର୍ବବ୍ୟାପୀ, ସର୍ବଭୂତସ୍ଥିତ ଓ ପରମେଶ୍ୱର ରୂପେ ବର୍ଣ୍ଣନା କରାଯାଇଛି । ନାରାୟଣଙ୍କୁ

'ପୁରୁଷସୂକ୍ତ'ରେ 'ପୁରୁଷ' ଆଖ୍ୟା ଦିଆଯାଇଛି । (୮) ଏଠାରେ ପୁରୁଷର ଅର୍ଥ ଉପନିଷଦ୍‌ର 'ପୁରୁଷ' ବା ବ୍ରହ୍ମ ରୂପରେ ବ୍ୟଞ୍ଜିତ । ଏହି 'ପୁରୁଷ ସୂକ୍ତ'ରେ ନାରାୟଣଙ୍କୁ ମଧ୍ୟ ଋଷି ରୂପେ ଅଭିହିତ କରାଯାଇଛି । (୯) 'ତୈତ୍ତିରୀୟ ଆରଣ୍ୟକ' ଗ୍ରନ୍ଥରେ ଉପନିଷଦ୍‌ମାନଙ୍କରେ ବର୍ଣ୍ଣିତ ବ୍ରହ୍ମ ବା ପରମାତ୍ମାଙ୍କ ତୁଲ୍ୟ ନାରାୟଣଙ୍କର ମହିମା ବର୍ଣ୍ଣିତ ହୋଇଥିବାର ଦେଖା ଯାଇଥାଏ । 'ଶତପଥ ବ୍ରାହ୍ମଣ' ଗ୍ରନ୍ଥର ବର୍ଣ୍ଣନା ଅନୁଯାୟୀ ପ୍ରାତଃ, ମଧ୍ୟାହ୍ନ, ଓ ସାୟଂକାଳୀନ ହବନଦ୍ୱାରା ନାରାୟଣ ଯଜ୍ଞକାଳରୁ ବସୁଗଣ, ରୁଦ୍ର ଏବଂ ଆଦିତ୍ୟଙ୍କର ପ୍ରଭାବ କ୍ଷୁର୍ଣ୍ଣକରି ଶ୍ରେଷ୍ଠତ୍ୱପ୍ରାପ୍ତ ହୋଇଥିଲେ । ଉକ୍ତ ଗ୍ରନ୍ଥରେ ମଧ୍ୟ ନାରାୟଣଙ୍କୁ ସର୍ବବ୍ୟାପୀ ଓ ସର୍ବଭୂତସ୍ଥିତ କୁହାଯାଇଛି । (୧୦)

ପୁରାଣମାନଙ୍କ ମଧ୍ୟରେ ବିଶେଷତଃ ବାୟୁପୁରାଣ, ହରିବଂଶ, ବିଷ୍ଣୁ ପୁରାଣ ଓ ମହାଭାରତ (ନାରାୟଣୀୟୋପାଖ୍ୟାନ) ଓ ଶ୍ରୀମଦ୍ଭାଗବତ ଗ୍ରନ୍ଥରେ ନାରାୟଣଙ୍କର ମହିମା ବିଶେଷ ଭାବରେ ଉଲ୍ଲିଖିତ ଅଛି । ହରିବଂଶ ଏବଂ ମହାଭାରତରେ ନାରାୟଣଙ୍କର ବାସସ୍ଥାନକୁ ଶ୍ୱେତଦ୍ୱୀପ କୁହାଯାଇଛି । "ନାରାୟଣ"ଶବ୍ଦର ବ୍ୟାଖ୍ୟା ପ୍ରସଙ୍ଗରେ ପାଣିନି "ନାରାୟଣ"ଶବ୍ଦର ଅର୍ଥ ନାର ବା ନର ଅର୍ଥାତ୍ ନରସମୂହର ଆଶ୍ରୟ ରୂପେ ଉଲ୍ଲେଖ କରିଛନ୍ତି । (୧୧) 'ଅୟନ' ଶବ୍ଦର ଅର୍ଥ ହେଉଛି ଗତି ବା ଆଶ୍ରୟ । ବେଦରେ "ନୃ" ବା "ନର" ଶବ୍ଦ ଦେବତା ଅର୍ଥରେ ମଧ୍ୟ ଗୃହୀତ ହୋଇଛି । ତେଣୁ ନାରାୟଣ ଶବ୍ଦର ଅର୍ଥକୁ ଦେବତାମାନଙ୍କର ଆଶ୍ରୟରୂପେ ମଧ୍ୟ ଗ୍ରହଣ କରାଯାଇପାରେ । "ନାରାଃ" ଅର୍ଥ ମଧ୍ୟ ଜଳ । (୧୨) ପୁରାଣମାନଙ୍କର ବର୍ଣ୍ଣନାନୁଯାୟୀ ନାରାୟଣ ସୃଷ୍ଟିର ଆଦ୍ୟଜଳକୁ ଆଶ୍ରୟକରି ଶୟନ କରିଥିଲେ । ତେଣୁ "ନାରାୟଣ" ଶବ୍ଦର ଅର୍ଥକୁ ଏହିପରି ଭାବରେ ଗ୍ରହଣ କରାଯାଇପାରେ । ମହାଭାରତ ଓ ଭାଗବତରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ନର ଓ ନାରାୟଣଙ୍କର ଅବତାର ରୂପେ ବର୍ଣ୍ଣନା କରାଯାଇ ଅଛି । (୧୩) ସବୁଠାରୁ ଉଲ୍ଲେଖ ଯୋଗ୍ୟ ବିଷୟ ଏହି ଯେ,ମହାଭାରତର ନାରାୟଣୀୟ ଉପାଖ୍ୟାନର ପ୍ରଥମ ଅଧ୍ୟାୟରେ କୁହାଯାଇଛି ଧର୍ମ ଏବଂ ଅହିଂସା (ଧର୍ମଙ୍କ ପତ୍ନୀ)ଙ୍କ ଠାରୁ ନର ଓ ନାରାୟଣ, ହରି ଏବଂ କୃଷ୍ଣ—ଏହି ଚାରିଜଣ ଜନ୍ମଲାଭ କରିଥିଲେ । ତନ୍ମଧ୍ୟରୁ ନର ଏବଂ ନାରାୟଣ ବଦ୍ରିକାଶ୍ରମରେ ତପସ୍ୟାରେ ନିମଗ୍ନ ହୋଇ

ଥିଲେ । କପିଳ ପ୍ରବର୍ତ୍ତିତ ସାଂଖ୍ୟଯୋଗରେ କଳ୍ପିତ ମୁକ୍ତ ପୁରୁଷ ସହିତ ପୁରୁଷ ନାରାୟଣଙ୍କର ସାମ୍ୟକୁ ମଧ୍ୟ ଏଠାରେ ଉପେକ୍ଷା କରାଯାଇନପାରେ ।

ଏହି ଉପାଖ୍ୟାନ ସୂଚନା ଦିଏ ଯେ ନାରାୟଣ ଉପାସନା ମୁଖ୍ୟତଃ ଅହିଂସାକୈନ୍ଦ୍ରିକ ଥିଲା । ବୈଦିକ ବିଧାନ ଅନୁଯାୟୀ ଯଜ୍ଞରେ ହେଉଥିବା ପଶୁବଧ ବିରୋଧରେ ସ୍ୱର ଉତ୍ତୋଳନ କରି ଅହିଂସାମାର୍ଗରେ ସାତ୍ତ୍ୱିକ ପୂଜା ବିଧାନ କରିବାରେ ନାରାୟଣ ଉପାସନାର ଏକ ଉଲ୍ଲେଖ ଯୋଗ୍ୟ ଭୂମିକା ରହିଛି । ବୈଷ୍ଣବଧର୍ମର ବିକାଶ ଅହିଂସା ଓ ଭକ୍ତିମାର୍ଗରୁ କିପରି ହୋଇଛି, ତାହା ଏଥିରୁ ସୂଚିତ ହୋଇଥାଏ । ନାରାୟଣ ଉପାସନା କିଭଳି ବାସୁଦେବ ଉପାସନାର ସୃଷ୍ଟି କରିଥିଲା ତାହା ଏଠାରେ ଉଲ୍ଲେଖ କରାଯାଇପାରେ ।

ଉପନିଷଦ୍, ବ୍ରାହ୍ମଣ ଓ ଆରଣ୍ୟକ ପରବର୍ତ୍ତୀ ଯୁଗରେ ବୈଦିକ ଧର୍ମରେ କ୍ରମେ ତନ୍ତ୍ର ପ୍ରାଧାନ୍ୟ ଲାଭ କରିଥିଲା । ଏତଦ୍‌ବ୍ୟତୀତ ବର୍ଣ୍ଣାଶ୍ରମ ବିହିତ କର୍ମ ଓ ଯଜ୍ଞ ତଥା ତପଶ୍ଚରଣ ସ୍ଥାନରେ ଭକ୍ତିମାର୍ଗ ଏକ ଗୁରୁତ୍ୱ-ପୂର୍ଣ୍ଣସ୍ଥାନ ଅଧିକାର କରିଥିଲା । ଭକ୍ତିମାର୍ଗର ସୃଷ୍ଟି ଓ ବିକାଶ ସମ୍ବନ୍ଧିତ ଆଲୋଚନା ପୂର୍ବରୁ ପ୍ରଥମେ ବୈଦିକଧର୍ମରେ ତନ୍ତ୍ରର ପ୍ରଭାବ ସମ୍ପର୍କରେ ଏଠାରେ ସମ୍ୟକ୍ ସୂଚନା ଦେବା ପ୍ରାସଙ୍ଗିକ ମନେହୁଏ ।

ଉପନିଷଦ୍ ପରବର୍ତ୍ତୀ ଯୁଗରେ ଆର୍ଯ୍ୟମାନଙ୍କ ଉପାସନା ପଦ୍ଧତିରେ ବ୍ୟାପକ ପରିବର୍ତ୍ତନ ସଂଘଟିତ ହୋଇଥିଲା । ଏଥିପାଇଁ ତନ୍ତ୍ରର ପ୍ରଭାବ ଅନେକାଂଶରେ ଯେ ଦାୟୀ, ଏହାକୁ ଅସ୍ୱୀକାର କରାଯାଇ ନପାରେ । ଆର୍ଯ୍ୟମାନଙ୍କର ଭାରତ ଆଗମନ ଓ ଭାରତରେ ବସତିସ୍ଥାପନ ପୂର୍ବରୁ ଭାରତର ମୂଳବାସିନ୍ଦା ଆର୍ଯ୍ୟେତର ଜାତି ମୁଖ୍ୟତଃ ତନ୍ତ୍ର ଉପାସକ ଥିଲେ ।

ପ୍ରାଚୀନ ଭାରତର ଧର୍ମ ଓ ସଂସ୍କୃତିର ପ୍ରଧାନ କେନ୍ଦ୍ରସ୍ଥଳ ମହେଞ୍ଜୋ-ଦାରୋ ଓ ହରପ୍ପାରୁ ଆବିଷ୍କୃତ ଭଗ୍ନାବଶେଷରୁ ଐତିହାସିକମାନେ ଅନୁମାନ କରନ୍ତି ଯେ ଆର୍ଯ୍ୟମାନଙ୍କର ଭାରତାଗମନ ପୂର୍ବରୁ ଏ ଦେଶରେ

ଲିଙ୍ଗ ଓ ଯୋନି ପୂଜା ବା ଶିବଶକ୍ତି ଉପାସନାର ପ୍ରାଧାନ୍ୟ ଥିଲା । ଏ ଦେଶରେ ବାସ କରୁଥିବା ଆର୍ଯ୍ୟେତର ଜାତି ନାରୀ ବା ଶକ୍ତି ଉପାସନାକୁ ଗୁରୁତ୍ୱ ଦେଉଥିବାରୁ ତାଙ୍କର ସମାଜ ନାରୀ ପ୍ରଧାନ ଥିଲା । ଅନ୍ୟପକ୍ଷରେ ଆର୍ଯ୍ୟଜାତି ପିତୃ ପ୍ରଧାନ ଥିଲା ଓ ବେଦରେ ପୁରୁଷ ପୂଜାର ପ୍ରାଧାନ୍ୟ ରହିଥିଲା । ଇନ୍ଦ୍ର, ମିତ୍ର, ବରୁଣ, ଯମ, ଅଗ୍ନି ପ୍ରଭୃତି ଦେବତାମାନେ ଥିଲେ ପୁରୁଷ ବାଚକ । ଆର୍ଯ୍ୟେତର ଜାତିରେ ବର୍ଣ୍ଣାଶ୍ରମ ବ୍ୟବସ୍ଥା ନଥିବାରୁ ସମସ୍ତ ନାରୀ ପୁରୁଷ ଶିବଶକ୍ତି ଉପାସନା କରିବାର ଅଧିକାର ପ୍ରାପ୍ତ ହୋଇଥିଲେ । ସେମାନଙ୍କ ଉପାସନାରେ ଭାବ ଓ ଭକ୍ତିର ପ୍ରାଧାନ୍ୟ ଥିଲା । ଏତଦ୍‌ବ୍ୟତୀତ ଅନ୍ତର୍ମୁଖୀ ଦୃଷ୍ଟିରେ ଯୋଗ ସାଧନା ମଧ୍ୟ ସେମାନଙ୍କର ଅବଲମ୍ବନ ଥିଲା । ମହାଯୋଗୀ ଶିବ ତାହାର ପ୍ରତୀକ ଥିଲେ । ସେ ଥିଲେ ସେମାନଙ୍କର ପଥପ୍ରଦର୍ଶକ ଓ ଉପାସ୍ୟ ।

ଆର୍ଯ୍ୟେତର ଜାତିର ତନ୍ତ୍ର ସାଧନା ଶକ୍ତି ଉପାସନା ଓ ଭାବ ପ୍ରଧାନ ଭକ୍ତି—ଏସବୁ ଆର୍ଯ୍ୟଜାତି ଉପରେ ପ୍ରଭାବ ପକାଇ ବୈଦିକ ଧର୍ମରେ ପ୍ରବେଶ କରି ଏହି ଧର୍ମରେ ଯେଉଁ ପରିବର୍ତ୍ତନ ଆନୟନ କରିଥିଲା, ତାହାର ମୁଖ୍ୟ କାରଣ ଭାବେ ଦକ୍ଷ ପ୍ରଜାପତି ଓ ଶିବଙ୍କର ସଂଘର୍ଷକୁ ଗ୍ରହଣ କରାଯାଇଥାଏ । ଏହି ସଂଘର୍ଷର ମୁଖ୍ୟ ହେତୁ ଉଭୟ ଆର୍ଯ୍ୟ ଓ ଆର୍ଯ୍ୟେତର ଜାତିରେ ଥିବା ଚିନ୍ତାଧାରା, ଚଳଣି, ସଂସ୍କୃତି ଓ ଧର୍ମ ଉପାସନାଗତ ପାର୍ଥକ୍ୟ । ଆର୍ଯ୍ୟମାନଙ୍କର ମୁଖ୍ୟ ଦକ୍ଷ ପ୍ରଜାପତି (ସୁଦକ୍ଷ ନେତା, ଶାସକ ବା ପ୍ରଭୁ) ଭାରତରେ ନିଜର ସ୍ଥିତିକୁ ଦୃଢ଼ କରିବାପାଇଁ ହିମାଳୟର ପାର୍ବତ୍ୟ ଅଞ୍ଚଳରେ ବାସ କରୁଥିବା ଆର୍ଯ୍ୟେତର ଜାତିର ନେତା ଶିବଙ୍କୁ ନିଜର ଦୁହିତା ସତୀଙ୍କୁ ପ୍ରଦାନ କରିଥିଲେ ହେଁ ଆର୍ଯ୍ୟନେତା ଦକ୍ଷ ଆର୍ଯ୍ୟେତର ଜାତିର ଚଳଣି ଓ ଧର୍ମୋପାସନା ପ୍ରଣାଳୀକୁ ସଶ୍ରଦ୍ଧ ଗ୍ରହଣ କରିପାରିନଥିଲେ । ସେଥିପାଇଁ ସେ ସ୍ୱକୃତ ଯଜ୍ଞକୁ ଶିବଙ୍କୁ ନିମନ୍ତ୍ରଣ କରିନଥିଲେ । ସତୀ ପିତାଙ୍କର ଏତାଦୃଶ କାର୍ଯ୍ୟରେ ବ୍ୟଥିତା ହୋଇ ଯଜ୍ଞକୁଣ୍ଡରେ ଝାସ ଦେବାରୁ ଆର୍ଯ୍ୟେତର ଜାତି ଆର୍ଯ୍ୟଜାତି ଉପରେ ଆକ୍ରମଣ କରିବାର ସୁଯୋଗ ସୃଷ୍ଟି ହୋଇଥିଲା । ଶିବଙ୍କର ପ୍ରଚଣ୍ଡ

ଆକ୍ରମଣରେ ଦକ୍ଷଙ୍କର ଶୋଚନୀୟ ପରାଜୟ ଓ ପରିଶେଷରେ ଦକ୍ଷଙ୍କର କ୍ଷମା ଭିକ୍ଷା ଯୋଗେ ଉଭୟ ଆର୍ଯ୍ୟ ଓ ଆର୍ଯ୍ୟେତର ଜାତି ମଧ୍ୟରେ ଏକ ସାଲିସ ବା ସନ୍ଧି ଘଟିଥିଲା । ପୁରାଣ ବର୍ଣ୍ଣିତ ଦକ୍ଷଯଜ୍ଞ ପ୍ରସଙ୍ଗ ଆର୍ଯ୍ୟଜାତି ଉପରେ ଆର୍ଯ୍ୟେତର ଜାତିର ଏହି ଐତିହାସିକ ବିଜୟର ସୂଚନା ପ୍ରଦାନ କରିଥାଏ ।

ସମ୍ଭବତଃ ସେହିଦିନଠାରୁ ଭାରତ ଭୂମିର ନବାଗତ ଆର୍ଯ୍ୟ ଓ ଭାରତ ମୂଳଭୂଖଣ୍ଡର ପ୍ରାଚୀନ ଅଧିବାସୀ ଆର୍ଯ୍ୟେତର ଜାତି ମଧ୍ୟରେ ପାରସ୍ପରିକ ଭାବ ବିନିମୟ ଓ ସହାବସ୍ଥାନ ଘଟିଥିଲା । ଧର୍ମଧାରଣା ଏହାର ଅନ୍ତର୍ଭୁକ୍ତ ଥିଲା । ଆର୍ଯ୍ୟେତର ଜାତିର ତନ୍ତ୍ର ସାଧନା, ଶକ୍ତି ଉପାସନା, ଭାବପ୍ରଧାନ ଭକ୍ତି ପ୍ରଭୃତି ଧର୍ମ ଧାରଣା ବୈଦିକ ଧର୍ମ ମଧ୍ୟରେ ପ୍ରବେଶ କରି କ୍ରମେ ବୈଦିକ ଧର୍ମରେ ଏକ ପରିବର୍ତ୍ତନର ସୂତ୍ରପାତ କରିଥିଲା ।

ଉପନିଷଦ୍ ପରବର୍ତ୍ତୀ ଯୁଗକୁ ବ୍ରାହ୍ମଣ ସଂହିତା ଓ ପୁରାଣର ଯୁଗ କୁହାଯାଇଥାଏ । ସଂହିତା ଓ ପୁରାଣମାନଙ୍କରେ ତାନ୍ତ୍ରିକ ଚିନ୍ତାଧାରାର ପ୍ରଭାବ ବେଶ୍ ଲକ୍ଷ୍ୟଣୀୟ । ତେଣୁ ମନେହୁଏ ଉପନିଷଦ୍ ଯୁଗ ( ଏଠାରେ ଉପନିଷଦ୍ ଯୁଗ କହିଲେ ବାରଟି ଉପନିଷଦ୍ ରଚନାର ଯୁଗକୁ ବୁଝିବାକୁ ହେବ । କାରଣ ଅନ୍ୟାନ୍ୟ ଉପନିଷଦ୍ ଗୁଡ଼ିକ ପରବର୍ତ୍ତୀ କାଳରେ ଅର୍ଥାତ୍ ପୁରାଣ ଯୁଗରେ ରଚିତ ହୋଇଅଛି) ପରେ ତାନ୍ତ୍ରିକ ଚିନ୍ତାଧାରା ବୈଦିକ ଧର୍ମର ଚିନ୍ତାଧାରାରେ ଏକ ପରିବର୍ତ୍ତନ ଆନୟନ କରିଥିଲା ।

## ବୈଷ୍ଣବ ଧର୍ମର ମୂଳ ଉତ୍ସ ପାଞ୍ଚରାତ୍ର ଧର୍ମର ଅଭ୍ୟୁଦୟ :-

ବୈଦିକ ଧର୍ମଧାରା କ୍ରମଶଃ ତନ୍ତ୍ରମୁଖୀ ହୋଇପଡ଼ିଲା । ଫଳରେ ବୈଦିକ ଧର୍ମ ଯେଉଁ କେତେକ ଶାଖାରେ ବିଭକ୍ତ ହୋଇଥିଲା, ବୈଷ୍ଣବ ଧର୍ମ ତନ୍ମଧ୍ୟରୁ ଏକ ପ୍ରଧାନ ଶାଖା । ଏହି ଧର୍ମର ମୂଳଉତ୍ସ ରୂପେ ପାଞ୍ଚରାତ୍ର ଧର୍ମକୁ ଚିହ୍ନିତ କରାଯାଇଥାଏ । ପାଞ୍ଚରାତ୍ର ଧର୍ମର ପ୍ରାଣକେନ୍ଦ୍ର ଯେ ତନ୍ତ୍ର, ଏଥିରେ ଦ୍ୱିଧା କରିବାର କିଛି ନାହିଁ । ଆଗମ, ନିଗମ ଓ ଯାମଳ ଭେଦରେ ତନ୍ତ୍ର ତିନିଭାଗରେ ବିଭକ୍ତ । ପାଞ୍ଚରାତ୍ର ଧର୍ମର ଅନ୍ୟନାମ ହେଉଛି ପାଞ୍ଚରାତ୍ର ଆଗମ । ସୁତରାଂ ଏହା ତନ୍ତ୍ରର ଅନ୍ତର୍ଭୁକ୍ତ । ତନ୍ତ୍ରର ସାତଟି

ଲକ୍ଷଣ ଏଥିରେ ରହିଛି । ସେଗୁଡ଼ିକ ହେଲା-ସୃଷ୍ଟି, ପ୍ରଳୟ, ଦେବାର୍ଚ୍ଚନ ସାଧନ, ପୁରଶ୍ଚରଣ, ଷଟ୍‌କର୍ମ ସାଧନ (ସ୍ତମ୍ଭନ ମୋହନାଦି) ଓ ଚତୁର୍ବିଧ ଧ୍ୟାନଯୋଗ ଜୟାଖ୍ୟ ସଂହିତା ନାମକ ପ୍ରାଚୀନତମ ପାଞ୍ଚରାତ୍ର ସଂହିତାରେ ସୃଷ୍ଟି, ପ୍ରଳୟ, ଭଗବତ୍ ତତ୍ତ୍ୱ ବର୍ଣ୍ଣନା ସହିତ ଦେବାର୍ଚ୍ଚନ ବିଧି ପୁନଶ୍ଚରଣ, ଷଟ୍‌କର୍ମ ସାଧନ ବିଭିନ୍ନ କ୍ଷୁଦ୍ର ତାନ୍ତ୍ରିକ ସାଧନା ସମ୍ବନ୍ଧରେ ବର୍ଣ୍ଣନା ରହିଛି । ସେହିପରି ସନତ୍‌କୁମାର ସଂହିତାରେ ସୃଷ୍ଟି, ପ୍ରଳୟ, ବିଷ୍ଣୁ ପ୍ରତିମା ନିର୍ମାଣ ଓ ଅର୍ଚ୍ଚନା ବିଧି, ତାନ୍ତ୍ରିକ ଉପାୟରେ ସାଧନା, ପୁରଶ୍ଚରଣ ଷଟ୍‌କର୍ମ ସାଧନ, ଯଜ୍ଞ ଓ ଧ୍ୟାନ ପ୍ରସଙ୍ଗ ରହିଅଛି । ପ୍ରାୟ ଅଧିକାଂଶ ପାଞ୍ଚରାତ୍ର ସଂହିତାରେ ବିଷୟବସ୍ତୁର ଏହି ପରମ୍ପରା ପରିଲକ୍ଷିତ ହୋଇ ଥାଏ । ପାଞ୍ଚରାତ୍ର ଆଗମରେ ୪ ପ୍ରକାର ତତ୍ତ୍ୱ ବର୍ଣ୍ଣିତ ହୋଇଥାଏ, ବୋଲି 'ଈଶ୍ୱର ସଂହିତା' ମତ ଦିଏ । ତାହା ହେଉଛି ପ୍ରଥମରେ ଆଗମରେ ସିଦ୍ଧାନ୍ତ ଦ୍ୱିତୀୟରେ ମନ୍ତ୍ର ସଙ୍ଗୀତ, ତୃତୀୟରେ ତନ୍ତ୍ର ଓ ଚତୁର୍ଥରେ ତନ୍ତ୍ରାନ୍ତର ବିଷୟ । (୧୪)

'ପଦ୍ମପୁରାଣ'ରେ ଏହାର ବର୍ଣ୍ଣନା କ୍ରମ ଟିକଏ ଭିନ୍ନ ପ୍ରକାରେ ଉଲ୍ଲେଖ କରାଯାଇଛି । ତାହା ହେଉଛି ପ୍ରଥମେ ମନ୍ତ୍ରସିଦ୍ଧାନ୍ତ, ଦ୍ୱିତୀୟରେ ଆଗମ, ତୃତୀୟରେ ତନ୍ତ୍ରସିଦ୍ଧାନ୍ତ ଓ ଚତୁର୍ଥରେ ତନ୍ତ୍ରାନ୍ତର । ୧୫) ତନ୍ତ୍ରସାହିତ୍ୟ ଭଳି ପାଞ୍ଚରାତ୍ର ସାହିତ୍ୟ ମଧ୍ୟ ଦିବ୍ୟ ଓ ମୁନିଭାଷିତ ଭେଦରେ ଦ୍ୱିବିଧ । ଯାହା ଭଗବାନ ବାସୁଦେବ ବ୍ରହ୍ମା, ରୁଦ୍ର, ଇନ୍ଦ୍ର ପ୍ରଭୃତିଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଅଛି, ତାହା ହେଉଛି ଦିବ୍ୟ । ଋଷି ଓ ତପସ୍ୱୀ ପ୍ରଭୃତି ଯେଉଁ ସାହିତ୍ୟକୁ ସ୍ୱୟଂ ପ୍ରଣୟନ କରିଛନ୍ତି, ତାହା ହେଉଛି ମୁନି ଭାଷିତ । (୧୬) ସାତ୍ତ୍ୱତ, ପୌଷ୍କର ଓ ଜୟାଖ୍ୟ ଏହି ତିନଟି ପାଞ୍ଚରାତ୍ର ସଂହିତା ଦିବ୍ୟଶାସ୍ତ୍ର ରୂପରେ ଗୃହୀତ । (୧୭) ସଂହିତା ଭଳି ପାଞ୍ଚରାତ୍ର ଧର୍ମର ଉପନିଷଦ୍ ଗୁଡ଼ିକ ଦେଖିବାକୁ ମିଳିଥାଏ । ସମସ୍ତ ବୈଷ୍ଣବ ଉପନିଷଦ୍ ଗୁଡ଼ିକ ପାଞ୍ଚରାତ୍ର ଉପନିଷଦ୍ ରୂପେ ପରିଗଣିତ । ପାଞ୍ଚରାତ୍ର ଧର୍ମର ସଂହିତା ଓ ଉପନିଷଦ୍ ଗ୍ରନ୍ଥ ଗୁଡ଼ିକର ସଂଖ୍ୟା ଅନେକ । F. Olto Schrader ତାଙ୍କର "Introduction to the Pancharatra" ଗ୍ରନ୍ଥରେ ୨୧୫ଟି ପାଞ୍ଚରାତ୍ର ସଂହିତାର ନାମୋଲ୍ଲେଖ କରିଛନ୍ତି । (୧୮) The Adyar Library and Research, ମାଡ୍ରାସ ପକ୍ଷରୁ ୧୪ଟି ବୈଷ୍ଣବ ଉପନିଷଦ୍ ବା ପାଞ୍ଚରାତ୍ର ଉପନିଷଦ୍

ପ୍ରକାଶିତ ହୋଇଅଛି । ଏତଦ୍‌ବ୍ୟତୀତ ଅନେକ ପାଞ୍ଚରାତ୍ର ସଂହିତା ଓ ଉପନିଷଦ୍ ଅନାବିଷ୍କୃତ ଥିବାର ଆଶା ମଧ୍ୟ କରାଯାଉଅଛି । ପାଞ୍ଚରାତ୍ର ସାହିତ୍ୟର ଏହି ବିଶାଳତା ସ୍ପଷ୍ଟ ପ୍ରମାଣ କରିଦିଏଯେ ଏହା ବୈଷ୍ଣବଧର୍ମର ପ୍ରସାର ଓ ପ୍ରତିଷ୍ଠାକୁ କେତେ ବଳବତ୍ତର କରି ପାରିଥିଲା ।

## ପାଞ୍ଚରାତ୍ର କ'ଣ ?

ପାଞ୍ଚରାତ୍ର ଧର୍ମର ସ୍ୱରୂପ ସମ୍ପର୍କରେ ମହାଭାରତର ଶାନ୍ତିପର୍ବରେ ସୂଚନା ଦିଆଯାଇ କୁହାଯାଇଛି—

"ଇଦଂ ମହୋପନିଷଦଂ ଚତୁର୍ବେଦ ସମନ୍ୱିତଂ
ସାଂଖ୍ୟ ଯୋଗକୃତଂ ତେନ ପଞ୍ଚରାତ୍ରାନୁ ଶବ୍ଦିତମ୍
ନାରାୟଣ ମୁଖୋଦ୍‌ଗୀତଂ ନାରଦୋଽଶ୍ରାବୟତ୍ ପୁନଃ" । (୧୯)

ସୁତରାଂ ବେଦର ନିର୍ଯ୍ୟାସ, ଉପନିଷଦ୍‌ର ଆଧ୍ୟାତ୍ମ ବିଦ୍ୟା, ସାଂଖ୍ୟର ୨୫ ତତ୍ତ୍ୱ ଓ ଭକ୍ତିବାଦକୁ ନେଇ ତାନ୍ତ୍ରିକ ପଦ୍ଧତିରେ ପାଞ୍ଚରାତ୍ର ଆଗମର ସୃଷ୍ଟି ହୋଇଥିଲା । ଏହି ପାଞ୍ଚରାତ୍ର ଧର୍ମ ସହିତ କପିଳଙ୍କର ସାଂଖ୍ୟଯୋଗ ଓ ବେଦର ଏକାୟନ ଶାଖାର ସମ୍ପର୍କ ଥିବା ସୂଚିତ ହୋଇଥାଏ । ଶ୍ରୀମଦ୍ଭା-ଗବତର ତୃତୀୟ ସ୍କନ୍ଧରେ ସାଂଖ୍ୟ ଦର୍ଶନର ଯେଉଁ ଅବତାରଣା କରା-ଯାଇଛି, ସେଥିରେ ଭକ୍ତିଯୋଗର ନିଗୂଢ଼ ସମ୍ପର୍କ ରହିଛି । କପିଳଙ୍କ ମୁଖରେ ଭକ୍ତିଯୋଗର ଯେଉଁ ବିସ୍ତୃତ ଅବତାରଣା କରାଯାଇଛି ତାହା ଭାଗବତଧର୍ମର ଭକ୍ତିବାଦ ସହିତ ଅନେକାଂଶରେ ତୁଳନୀୟ । ହରିବଂଶ ପୁରାଣରେ କୁହାଯାଉଛି ମୋକ୍ଷକାମୀ ଯୋଗୀ କପିଳଙ୍କର ସାଂଖ୍ୟ ଯୋଗ ଅନୁଯାୟୀ ବିରଚିତ ସ୍ତୋତ୍ର ପାଠ କରିଲେ ନାରାୟଣଙ୍କର ଧାମ ଶ୍ୱେତଦ୍ୱୀପକୁ ପ୍ରାପ୍ତ ହୋଇଥାଏ । (୨୦) ତେଣୁ ପାଞ୍ଚରାତ୍ର ଧର୍ମରେ ସାଂଖ୍ୟଯୋଗରସମ୍ପର୍କ ଥିବା ଅତ୍ୟନ୍ତ ସ୍ୱାଭାବିକ । ପୁନଶ୍ଚ ଶ୍ରୀପ୍ରଶ୍ନ ସଂହିତାରେ ପାଞ୍ଚରାତ୍ର ଆଗମ ସମ୍ପର୍କରେ କୁହାଯାଇଛି—

"ଏତେଷାଂ ସାତ୍ତ୍ୱତଂ" ଶାସ୍ତ୍ରମୁତ୍ତମେଷ୍ଟଂ ଭୂମହର୍ଷିଭି
ଇତ୍ୟୁକ୍ତ୍ୱାନ୍ତର୍ଦଧେ ଶ୍ରୀମାନ୍ନାରାୟଣ ମୁନିସ୍ତଦା
ବେଦ ମେକାୟନଂ ନାମ ବେଦାନାଂ ଶିରସିସ୍ଥିତମ୍
ତଦର୍ଥକଂ ପାଞ୍ଚରାତ୍ରଂ ମୋକ୍ଷଦଂ ତତ୍କ୍ରିୟାବତାଂ" । (୨୧)

ଉକ୍ତଶୋକରୁ ପାଞ୍ଚରାତ୍ର ଆଗମ ସହିତ ବେଦର ଏକାୟନ ଶାଖାର ସମ୍ପର୍କଥିବା ସୂଚିତ ହୋଇଥାଏ । ବେଦର ଏକାୟନଶାଖା ଅବଲୁପ୍ତ ହୋଇଥିଲେ ହେଁ ଛାନ୍ଦୋଗ୍ୟ ଉପନିଷଦ୍‌ରେ ଏହାର ଉଲ୍ଲେଖମାତ୍ର ଦେଖିବାକୁ ମିଳିଥାଏ । (୨୨) କେତେକଙ୍କ ମତରେ ଶୁକ୍ଳ ଯଜୁର୍ବେଦର କାଣ୍ୱଶାଖା ହେଉଛି ଏକାୟନଶାଖା । (୨୩) ପାଞ୍ଚରାତ୍ରଧର୍ମର ପ୍ରବର୍ତ୍ତକ ଶାଣ୍ଡିଲ୍ୟ, ଭରଦ୍ୱାଜ, ମୌଞ୍ଜାୟନ, ଔପଗାୟନ ଓ କୌଶିକ ଶୁକ୍ଳ ଯଜୁର୍ବେଦର କାଣ୍ୱଶାଖାନ୍ତର୍ଗତ ଥିଲେ ବୋଲି ମଧ୍ୟ କୁହାଯାଇଥାଏ । ବେଦର ଏକାୟନଶାଖା ଐକାନ୍ତିକ ଭକ୍ତି ପ୍ରଖ୍ୟାପକ ରୂପେ ଅନୁମିତ ହୋଇଥାଏ । ଶ୍ରୀମଦ୍‌ଭଗବଦ୍‌ଗୀତାରେ ଏହି ଐକାନ୍ତିକ ଭକ୍ତି ଉପରେ ପ୍ରାଧାନ୍ୟ ଦିଆଯାଇଛି । (୨୪)

ପାଞ୍ଚରାତ୍ର ଧର୍ମର ସୃଷ୍ଟି ରହସ୍ୟ ଜାଣିଲେ ପାଞ୍ଚରାତ୍ର ଧର୍ମ ସମ୍ବନ୍ଧରେ 'ସମ୍ୟକ୍ ଅବବୋଧ ଆସିଥାଏ । ଈଶ୍ୱର ସଂହିତାର ପ୍ରଥମ ଅଧ୍ୟାୟରେ କୁହାଯାଇଛି— ପୂର୍ବେ ଯୋଗାଦ୍ରି ଶିଖର ଉପରେ ମହାମୁନି ଶାଣ୍ଡିଲ୍ୟ ସଂଯତ ହୋଇ ଏକାଗ୍ରମନରେ ଘୋର ତପସ୍ୟାକରି ଦ୍ୱାପରଯୁଗ ଶେଷ ଓ କଳିଯୁଗର ଆଗମନ କାଳ ମଧ୍ୟରେ ସଙ୍କର୍ଷଣଙ୍କଠାରୁ ଏହି ପାଞ୍ଚରାତ୍ର ଧର୍ମକୁ ପ୍ରାପ୍ତ ହୋଇଥିଲେ । ଏହା ବେଦର ଏକାୟନଶାଖା ନାମରେ ବିଦିତ । ସୁମନ୍ତ୍ୟୁ, ଜୈମିନି, ଭୃଗୁ, ଔପଗାୟନ, ମୌଞ୍ଜାୟନ ଆଦି ଋଷି-ଗଣଙ୍କୁ ସେ ଏହାର ଶିକ୍ଷା ଦେଇଥିଲେ । (୨୫) ନାରାୟଣ, ସଙ୍କର୍ଷଣ, ନାରଦ ଓ ଶାଣ୍ଡିଲ୍ୟ ପାଞ୍ଚରାତ୍ର ଧର୍ମ ସୃଷ୍ଟି ସହିତ ଓତପ୍ରୋତଭାବରେ ସମ୍ପୃକ୍ତଥିବା ଉକ୍ତ ଉଦ୍ଧୃତିମାନଙ୍କରୁ ଜଣାଯାଏ । ନାରଦ ଏବଂ ଶାଣ୍ଡିଲ୍ୟ ଭକ୍ତିମାର୍ଗର ପ୍ରବର୍ତ୍ତକ ଥିଲେ । ନାରଦ ଓ ଶାଣ୍ଡିଲ୍ୟଙ୍କର ଭକ୍ତିସୂତ୍ର ଗ୍ରନ୍ଥ ଏହାର ପ୍ରମାଣ । ସଙ୍କର୍ଷଣଙ୍କୁ ଐକାନ୍ତିକ ଭକ୍ତିମାର୍ଗର ଶିକ୍ଷାଦାତା ରୂପେ ବିଶ୍ୱକ୍‌ସେନ ସଂହିତାରେ ବର୍ଣ୍ଣନା କରାଯାଇଛି ।

ମହାଭାରତର ଶାନ୍ତିପର୍ବରେ ଥିବା ନାରାୟଣୀୟ ଖଣ୍ଡରେ ପାଞ୍ଚରାତ୍ର ଧର୍ମର ଉପାସକ ରାଜା ବସୁ ଉପରିଚରଙ୍କ ବିଷୟ ବିସ୍ତୃତ ଭାବରେ ଦିଆଯାଇଛି । ରାଜା ବସୁ ଉପରିଚର ବୃହସ୍ପତିଙ୍କ ସହାୟତାରେ ଏବଂ ଆରଣ୍ୟକ ପଦ ଅନୁଯାୟୀ ଏକ ଯଜ୍ଞ ଅନୁଷ୍ଠାନ କରିଥିବା କଥା କୁହା-

ଯାଉଛନ୍ତି । ଏହି ଯଜ୍ଞରେ ପଶୁବଳି ଦିଆଯାଇ ନଥିଲା । ଆରାଧ୍ୟ ଦେବ ହରି ବସୁଙ୍କ ଐକାନ୍ତିକ ଭକ୍ତିରେ ସନ୍ତୁଷ୍ଟହୋଇ କେବଳ ତାଙ୍କୁହିଁ ଦର୍ଶନ ପ୍ରଦାନ କରିଥିଲେ । ଯାଜ୍ଞିକ ପୂଜା ପଦ୍ଧତିରେ ବିଶ୍ୱାସୀ ବୃହସ୍ପତି ଏବଂ ତପଶ୍ଚ-ରଣରେ ବିଶ୍ୱାସୀ ଏକତ, ଦ୍ୱିତ, ତ୍ରିତ, ଆଦି ଋଷିଗଣ ଶ୍ରୀହରିଙ୍କ ଦର୍ଶନରୁ ବଞ୍ଚିତ ହୋଇଥିଲେ । ଏହି ଉପାଖ୍ୟାନରେ ତପଶ୍ଚର୍ଯ୍ୟା ଓ ଯଜ୍ଞାନୁଷ୍ଠାନ ଅପେକ୍ଷା ଐକାନ୍ତିକ ଭକ୍ତିର ପ୍ରାଧାନ୍ୟ ସୂଚିତ ହୋଇଅଛି । ଏହି ଉପାଖ୍ୟାନ ପଞ୍ଚରାତ୍ର ଧର୍ମର ମାର୍ମିକ ଦିଗକୁ ଉଦ୍‌ଘାଟନ କରିବାରେ ସହାୟକ ହୋଇଥାଏ । ବେଦର ପଶୁବଳି କୈନ୍ଦ୍ରିକ ଯଜ୍ଞ ପରିବର୍ତ୍ତେ ଅହିଂସା ଯଜ୍ଞର ପ୍ରଚଳନ କରାଇବାରେ ପଞ୍ଚରାତ୍ର ଧର୍ମର ଭୂମିକା ମଧ୍ୟ ସ୍ମରଣୀୟ । (୨୬)

ନାରଦ ପଞ୍ଚରାତ୍ରର ବର୍ଣ୍ଣନାନୁଯାୟୀ 'ରାତ୍ର' ଅର୍ଥ ହେଉଛି ଜ୍ଞାନ । ପାଞ୍ଚରାତ୍ରରେ ପାଞ୍ଚପ୍ରକାର ଜ୍ଞାନ ଯେଉଁଥିରେ ନିରୂପିତ ହୋଇଅଛି ତାହା ହେଉଛି ପାଞ୍ଚରାତ୍ର । ସେଗୁଡ଼ିକ ହେଉଛି ୧- ପରମତତ୍ତ୍ୱ, ୨- ଭୁକ୍ତି, ୩- ମୁକ୍ତି, ୪- ଯୋଗ ଓ ୫- ବିଷୟ । ପାଞ୍ଚରାତ୍ର ଧର୍ମର ଉପାସକ ବୈଷ୍ଣବମାନଙ୍କୁ ପାଞ୍ଚକାଳଜ୍ଞ କୁହାଯାଇଥାଏ । ପାଞ୍ଚକାଳ ହେଉଛି--

୧- ଅଭିଗମନ ( ଜପ, ଧ୍ୟାନ, ଅର୍ଚ୍ଚନ ଦ୍ୱାରା ଭଗବାନ୍‌ଙ୍କ ପ୍ରତି ଅଭିମୁଖ ହେବା )

୨- ଉପାଦାନ (ଫଳପୁଷ୍ପାଦି ପୂଜାଦ୍ରବ୍ୟ ସଂଗ୍ରହ)

୩- ଇଜ୍ୟା (ପୂଜା)

୪- ଅଧ୍ୟାୟ (ପଞ୍ଚରାତ୍ର ଆଗମ ଗ୍ରନ୍ଥମାନଙ୍କର ଶ୍ରବଣ,ମନନ ଓ ଉପଦେଶ)

୫- ଯୋଗ ।

ପାଞ୍ଚରାତ୍ର ଧର୍ମର ମୁଖ୍ୟ ଦେବତା ହେଉଛନ୍ତି ବାସୁଦେବ । ସଙ୍କର୍ଷଣ ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଆଦି ତାଙ୍କର ଷଡୈଶ୍ୱର୍ଯ୍ୟ ପ୍ରକାଶ । ବାସୁଦେବଙ୍କ ସହିତ ଏମାନଙ୍କର ମିଶ୍ରଣକୁ ଚତୁର୍ବ୍ୟୂହ କୁହାଯାଇଥାଏ । ପାଞ୍ଚରାତ୍ର ଧର୍ମ ସହିତ ବାସୁଦେବ ଉପାସନାର ବିକାଶ ଘଟିଥିଲା ଏବଂ ଏହା ବିଷ୍ଣୁ ଉପାସନାର ବିକାଶ ଧାରାରେ ଏକ ନୂତନତା ସଂଯୋଗ କରିଥିଲା । ଏହି ବାସୁଦେବ ଉପାସନା ସମ୍ପର୍କରେ ଏଠାରେ ସମ୍ୟକ୍ ସୂଚନା ଦିଆଯାଇପାରେ ।

**ବାସୁଦେବ ଉପାସନା :**

ବାସୁଦେବ ଉପାସନାର ପ୍ରାରମ୍ଭ ବୈଷ୍ଣବଧର୍ମରେ ଏକ ନୂତନ ପର୍ଯ୍ୟାୟ ସୃଷ୍ଟି କରିଥିଲା । ନାରାୟଣ ଉପାସନାର ପରବର୍ତ୍ତୀ ପର୍ଯ୍ୟାୟରେ ଏହାର ବିକାଶ । ଏହି ବାସୁଦେବ ଉପାସନା ଉପନିଷଦ୍‌ଯୁଗ ଓ ଜୈନ-ଧର୍ମର ଅଭ୍ୟୁଦୟ କାଳର କୋଣସି ଏକ ନିକଟବର୍ତ୍ତୀ ସମୟରେ ଆରମ୍ଭ ହୋଇଥିଲା ବୋଲି ଆର. ଜି. ଭଣ୍ଡାରକର ଅନୁମାନ କରିଛନ୍ତି । (୨୭) ଏପରି ଅନୁମାନର ଅନେକ ଯଥାର୍ଥ୍ୟ ମଧ୍ୟ ରହିଛି । ତାହାର କାରଣ ହେଉଛି ବାସୁଦେବ ଓ ବାସୁଦେବଙ୍କର ଚତୁର୍ବ୍ୟୁହ ପରିକଳ୍ପନାରେ ଉପନିଷଦୀୟ ଚିନ୍ତାଧାରାର ଅନେକ ସାମ୍ୟ ରହିଛି । ଉପନିଷଦ୍‌ରେ ବ୍ରହ୍ମଙ୍କୁ ଯେପରି ଆନନ୍ଦମୟ, ସର୍ବବ୍ୟାପୀ, ସର୍ବଭୂତସ୍ଥିତ, ଅପ୍ରାକୃତ ଗୁଣଯୁକ୍ତ ରୂପେ ବର୍ଣ୍ଣନା କରାଯାଇଛି, ବାସୁଦେବଙ୍କ କଳ୍ପନାରେ ସେହି ଚିନ୍ତାଧାରାର ସମନ୍ୱୟ ଘଟିଛି । ଉପନିଷଦ୍‌ରେ ଯେପରି ସୃଷ୍ଟି ବିକାଶ କ୍ରମରେ ଆତ୍ମା, ମନ, ବୁଦ୍ଧି ଅହଙ୍କାରର କ୍ରମବିକାଶ ବର୍ଣ୍ଣିତ ହୋଇଛି, ସେହିପରି ପାଞ୍ଚରାତ୍ର ଧର୍ମର ସୃଷ୍ଟି ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧଙ୍କର ତତ୍ତ୍ୱରେ ବିକାଶ କ୍ରମ ବର୍ଣ୍ଣିତ ହୋଇଛି । ଏହାଛଡ଼ା ଜୈନଧର୍ମର ଅହିଂସାନୀତି ବାସୁଦେବ ଉପାସନାର କେନ୍ଦ୍ରବିନ୍ଦୁ ରୂପେ ଗୃହୀତ । ତେଣୁ ମନେହୁଏ ଉପନିଷଦୀୟ ଦୁର୍ବୋଧ ବ୍ରହ୍ମତତ୍ତ୍ୱକୁ ସରଳ କରି ପରିବେଷଣ କରିବା ଏବଂ ଜୈନଧର୍ମର ଅହିଂସାନୀତିକୁ ଧର୍ମରେ ସ୍ଥାନଦେଇ ନବୋତ୍‌ଥିତ ପାଞ୍ଚରାତ୍ର ଧର୍ମକୁ ଲୋକପ୍ରିୟ କରାଇବା ପାଞ୍ଚରାତ୍ରାନୁଗାମୀଙ୍କର ଲକ୍ଷ୍ୟଥିଲା ।

ପାଞ୍ଚରାତ୍ର ଧର୍ମର ଅନ୍ୟନାମ ସାତ୍ତ୍ୱତଧର୍ମ ଓ ଭାଗବତ ଧର୍ମ । ସମ୍ଭବତଃ ଉତ୍ତର ଭାରତର ସାତ୍ତ୍ୱତବଂଶୀ କ୍ଷତ୍ରିୟବୃନ୍ଦ ପାଞ୍ଚରାତ୍ରଧର୍ମର ପୃଷ୍ଠପୋଷକ ଥିଲେ । ଏପରି ଅନୁମାନ କରିବାର ଅନ୍ୟଏକ କାରଣ ମଧ୍ୟ ରହିଛି । ତାହାହେଉଛି ସାତ୍ତ୍ୱତବଂଶୀ କ୍ଷତ୍ରିୟ ବା ଯଦୁବଂଶୀ କ୍ଷତ୍ରିୟମାନଙ୍କର ମୁଖ୍ୟ (ସଙ୍କର୍ଷଣ, ବାସୁଦେବ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ)ଙ୍କୁ ପାଞ୍ଚରାତ୍ରଧର୍ମରେ ବିଶିଷ୍ଟ ସ୍ଥାନ ଅର୍ପଣ କରାଯାଇଛି ।

ସନତ୍‌କୁମାର ସଂହିତାର ଇନ୍ଦ୍ରରାତ୍ର ତୃତୀୟୋଧ୍ୟାୟରେ କୁହା-ଯାଇଛି । (୨୮) ଭଗବାନ୍ ବାସୁଦେବ ଧରା ଭାର ହରଣ ଓ ଧର୍ମ ସଂସ୍ଥାପନ

କରିବା ପାଇଁ ମର୍ତ୍ତ୍ୟରେ ବସୁଦେବ ସୁତ ରୂପେ ଦେବକଙ୍କ ଗର୍ଭରୁ ଅବତୀର୍ଣ୍ଣ ହୋଇଥିଲେ । × × × ସେହି ଦେବ ଦେବ ସାତ୍ତ୍ୱତ କୁଳରେ ଜାତ ହୋଇଥିବାରୁ ତାଙ୍କୁ ପଣ୍ଡିତମାନେ ସାତ୍ତ୍ୱତ ରୂପେ ଜାଣିଥିଲେ । ପୁରାଣରେ ମଧ୍ୟ ସେ ସାତ୍ତ୍ୱତ ନାମରେ ପରିଚିତ । ସେ (ବାସୁଦେବ ବା ସାତ୍ତ୍ୱତ) ଲୋକହିତ ନିମିତ୍ତ ପାଞ୍ଚରାତ୍ର ଧର୍ମର ଉପଦେଶ ଦେଇଥିଲେ । ତେଣୁ ଉକ୍ତ ଧର୍ମ (ପାଞ୍ଚରାତ୍ର ଧର୍ମ) ସାତ୍ତ୍ୱତ ଧର୍ମ ନାମରେ ପରିଚିତ । ଯେଉଁମାନେ ତାଙ୍କର ଶିଷ୍ୟ ଓ ଭକ୍ତ ସେମାନେ ସମସ୍ତ ସାତ୍ତ୍ୱତ ନାମରେ ପରିଚିତ । କେହି ସେମାନଙ୍କୁ ସାତ୍ତ୍ୱତ, କେହି ଭାଗବତ, କେହି ବୈଷ୍ଣବ ଏବଂ କେହି ପାଞ୍ଚରାତ୍ରୀ ବୋଲି କହିଥାଆନ୍ତି । ଏହି ସମସ୍ତ ନାମଭେଦରେ ପରିଚିତ ବୈଷ୍ଣବମାନେ ପରିଚିତ ହୋଇଥାଆନ୍ତି ।

ପ୍ରାମାଣିକ ଉପାଦାନ ଆଶ୍ରୟରେ ବାସୁଦେବ ଉପାସନା ଓ ପାଞ୍ଚରାତ୍ର ଧର୍ମର ଅଭ୍ୟୁଦୟକୁ ଖ୍ରୀ:ପୂ ୧୦ମ ଶତାବ୍ଦୀ ପୂର୍ବରେ ଅନୁମାନ କରାଯାଇ ପାରେ । ପ୍ରାମାଣିକ ଉପାଦାନ ଗୁଡ଼ିକ ହେଉଛି— ୧: ଖ୍ରୀ ପୂ ୧୦ମ ଶତାବ୍ଦୀରେ ରଚିତ ଏତରେୟ ବ୍ରାହ୍ମଣ ଗ୍ରନ୍ଥରେ ସାତ୍ତ୍ୱତ ଧର୍ମର ପ୍ରବର୍ତ୍ତକ ସାତ୍ତ୍ୱତ ବଂଶୀ ଋଷିପୁଙ୍ଗବଙ୍କର ଉଲ୍ଲେଖ । (୨୯) ୨- ଖ୍ରୀ ପୂ ୬ଷ୍ଠ ଶତାବ୍ଦୀରେ ଆବିର୍ଭୂତ ପାଣିନିଙ୍କ ଅଷ୍ଟାଧ୍ୟାୟୀରେ ବାସୁଦେବ ଶବ୍ଦର ବ୍ୟାଖ୍ୟା (୩୦) ୩- ଖ୍ରୀ ପୂ ୪ର୍ଥ ଶତାବ୍ଦୀରେ ଆବିର୍ଭୂତ ପତଞ୍ଜଳିଙ୍କ ଭାଷ୍ୟରେ ବଳଦେବ ଓ ବାସୁଦେବ ଶବ୍ଦର ବ୍ୟାଖ୍ୟା । (୩୧)

ପାଞ୍ଚରାତ୍ର ଧର୍ମର ସୃଷ୍ଟି ଅତିପ୍ରାଚୀନ । ଏହାର ସଠିକ କାଳ ନିରୂପଣ କରିବା କଷ୍ଟକର ହେଲେ ହେଁ ଗୁପ୍ତ ସାମ୍ରାଜ୍ୟର ଅଭ୍ୟୁଦୟ ବେଳକୁ ପାଞ୍ଚରାତ୍ର ଧର୍ମ ବା ଭାଗବତ ଧର୍ମ ସୁପ୍ରତିଷ୍ଠିତ ହୋଇସାରିଥିଲା । ଗୁପ୍ତ ରାଜବଂଶର ଦ୍ୱିତୀୟ ଚନ୍ଦ୍ରଗୁପ୍ତ, କୁମାର ଗୁପ୍ତ ଓ ସ୍କନ୍ଦଗୁପ୍ତ ସେମାନଙ୍କ ଦ୍ୱାରା ପ୍ରଚଳିତ ମୁଦ୍ରାରେ ନିଜନାମ ସହିତ ପରମ ଭାଗବତ ଉପାଧି ସଂଯୋଗ କରିଥିବାର ଦେଖାଯାଇଥାଏ । ଏହି ତିନିଜଣ ଗୁପ୍ତ ବଂଶୀ ରାଜା ଖ୍ରୀ ଅ ୪୦୦ରୁ ଖ୍ରୀ ଅ ୪୬୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

## ପାଞ୍ଚରାତ୍ରଧର୍ମରେ ବାସୁଦେବ ବା ବିଷ୍ଣୁଙ୍କର ବିଭିନ୍ନରୂପ, ନାମ ଓ ଅବତାର ବାଦ :

ବେଦରେ ବର୍ଣ୍ଣିତ ବିଷ୍ଣୁ କ୍ରମେ କିପରି ବିଭିନ୍ନ ରୂପରେ ପରିଣତ ହୋଇଥିଲେ ଏବଂ ଅନେକ ନାମ ଧାରଣ କରିଥିଲେ ତାହା ପାଞ୍ଚରାତ୍ର ଧର୍ମର ବାସୁଦେବ ପରିକଳ୍ପନାରୁ ଅନୁଭୂତ ହୋଇଥାଏ । ପାଞ୍ଚରାତ୍ରକୁ ଶ୍ରେଷ୍ଠ ବିଷ୍ଣୁତନ୍ତ୍ର ଭାବେ ସନତ୍କୁମାର ସଂହିତାରେ ଉଲ୍ଲେଖ କରାଯାଇଛି । ଯଥା—

"ଯୋଗ ତନ୍ତ୍ରେଷୁ ସର୍ବେଷୁ ବିଷ୍ଣୁତନ୍ତ୍ର ମନୁତ୍ତମମ୍
ବିଷ୍ଣୁତନ୍ତ୍ରେଷୁ ପଞ୍ଚରାତ୍ର ବିଶିଷ୍ୟତେ ।" (ବ୍ରହ୍ମରାତ୍ରେ ୧୦/୫୩)

ଏଥିରେ ବିଷ୍ଣୁ ଏବଂ ବାସୁଦେବ ଅଭିନ୍ନ ରୂପେ ଗୃହୀତ । ଉପନିଷଦୀୟ ବ୍ରହ୍ମଙ୍କର ଏହା ଏକ ମୂର୍ତ୍ତିମନ୍ତ କଳ୍ପନା ମାତ୍ର ।

ପାଞ୍ଚରାତ୍ର ଧର୍ମର ସୃଷ୍ଟି ପ୍ରସଙ୍ଗରେ କୁହାଯାଇଛି— ସର୍ବବ୍ୟାପୀ ବ୍ରହ୍ମ ହେଉଛନ୍ତି ଭଗବାନ୍ ବାସୁଦେବ । ସେ ଷଡୈଶ୍ୱର୍ଯ୍ୟ ପରିପୂର୍ଣ୍ଣ । ଏହି ଷଡୈଶ୍ୱର୍ଯ୍ୟ ହେଉଛି ଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି, ବଳ, ବୀର୍ଯ୍ୟ ଓ ତେଜ । ଏହି ଷଡ଼ ଐଶ୍ୱର୍ଯ୍ୟରୁ ଦୁଇ ଦୁଇଟି ଐଶ୍ୱର୍ଯ୍ୟ ଗୋଟିଏ ଗୋଟିଏ ବ୍ୟୂହ ଆକାରରେ ପ୍ରକାଶିତ ହୁଏ ।

ଜ୍ଞାନ ଏବଂ ବଳରୁ ସଙ୍କର୍ଷଣ ବ୍ୟୂହ, ଐଶ୍ୱର୍ଯ୍ୟ ଏବଂ ବୀର୍ଯ୍ୟରୁ ପ୍ରଦ୍ୟୁମ୍ନ ବ୍ୟୂହ ଏବଂ ଶକ୍ତି ଓ ତେଜରୁ ଅନିରୁଦ୍ଧ ବ୍ୟୂହର ପ୍ରକାଶଘଟେ । ବାସୁଦେବଙ୍କୁ ନେଇ ଏହା ଚତୁର୍ବ୍ୟୂହ ନାମରେ ପରିଚିତ । ସୃଷ୍ଟିର ପ୍ରଥମ ବିକାଶ ଘଟେ ଏହି ଚତୁର୍ବ୍ୟୂହରୁ । ପୁଣି ବ୍ୟୂହାନ୍ତର ଓ ମୂର୍ତ୍ତ୍ୟନ୍ତରର ବିକାଶ ଘଟେ । ସେହି ବିକାଶ କିପରି କ୍ରମାନୁଯାୟୀ ସଂପାଦିତ ହୋଇଥାଏ ତାହାର ସାରଣୀ ଏଠାରେ ଉଲ୍ଲେଖ ଯୋଗ୍ୟ ।Introduction to Pancharatra ଗ୍ରନ୍ଥର "The Philosophy of Pancharatra" ଶୀର୍ଷକ ଅଧ୍ୟାୟରେ ଏହି ବିକାଶକ୍ରମ ନିମ୍ନମତେ ପ୍ରଦତ୍ତ ହୋଇଛି ।

| ବ୍ୟୂହ | ବ୍ୟୂହାନ୍ତର |
|---|---|
| ୧ - ବାସୁଦେବ | କେଶବ, ନାରାୟଣ, ମାଧବ । |

୨- ସଙ୍କର୍ଷଣ — ଗୋବିନ୍ଦ, ବିଷ୍ଣୁ, ମଧୁସୂଦନ ।
୩ ପ୍ରଦ୍ୟୁମ୍ନ — ତ୍ରିବିକ୍ରମ, ବାମନ, ଶ୍ରୀଧର ।
୪- ଅନିରୁଦ୍ଧ — ହୃଷିକେଶ, ପଦ୍ମନାଭ, ଦାମୋଦର ।

ଏମାନେ ଦ୍ୱାଦଶମାସ ଏବଂ ଦ୍ୱାଦଶ ଆଦିତ୍ୟଙ୍କର ଅଧିଦେବତା ଅଟନ୍ତି । ପାଦତନ୍ତ୍ରରେ ଏହିକ୍ରମ ସାମାନ୍ୟ ଭିନ୍ନ ପ୍ରକାରେ ଉଲ୍ଲିଖିତ । ଯଥା —

| ବ୍ୟୂହ | ବ୍ୟୂହାନ୍ତର |
|---|---|
| ମୂଳ ବାସୁଦେବ | ବାସୁଦେବ ପୁରୁଷୋତ୍ତମ, ଜନାର୍ଦ୍ଦନ |
| ମୂଳ ସଙ୍କର୍ଷଣ | ସଙ୍କର୍ଷଣ, ଅଧୋକ୍ଷଜ, ଉପେନ୍ଦ୍ର, |
| ମୂଳ ପ୍ରଦ୍ୟୁମ୍ନ | ପ୍ରଦ୍ୟୁମ୍ନ, ନୃସିଂହ, ହରି |
| ମୂଳ ଅନିରୁଦ୍ଧ | ଅନିରୁଦ୍ଧ, ଅଚ୍ୟୁତ, କୃଷ୍ଣ |

ଅହିର୍ବୁଧ୍ନ୍ୟ ସଂହିତା ଓ ସାତ୍ତ୍ୱତ ସଂହିତାରେ ପୁନଶ୍ଚ ବାସୁଦେବଙ୍କର ୩୯ଟି ବିଭବର ବର୍ଣ୍ଣନା ରହିଛି । ବାସୁଦେବଙ୍କର ବିଭିନ୍ନ ବ୍ୟୂହ, ବ୍ୟୂହାନ୍ତର ଓ ବିଭିନ୍ନ ବିଭବର ଯେଉଁ ପରିକଳ୍ପନା ଘଟିଥିଲା, ସେଗୁଡିକ ପରବର୍ତ୍ତୀ କାଳରେ ବିଷ୍ଣୁଙ୍କର ଅବତାରବାଦ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ବିଷ୍ଣୁଙ୍କର ଏହି ଅବତାର ବା ବିଭବ ଗୁଡିକୁ ପାଞ୍ଚରାତ୍ର ଶାସ୍ତ୍ରରେ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା-

୧- ମୁଖ୍ୟ ବିଭବ- (ଯାହାଙ୍କର ଉପାସନା ମୁକ୍ତି ପ୍ରଦାୟକ ଏବଂ ଯେ ହେଉଛନ୍ତି ବିଷ୍ଣୁଙ୍କର ସ୍ୱଂୟରୂପ ତୁଲ୍ୟ ଏବଂ ଅପ୍ରାକୃତ ତନୁଧାରୀ)

୨- ଗୌଣ ବିଭବ- ଯାହାଙ୍କର ଉପାସନା ଐଶ୍ୱର୍ଯ୍ୟ ଓ ଶକ୍ତି ପ୍ରଦାୟକ ଏବଂ ଏ ପ୍ରକାର ଅବତାର ହେଉଛନ୍ତି ନିର୍ଦ୍ଦିଷ୍ଟ କାର୍ଯ୍ୟସାଧନ ପାଇଁ ମାନୁଷୀ ତନୁରେ ଭଗବାନଙ୍କ ଶକ୍ତିର ଆବେଶ ମାତ୍ର । ପଦ୍ମନାଭ, ଧ୍ରୁବ, ମଧୁସୂଦନ, କପିଳ, ତ୍ରିବିକ୍ରମ ଆଦି ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

ଉପର୍ଯ୍ୟୁକ୍ତ ଅବତାର ବ୍ୟତୀତ ପାଞ୍ଚରାତ୍ର ଶାସ୍ତ୍ରରେ ଅର୍ଚ୍ଚାବତାର ଓ ଅନ୍ତର୍ଯ୍ୟାମୀ ଅବତାରର ମଧ୍ୟ ବର୍ଣ୍ଣନା କରାଯାଇଛି ।

**ଅର୍ଚ୍ଚାବତାର -** ପୂଜା ନିମିତ୍ତ ତାନ୍ତ୍ରିକ ବିଧିରେ ନିର୍ମିତ ଓ ପ୍ରତିଷ୍ଠିତ ଭଗବାନ୍ ବାସୁଦେବଙ୍କର ପ୍ରସ୍ତରାଦିରେ ନିର୍ମିତ ବିଗ୍ରହ । (ଏଠାରେ ସ୍ମରଣ କରାଇ ଦିଆଯାଇପାରେ ଯେ ପ୍ରାୟ ସମସ୍ତ ପାଞ୍ଚରାତ୍ର ସଂହିତା ଏବଂ ବୈଖାନସ୍ ଆଗମ (ପାଞ୍ଚରାତ୍ର ଭଳି ଏକ ବୈଷ୍ଣବ ତନ୍ତ୍ର) ରେ ବିଷ୍ଣୁ ପ୍ରତିମା ନିର୍ମାଣ କୌଶଳ ଓ ବିଷ୍ଣୁମନ୍ଦିର ନିର୍ମାଣ ଶିଳ୍ପ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ତାନ୍ତ୍ରିକ ରୀତିରେ ଅର୍ଚ୍ଚାବତାରଙ୍କ ପୂଜା ପ୍ରଣାଳୀ ମଧ୍ୟ ତଦ୍ରୂପ ବିସ୍ତୃତ ବର୍ଣ୍ଣିତ ହୋଇଅଛି ।)

**ଅନ୍ତର୍ଯ୍ୟାମୀ ଅବତାର-** ସମସ୍ତ ପ୍ରାଣୀଙ୍କ ଅନ୍ତର ମଧ୍ୟରେ ବାସ କରୁଥିବା ଭଗବାନ୍‌ଙ୍କ ଶକ୍ତି ଅନ୍ତର୍ଯ୍ୟାମୀ ଅବତାର ଭାବରେ ବର୍ଣ୍ଣିତ । ଏହା ଉପନିଷଦ୍ ବର୍ଣ୍ଣିତ ପ୍ରାଣୀ ଅନ୍ତରସ୍ଥିତ ଆତ୍ମାର ଅନ୍ୟରୂପ ବ୍ୟକ୍ତିତ କିଛି ନୁହେଁ ।

## ବାସୁଦେବଙ୍କର ସ୍ୱରୂପ-

ପାଞ୍ଚରାତ୍ର ଧର୍ମରେ ପରିକଳ୍ପିତ ବାସୁଦେବଙ୍କର ସ୍ୱରୂପ ପାଞ୍ଚରାତ୍ର ସଂହିତାମାନଙ୍କରେ ବିଭିନ୍ନ ପ୍ରକାରେ ବର୍ଣ୍ଣନା କରାଯାଇଛି । ସେଥି ମଧ୍ୟରୁ ଅଳ୍ପ କେତୋଟି ପ୍ରାଚୀନ ସଂହିତାରୁ ବାସୁଦେବ-ମହିମା ବ୍ୟଞ୍ଜକ କେତୋଟି ଶ୍ଳୋକର ସାରାଂଶ ଏଠାରେ ପ୍ରଦାନ କରାଯାଇପାରେ । ଅହିର୍ବୁଧ୍ନ୍ୟ ସଂହିତାରେ ଏ ସମ୍ପର୍କରେ କୁହାଯାଇଛି-ବାସୁଦେବ ହେଉଛନ୍ତି ଅନାଦି, ଅନନ୍ତ, ପରଂବ୍ରହ୍ମ, ନାରାୟଣ, ଅନାମୟ, ସର୍ବଭୂତସ୍ଥିତ ଓ ସର୍ବବ୍ୟାପୀ । ସେ ଅପ୍ରାକୃତଗୁଣର ଆଧାର, ଅପ୍ରାକୃତ ଜଗତର ନିଷ୍କଳଙ୍କ ନିରଞ୍ଜନବ୍ରହ୍ମ । (୨\୨୨-୨୪) ସେ ଷଡ୍ ଐଶ୍ୱର୍ଯ୍ୟ (ଐଶ୍ୱର୍ଯ୍ୟର ପ୍ରତିଶବ୍ଦ 'ଭଗ')ର ଅଧିକାରୀ ହୋଇଥିବାରୁ ତାଙ୍କୁ ଭଗବାନ୍ କୁହାଯାଏ । (୨\୨୮) ସେ ବୃହତ୍ ହେତୁ ଉପନିଷଦ୍‌ରେ ବ୍ରହ୍ମରୂପେ କଥିତ । ସେ ଶ୍ରେଷ୍ଠ ଏବଂ ତେଜସ୍ୱୀ ହେତୁ କପିଳ ନାମରେ ବିଦିତ । (୨\୩୭) ସେ ହେଉଛନ୍ତି ସର୍ବଦ୍ୱନ୍ଦ୍ୱ ବିନିର୍ମୁକ୍ତ, ସର୍ବୋପାଧି ବିବର୍ଜିତ ସମସ୍ତ କାରଣର କାରଣ ଏବଂ ଷଡଗୁଣ ଯୁକ୍ତ । (୨\୫୩) ପୁନଶ୍ଚ ଜୟାଖ୍ୟ ସଂହିତାରେ ବାସୁଦେବଙ୍କ ସମ୍ପର୍କରେ ଉଲ୍ଲେଖ ଅଛି ଯେ ସେ ହେଉଛନ୍ତି ଆନନ୍ଦ ଲକ୍ଷଣ ମଣ୍ଡିତ ବ୍ରହ୍ମ ଏବଂ

ସର୍ବୈଶ୍ୱର୍ଯ୍ୟବର୍ଜିତ । ସେ ଜ୍ଞେୟ, ମନୋରମ, ପରାକାଷ୍ଠା ଓ ପରାଗତି । ସୁତରାଂ ଏହିଭଳି ଭାବେ ବାସୁଦେବ ଉଭୟ ନିର୍ଗୁଣ ଏବଂ ସଗୁଣ ରୂପେ ବର୍ଣ୍ଣିତ ହୋଇଛନ୍ତି । ସେ ସମସ୍ତ ଉପାଧିହୀନ, ସମସ୍ତ ଦ୍ୱନ୍ଦ୍ୱ ବିନିର୍ମୁକ୍ତ, ପ୍ରାକୃତ ଗୁଣ ବର୍ଜିତ ଓ ଅପ୍ରାକୃତ ଗୁଣ ମଣ୍ଡିତ ହେତୁ ନିର୍ଗୁଣ ପୁଣି ଷଡୈଶ୍ୱର୍ଯ୍ୟ ବା ଷଡଗୁଣଯୁକ୍ତ ହେତୁ ସଗୁଣ । ପରବର୍ତ୍ତୀ କାଳରେ ବୈଷ୍ଣବ ସମ୍ପ୍ରଦାୟ ... ତତ୍ତ୍ୱ ବିବେଚନା କାଳରେ ପାଞ୍ଚରାତ୍ର ଧର୍ମର ଏହି ବାସୁଦେବ ତତ୍ତ୍ୱକୁ ହିଁ ଭିନ୍ନ ରୂପରେ ଉପସ୍ଥାପନ କରିଛନ୍ତି ।

## ବାସୁଦେବଙ୍କର ଶକ୍ତି —

ପାଞ୍ଚରାତ୍ର ଆଗମ ତନ୍ତ୍ରଶାସ୍ତ୍ର ହୋଇଥିବାରୁ ବାସୁଦେବଙ୍କ ସହିତ ଶକ୍ତି କଳ୍ପନାର ସଂଯୋଗ ଏକ ସ୍ୱାଭାବିକ ପରିଣତି ରୂପେ ଦେଖା ଦେଇଥାଏ । ପ୍ରାୟ ସମସ୍ତ ପାଞ୍ଚରାତ୍ର ସଂହିତାମାନଙ୍କରେ ବାସୁଦେବଙ୍କର ଶକ୍ତିକୁ କ୍ରିୟାଶକ୍ତି ଓ ଇଚ୍ଛାଶକ୍ତି (ଭୂତିଶକ୍ତି) ଭେଦରେ ଦୁଇଭାଗରେ ବିଭକ୍ତି କରାଯାଇଛି । କ୍ରିୟାଶକ୍ତି ହେଉଛନ୍ତି ସୁଦର୍ଶନ ଓ ଇଚ୍ଛାଶକ୍ତି ବା ଭୂତିଶକ୍ତି ହେଉଛି ଭଗବାନ୍‌ଙ୍କର ଯେଉଁ ଶକ୍ତି ବିଭିନ୍ନ ରୂପରେ ଜଗତରେ ପରିଣତ ହୋଇଯାଏ । ବାସୁଦେବଙ୍କର ସୃଷ୍ଟି କରିବାର ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବାର କାର୍ଯ୍ୟ ହେଉଛି କ୍ରିୟାଶକ୍ତି ସୁଦର୍ଶନଙ୍କର । ମହାଲକ୍ଷ୍ମୀ ହେଉଛନ୍ତି ତାଙ୍କର ଇଚ୍ଛାଶକ୍ତି ପାଞ୍ଚରାତ୍ର ସଂହିତାମାନଙ୍କରେ ତାଙ୍କୁ ଆନନ୍ଦା ସ୍ୱତନ୍ତ୍ରା, ଲକ୍ଷ୍ମୀ, ଶ୍ରୀପଦ୍ମା ଆଦି ବିଭିନ୍ନ ନାମରେ ନାମିତ କରାଯାଇଛି । ମହାଲକ୍ଷ୍ମୀଙ୍କୁ ବିଷ୍ଣୁ ବା ବାସୁଦେବଙ୍କର ଆତ୍ମଭୂତା ଶକ୍ତି କୁହାଯାଇଛି । ଯଥା-"ଆତ୍ମଭୂତା ହି ଯା ଶକ୍ତିଃ ପରସ୍ୟ ବ୍ରହ୍ମଣୋ ହରେଃ" (ଅହିର୍ବୁଧ୍ନ୍ୟ ସଂହିତା, ୫\୪) ।

ଚୈତନ୍ୟ ସଂପ୍ରଦାୟରେ ପାଞ୍ଚରାତ୍ର ସଂହିତା କଳ୍ପନାକୁ ଆଧାରକରି ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କର ଆତ୍ମଭୂତା ଶକ୍ତି ରୂପେ ବର୍ଣ୍ଣନା କରାଯାଇଛି ।

## ବାସୁଦେବଙ୍କର ବ୍ୟୂହ ବା ଐଶ୍ୱର୍ଯ୍ୟ -

ଭଗବାନ୍ ବାସୁଦେବ ଷଡୈଶ୍ୱର୍ଯ୍ୟର ଆଧାର ବୋଲି ପୂର୍ବେ କୁହାଯାଇଛି । ଏହି ଷଡଐଶ୍ୱର୍ଯ୍ୟ ହେଉଛି ଅପ୍ରାକୃତ ଷଡଗୁଣ । ତାଙ୍କର

ଏହି ଐଶ୍ବର୍ଯ୍ୟ ମଧ୍ୟରୁ ଦୁଇ ଦୁଇଟି ଐଶ୍ବର୍ଯ୍ୟ ମିଳିତ ହୋଇ ଗୋଟିଏ ଲେଖାଏଁ ବ୍ୟୂହ ରଚିତ ହୁଏ । ଯଥା--

| ବ୍ୟୂହ | | ଐଶ୍ବର୍ଯ୍ୟ |
|---|---|---|
| ପ୍ରଥମ ବ୍ୟୂହ - | ସଙ୍କର୍ଷଣ ବ୍ୟୂହ- | ୧- ଜ୍ଞାନ- ଅଜଡ, ସ୍ୱାତ୍ମସମ୍ବୋଧୀ, ନିତ୍ୟ, ସର୍ବାପଗ୍ରାହ୍ୟଗୁଣ |
| | | ୨- ବଳ- ଜଗତ ନିର୍ମାଣ କରିବାର କ୍ଲାନ୍ତିହୀନ ସାମର୍ଥ୍ୟ |
| ଦ୍ୱିତୀୟ ବ୍ୟୂହ - | ପ୍ରଦ୍ୟୁମ୍ନ ବ୍ୟୂହ- | ୩- ଐଶ୍ବର୍ଯ୍ୟ- ସ୍ୱାତନ୍ତ୍ର୍ୟ ପରିବୃଂହିତ ଜଗତ କର୍ତ୍ତୃତ୍ୱ |
| | | ୪- ବୀର୍ଯ୍ୟ-ଜଗତର ସମସ୍ତ ପଦାର୍ଥର ମୂଳ କାରଣ ବା ଉପାଦାନ । |
| ତୃତୀୟ ବ୍ୟୂହ - | ଅନିରୁଦ୍ଧ ବ୍ୟୂହ- | ୫- ଶକ୍ତି-ସାମର୍ଥ୍ୟ, ଭଗବାନ୍‌ଙ୍କର ଇଚ୍ଛା ଏହି ଜଗତର ଉପାଦାନ କାରଣ |
| | | ୬- ତେଜ- ଭଗବାନ୍ ଜଗତର ଉପାଦାନ କାରଣ ହେଲେ ମଧ୍ୟ ତାଙ୍କଠାରେ ବିଦ୍ୟମାନ ନିର୍ବିକାର ତାକୁ ତେଜ କୁହାଯାଇଥାଏ । |

## ବାସୁଦେବଙ୍କଠାରୁ ସୃଷ୍ଟି

ସୃଷ୍ଟିତତ୍ତ୍ୱ ପ୍ରସଙ୍ଗରେ ପାଞ୍ଚରାତ୍ର ଶାସ୍ତ୍ରରେ, ଶୁଦ୍ଧସୃଷ୍ଟି ଓ ଶୁଦ୍ଧେତର ସୃଷ୍ଟି ଏହିପରି ସୃଷ୍ଟିର ଦୁଇଟି ପର୍ଯ୍ୟାୟ କଳ୍ପନା କରାଯାଇଅଛି । ପରଂବ୍ରହ୍ମ ବାସୁଦେବ ସୃଷ୍ଟି କରିବା ମାନସରେ ପ୍ରଥମେ ସଙ୍କର୍ଷଣରେ, ସଙ୍କର୍ଷଣରୁ ପ୍ରଦ୍ୟୁମ୍ନରେ ଓ ପ୍ରଦ୍ୟୁମ୍ନରୁ ଅନିରୁଦ୍ଧରେ ପରିଣତ ହୁଅନ୍ତି । ଜୟାଖ୍ୟ ସଂହିତାର ବ୍ରହ୍ମସର୍ଗାଖ୍ୟାନରେ ଏହାକୁ ସାମାନ୍ୟ ଭିନ୍ନ ପ୍ରକାରେ ନାମ କରଣ କରା-ଯାଇ କୁହାଯାଇଛି ବାସୁଦେବ ଅଚ୍ୟୁତରେ, ଅଚ୍ୟୁତ ସତ୍ୟରେ ଓ ସତ୍ୟ ପୁରୁଷରେ ପରିଣତ ହୁଅନ୍ତି । ଅହିର୍ବୁଧ୍ନ୍ୟ ସଂହିତାର ବର୍ଣ୍ଣନାନୁଯାୟୀ

ସୃଷ୍ଟିର ପ୍ରାରମ୍ଭକାଳରେ ପରବ୍ରହ୍ମ ବାସୁଦେବ ବା ବିଷ୍ଣୁଙ୍କର ଇଚ୍ଛାନୁଯାୟୀ ତାଙ୍କଠାରେ ଅବସ୍ଥିତ ଶକ୍ତିରୂପିଣୀ ଲକ୍ଷ୍ମୀଙ୍କର ଉନ୍ମେଷ ଘଟେ । ଏହି ଶକ୍ତି କ୍ରିୟାଶକ୍ତି ସୁଦର୍ଶନ ଓ ଇଚ୍ଛାଶକ୍ତି ବା ଭୂତି ଶକ୍ତି ମହାଲକ୍ଷ୍ମୀ ରୂପରେ ଆତ୍ମପ୍ରକାଶ କରେ । ସୃଷ୍ଟିର ଏହି ପ୍ରଥମ ପ୍ରକାଶକୁ ଶୁଦ୍ଧସୃଷ୍ଟି କୁହାଯାଇଥାଏ । ଏହି କାଳରେ ବ୍ରହ୍ମଙ୍କଠାରେ ଅପ୍ରାକୃତ ଷଡଗୁଣ ବା ଷଡଐଶ୍ୱର୍ଯ୍ୟର ଉନ୍ମେଷ ଘଟିଥାଏ ଏବଂ ସେ ବାସୁଦେବ ଆଖ୍ୟା ଧାରଣ କରନ୍ତି । ଏଥି ମଧ୍ୟରୁ ଦୁଇଟି ଲେଖାଏଁ ଐଶ୍ୱର୍ଯ୍ୟ ତିନଟି ପର୍ଯ୍ୟାୟରେ ତିନଟି ବ୍ୟୂହ ଆକାରରେ ପ୍ରକାଶିତ ହୁଏ । ପ୍ରତ୍ୟେକ ବ୍ୟୂହଙ୍କର ଦୁଇଟି ଲେଖାଏଁ କାର୍ଯ୍ୟଥାଏ । ତାହା ହେଉଛି ସୃଷ୍ଟି କାର୍ଯ୍ୟ ଓ ଆଧ୍ୟାତ୍ମିକ ଶିକ୍ଷା କାର୍ଯ୍ୟ । ନିମ୍ନରେ ଏହି କାର୍ଯ୍ୟମାନଙ୍କର ସୂଚନା ଦିଆଗଲା ।

## ସଙ୍କର୍ଷଣଙ୍କର କାର୍ଯ୍ୟ

**ସୃଷ୍ଟି କାର୍ଯ୍ୟ** - ସଙ୍କର୍ଷଣଙ୍କଠାରେ ସମଗ୍ର ସୃଷ୍ଟି ଭ୍ରୂଣାବସ୍ଥାରେ ଅବସ୍ଥାନ କରେ । ସେଥିପାଇଁ ସଙ୍କର୍ଷଣଙ୍କୁ ଅଶେଷ ଭୁବନାଧାର କୁହାଯାଇ ଥାଏ । ସମସ୍ତ ଜୀବଜଗତ ତାଙ୍କଠାରୁ ସୃଷ୍ଟି ହୁଏ । ତେଣୁ **ବିଶ୍ୱକ୍ସେନ** ସଂହିତାରେ ତାଙ୍କୁ ଜୀବଜଗତର ଅଧିଷ୍ଠାତା କୁହାଯାଇଛି । (୭\୨୭)

**ଶିକ୍ଷାକାର୍ଯ୍ୟ** (ଐକାନ୍ତିକ ମାର୍ଗ) - ସଙ୍କର୍ଷଣ ଜ୍ଞାନେନ୍ଦ୍ରିୟମାନଙ୍କର ଅଧିପତି । ତେଣୁ ସେ ଜୀବକୁ ମୋକ୍ଷଲାଭ କରିବାର ଜ୍ଞାନ ବା ଶିକ୍ଷା ପ୍ରଦାନ କରନ୍ତି । ଏହାକୁ ଐକାନ୍ତିକ ମାର୍ଗ (ଐକାନ୍ତିକ ଭକ୍ତିମାର୍ଗ) କୁହାଯାଏ ।

## ପ୍ରଦ୍ୟୁମ୍ନଙ୍କର କାର୍ଯ୍ୟ

**ସୃଷ୍ଟି କାର୍ଯ୍ୟ** - ପ୍ରଦ୍ୟୁମ୍ନଙ୍କଠାରୁ ପୁରୁଷ ଏବଂ ପ୍ରକୃତି ଓ କାଳର ବିକାଶ ଘଟେ । ମନର ଅଧ୍ୟକ୍ଷ ରୂପେ ପ୍ରଦ୍ୟୁମ୍ନଙ୍କୁ ମଧ୍ୟ ବର୍ଣ୍ଣନା କରାଯାଇଛି । ତେଣୁ ପ୍ରଦ୍ୟୁମ୍ନଙ୍କଠାରୁ ମନର ବିକାଶ ମଧ୍ୟ ଘଟିଥାଏ । ପ୍ରଦ୍ୟୁମ୍ନ ମାନବ ଓ ବୈଦ୍ୟସର୍ଗର ସ୍ରଷ୍ଟା **ଅଟନ୍ତି** ବୋଲି ପାଞ୍ଚରାତ୍ରରେ କୁହାଯାଇଛି ।

**ଶିକ୍ଷାକାର୍ଯ୍ୟ** (ଚରିତ୍ରକ୍ରିୟା) - ସଙ୍କର୍ଷଣ ଯେଉଁ ଐକାନ୍ତିକ ମାର୍ଗର ଶିକ୍ଷା ପ୍ରଦାନ କରନ୍ତି, ତାହା ଯେପରି ଜୀବ କାର୍ଯ୍ୟରେ ପରିଣତ କରେ ବା

ତାହାର ସାଧନ ସଠିକ୍ ଧାଟରେ କରେ, ତାହାର ଦାୟିତ୍ୱ ପ୍ରଦ୍ୟୁମ୍ନ ବହନ କରିଥାନ୍ତି ।

## ଅନିରୁଦ୍ଧଙ୍କର କାର୍ଯ୍ୟ

**ସୃଷ୍ଟି କାର୍ଯ୍ୟ-** ଅନିରୁଦ୍ଧ ହେଉଛନ୍ତି ବ୍ରହ୍ମାଣ୍ଡ ଏବଂ ବ୍ରହ୍ମାଣ୍ଡ ମଧ୍ୟସ୍ଥ ସମସ୍ତର ସ୍ରଷ୍ଟା । ତାଙ୍କ ଯୋଗେ ପ୍ରକୃତିର ବ୍ୟକ୍ତାବସ୍ଥା ପ୍ରକାଶିତ ହୁଏ । ଅର୍ଥାତ୍ ବଦ୍ଧ ଆତ୍ମା ସମୂହର ସୃଷ୍ଟି ହୋଇଥାଏ । ଏହାକୁ ମିଶ୍ର ସୃଷ୍ଟି କୁହାଯାଏ । ସେ ବ୍ରହ୍ମାଣ୍ଡର ଧାରଣକର୍ତ୍ତା, ରକ୍ଷାକର୍ତ୍ତା ଅଟନ୍ତି । ଅନିରୁଦ୍ଧଙ୍କୁ ଅହଙ୍କାରର ଅଧ୍ୟକ୍ଷ କୁହାଯାଇଅଛି ।

**ଶିକ୍ଷାକାର୍ଯ୍ୟ** (ତତ୍ତ୍ୱଫଳ) - ଐକାନ୍ତିକ ମାର୍ଗ ସାଧନର ଫଳ ପ୍ରଦାନ କାର୍ଯ୍ୟ ହେଉଛି ଅନିରୁଦ୍ଧଙ୍କର ଅର୍ଥାତ୍ ଅନିରୁଦ୍ଧ ଜୀବକୁ ତା'ର ଚରମ ଲକ୍ଷ୍ୟ ମୋକ୍ଷରେ ପହଞ୍ଚାଇ ଥାନ୍ତି ।

ସନତ୍କୁମାର ସଂହିତା (ଇନ୍ଦ୍ରରାତ୍ର)ରେ କୁହାଯାଇଛି ଅବ୍ୟକ୍ତବାସୁଦେବଙ୍କଠାରୁ ଆଦିଦେବ (ଯେ ହେଉଛନ୍ତି ସମସ୍ତ ବିଶ୍ୱର କର୍ତ୍ତା, ଦେବତା ମାନଙ୍କର ଈଶ୍ୱର, ଲୋକମାନଙ୍କର ପ୍ରଭୁ ଏବଂ ସମସ୍ତଙ୍କର ରକ୍ଷାକର୍ତ୍ତା), ଆଦିଦେବ ବାସୁଦେବଙ୍କଠାରୁ ସଙ୍କର୍ଷଣ (ଯେ ଶିବନାମରେ କଥିତ ଏବଂ କ୍ଷୟକର୍ତ୍ତା ରୂପେ ବନ୍ଦିତ), ସଙ୍କର୍ଷଣଙ୍କଠାରୁ ପ୍ରଦ୍ୟୁମ୍ନ, ଯେ ବ୍ରହ୍ମା ରୂପେ ବନ୍ଦିତ ଓ ସୃଷ୍ଟିକର୍ତ୍ତାରୂପେ ଖ୍ୟାତ), ପ୍ରଦ୍ୟୁମ୍ନଙ୍କଠାରୁ ଅନିରୁଦ୍ଧ (ଯେ ପୁରୁଷୋତ୍ତମ ରୂପେ ଖ୍ୟାତ) ଜାତ ହୁଅନ୍ତି । ଆଦି ବାସୁଦେବ ଶୁକ୍ଳବର୍ଣ୍ଣ ବିଶିଷ୍ଟ, ସଙ୍କର୍ଷଣ ରକ୍ତବର୍ଣ୍ଣ ବିଶିଷ୍ଟ, ପ୍ରଦ୍ୟୁମ୍ନ ପୀତବର୍ଣ୍ଣ ବିଶିଷ୍ଟ ଓ ଅନିରୁଦ୍ଧ କୃଷ୍ଣବର୍ଣ୍ଣ ବିଶିଷ୍ଟ ଅଟନ୍ତି । ଏମାନଙ୍କର ଶକ୍ତି ହେଉଛନ୍ତି ଯଥାକ୍ରମେ ଶାନ୍ତି, ଶ୍ରୀ, ସରସ୍ୱତୀ ଓ ରତି । ଅନିରୁଦ୍ଧ ସୃଷ୍ଟିର ପ୍ରଥମ ଜଳ (କାରଣାର୍ଣ୍ଣବ) ଉତ୍ପନ୍ନ କରି ତହିଁରେ ଶୟନକରନ୍ତି । ତାଙ୍କ ନାଭିରୁ ବ୍ରହ୍ମା ଜନ୍ମହୋଇ ସମସ୍ତ ପ୍ରାଣୀ ଜଗତର ସୃଷ୍ଟି କରନ୍ତି । ପାଞ୍ଚରାତ୍ର ଧର୍ମରେ ବର୍ଣ୍ଣିତ ସୃଷ୍ଟିତତ୍ତ୍ୱରେ ସାଂଖ୍ୟର ପୁରୁଷ ପ୍ରକୃତିବାଦ ଗୃହୀତ ହୋଇଥିଲେ ହେଁ ସାଂଖ୍ୟର ପ୍ରକୃତି ପୁରୁଷର ଅଧୀନ ନୁହେଁ । କିନ୍ତୁ ପାଞ୍ଚରାତ୍ର ଧର୍ମର ପ୍ରକୃତି ପୁରୁଷ ଅଧୀନ । ପାଞ୍ଚରାତ୍ର ଧର୍ମ ମତରେ ପୁରୁଷ ଇଚ୍ଛାରେ ପ୍ରକୃତିରେ ଥିବା ଗୁଣତ୍ରୟ (ସତ୍ତ୍ୱ, ରଜ ଓ

ତମ)ର ସାମ୍ୟାବସ୍ଥା ବିନଷ୍ଟ ହୁଏ । ଗୁଣତ୍ରୟର ତରଙ୍ଗାପ୍ଲୁତ ଅସାମ୍ୟ, ଅଶାନ୍ତ ଅବସ୍ଥାକୁ ଅହଙ୍କାର କୁହାଯାଏ । ଏଥିରୁ ସୃଷ୍ଟି କିପରି ବିକଶିତ ହୁଏ, ତାହାର ବର୍ଣ୍ଣନା ଜୟାଖ୍ୟ ସଂହିତାରେ ନିମ୍ନମତେ ବର୍ଣ୍ଣନା କରାଯାଇଛି ।

## ସୃଷ୍ଟିର ପ୍ରଥମ ପର୍ଯ୍ୟାୟ (ଶୁଦ୍ଧସୃଷ୍ଟି)

ପରଂବ୍ରହ୍ମ ବାସୁଦେବ (ଜ୍ଞାନ ଓ ଆନନ୍ଦର ଆଧାର)
|
ଅଚ୍ୟୁତ (ଅନ୍ୟ ପାଞ୍ଚରାତ୍ର ସଂହିତାରେ ସଙ୍କର୍ଷଣ)
|
ସତ୍ୟ (ଅନ୍ୟ ପାଞ୍ଚରାତ୍ର ସଂହିତାରେ ପ୍ରଦ୍ୟୁମ୍ନ)
|
ପୁରୁଷ ଅନ୍ୟ ପାଞ୍ଚରାତ୍ର ସଂହିତାରେ ଅନିରୁଦ୍ଧ)

ଏହି ପୁରୁଷଙ୍କଠାରୁ ସମସ୍ତ ଅବତାର ପୁରୁଷ ଜାତ ହୁଅନ୍ତି ।

## ସୃଷ୍ଟିର ଦ୍ୱିତୀୟ ପର୍ଯ୍ୟାୟ (ଶୁଦ୍ଧେତର ସୃଷ୍ଟି)

ପୁରୁଷଙ୍କର ସୃଷ୍ଟି କରିବା ଇଚ୍ଛାରେ ଅନାଦି, ଅଜ, ଅବ୍ୟକ୍ତ ଗୁଣମୟୀ ପ୍ରକୃତିରେ କମ୍ପନ ସୃଷ୍ଟି ହୋଇ ତାହାର ସାମ୍ୟାବସ୍ଥା ନଷ୍ଟହୁଏ । ପ୍ରକୃତିସ୍ଥ ବା ପ୍ରଧାନ ମଧ୍ୟସ୍ଥ ଗୁଣତ୍ରୟ (ସତ୍ତ୍ୱ ରଜ, ତମ)ରେ ତରଙ୍ଗ ସୃଷ୍ଟି ହୋଇ କେତେବେଳେ ସତ୍ତ୍ୱଗୁଣର ପ୍ରାଧାନ୍ୟ, କେତେବେଳେ ରଜୋଗୁଣର ପ୍ରାଧାନ୍ୟ, କେତେବେଳେ ତମୋଗୁଣର ପ୍ରାଧାନ୍ୟ ପ୍ରକାଶ ପାଏ । ଏହାକୁ ଅହଙ୍କାର କୁହାଯାଏ । ଏହି ଅହଙ୍କାରରୁ ସମସ୍ତ ସୃଷ୍ଟି ହୁଏ । ଯଥା-

ପ୍ରଧାନ(ପ୍ରକୃତି)

|

ବୁଦ୍ଧି

|

ଅହଙ୍କାର

| ପ୍ରକାଶାତ୍ମା [ସତ୍ତ୍ୱଗୁଣ ପ୍ରଧାନ] | ବିକୃତ୍ୟାତ୍ମା [ରଜୋଗୁଣ ପ୍ରଧାନ] | ଭୂତାତ୍ମା [ତମୋଗୁଣ ପ୍ରଧାନ] |
|---|---|---|
| ଚକ୍ଷୁ, କର୍ଣ୍ଣ, ଜିହ୍ୱା, ନାସିକା, ତ୍ୱକ୍ | ବାକ୍, ପାଦ, ପାଣି, ପାୟୁ, ଉପସ୍ଥ | କ୍ଷିତି, ଅପ୍, ତେଜ ମରୁତ୍, ବ୍ୟୋମ |

(ସ୍ପର୍ଶ, ରସ, ରୂପ, ଗନ୍ଧ, ଶବ୍ଦ
ଆଦି ପଞ୍ଚତନ୍ମାତ୍ର ଯୁକ୍ତ)

## ସୃଷ୍ଟିର ତୃତୀୟ ପର୍ଯ୍ୟାୟ [ଶୁଦ୍ଧେତର ସୃଷ୍ଟି]

ବାସୁଦେବଙ୍କର ନାଭିକମଳରୁ ଜାତବ୍ରହ୍ମା ସତ୍ତ୍ୱଗୁଣ ସାହାଯ୍ୟରେ ଋଷିଗଣ, ପିତୃଗଣ, ରଜୋଗୁଣ ସାହାଯ୍ୟରେ ଦେବମାନବ ଓ ତମୋଗୁଣ ସାହାଯ୍ୟରେ ଭୂତ, ପ୍ରେତ, ପିଶାଚ, ଗନ୍ଧର୍ବ କିନ୍ନର ଆଦି ସୃଷ୍ଟି କରନ୍ତି । ପାଞ୍ଚରାତ୍ର ଆଗମରେ ସୃଷ୍ଟିତତ୍ତ୍ୱ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଅଛି । ସେ ସବୁର ଅବତାରଣା ଏଠାରେ ଅପ୍ରୟୋଜନୀୟ ମନେହୁଏ, ତେଣୁ ତାହାକୁ ଏଠାରେ ପ୍ରଦାନ କରାଯାଉ ନାହିଁ ।

## ବାସୁଦେବ ଏବଂ ତାଙ୍କର ବିଭିନ୍ନ ଅବତାରଙ୍କର ରୂପ :

ପାଞ୍ଚରାତ୍ର ଆଗମମାନଙ୍କରେ ସର୍ବତ୍ର ବାସୁଦେବ ଏବଂ ତାଙ୍କର ବିଭିନ୍ନ ରୂପକୁ ଚତୁର୍ଭୁଜ, ଶଙ୍ଖଚକ୍ର ଗଦାପଦ୍ମ ଶୋଭିତ, ପୀତବସନ ଯୁକ୍ତ ବନମାଳା ଶୋଭିତ, କୌସ୍ତୁଭମଣି, କିରୀଟି, କେୟୂର, କଙ୍କଣାଦି ଅଳଙ୍କାର

ମଣ୍ଡିତ ରୂପେ ବର୍ଣ୍ଣନା କରାଯାଇଅଛି । କେତେକ ସ୍ଥଳରେ ତାଙ୍କୁ ଶୁକ୍ଳବର୍ଣ୍ଣ ଯୁକ୍ତ ଓ ମେଘଶ୍ୟାମ ବର୍ଣ୍ଣ ବିଗ୍ରସିତ ରୂପେ ମଧ୍ୟ ବର୍ଣ୍ଣନା କରାଯାଇଛି ।

## ପାଞ୍ଚରାତ୍ର ଧର୍ମର ସାଧନାମାର୍ଗ -

ପାଞ୍ଚରାତ୍ର ଧର୍ମର ସାଧନାମାର୍ଗରେ ଯୋଗସାଧନା, ଭକ୍ତି ଓ ଶରଣାଗତି ବିଷୟ କୁହାଯାଇଛି । ବାସୁଦେବଙ୍କର ଅନ୍ତର୍ଯ୍ୟାମୀ ରୂପ ଯୋଗ ସାଧନା ପାଇଁ ଉଦ୍ଦିଷ୍ଟ । ଅର୍ଚ୍ଚାବତାର [ବିଗ୍ରହ] ଭକ୍ତି ସାଧନା ପାଇଁ ଉଦ୍ଦିଷ୍ଟ ଏବଂ ବିଭବାବତାର ଶରଣାଗତିପାଇଁ ଉଦ୍ଦିଷ୍ଟ । ବିଭବାବତାର ମାନଙ୍କମଧ୍ୟରୁ ଅପ୍ରାକୃତ ତନୁଧାରୀ ପରଂବ୍ରହ୍ମ ବାସୁଦେବ ଜୀବର ମୋକ୍ଷ ପ୍ରଦାୟକ । ମୋକ୍ଷ ସାଧନାପାଇଁ ତାଙ୍କର ଶରଣାଗତି ଜୀବର କାମ୍ୟ । ଅନ୍ୟ ଆବିଷ୍ଟ ଅବତାର (ବାସୁଦେବଙ୍କ ବ୍ୟୂହ ଓ ବ୍ୟୂହାନ୍ତର ତଥା ବିଭବର ଦେବତା) ମାନଙ୍କର ଶରଣାଗତିରେ ଐଶ୍ୱର୍ଯ୍ୟ ଓ ଶକ୍ତିଲାଭ ହୋଇଥାଏ । (ଅହିର୍ବୁଧ୍ନ୍ୟ ସଂହିତା ପାଞ୍ଚରାତ୍ର ଧର୍ମରେ ଏହି ଶରଣାଗତିକୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି ଓ [୮/୫୦-୫୨]) ଶରଣାଗତି ୬ଟି ପର୍ଯ୍ୟାୟରେ ବିଭକ୍ତ । ଯଥା:—

୧- ଆନୁକୂଲ୍ୟର ସଂକଳ୍ପ ଅର୍ଥାତ୍ ଭଗବାନଙ୍କର ଯେଉଁ ପ୍ରୀତିରେ ସନ୍ତୋଷ ହେବ, ସେପରି କାର୍ଯ୍ୟ କରିବା ।

୨ ପ୍ରାତିକୂଲ୍ୟର ବର୍ଜ୍ଜନ ଅର୍ଥାତ୍ ଯାହା ଭଗବାନଙ୍କ ସନ୍ତୋଷ ବିଧାନର ପ୍ରତିକୂଳ, ତାହାର ପରିତ୍ୟାଗ ।

୩ ଭଗବାନଙ୍କୁ ରକ୍ଷାକର୍ତ୍ତାରୂପେ ବିଶ୍ୱାସ କରିବା ।

୪ [ଗୋପ୍ତୃତ୍ୱ ବରଣ] ରକ୍ଷାକର୍ତ୍ତା ଭଗବାନଙ୍କଠାରେ ଦୃଢ଼ଭାବରେ ବିଶ୍ୱାସ ସ୍ଥାପନକରି ତାଙ୍କୁ ବରଣ [ଆଶ୍ରୟ] କରିବା ।

୫- ଆତ୍ମ ନିକ୍ଷେପ ଅର୍ଥାତ୍ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କରିବା ।

୬- କାର୍ପଣ୍ୟ [କାତର ଭାବ] ଅର୍ଥାତ୍ ଭଗବାନଙ୍କଠାରେ ଅତିକାତର ଶରଣ ଯିବା ।

ଜୀବର ମୋକ୍ଷଲାଭପାଇଁ ଭଗବାନ ବାସୁଦେବଙ୍କର ଅନୁଗ୍ରହ ଏକାନ୍ତ ଆବଶ୍ୟକ । ଶରଣାଗତି ଦ୍ୱାରା କେବଳ ସେହି ଅନୁଗ୍ରହ ଲାଭ କରାଯାଇଥାଏ ।

## ଗୋପାଳକୃଷ୍ଣ ଉପାସନାର ବିକାଶ

ମହାଭାରତ ଗ୍ରନ୍ଥରେ ବର୍ଣ୍ଣିତ ବାସୁଦେବ କୃଷ୍ଣ ଯଦୀପ୍ଯ ଅଟନ୍ତି, ସେ ଗୋପାଳକୃଷ୍ଣ ନୁହନ୍ତି । ପ୍ରଚରେ ପ୍ରସଙ୍ଗାନୁଯାୟୀ କୁହାଯାଇଛି ଯେ ସାତ୍ତ୍ୱତ ବଂଶୀ ବା ଯଦୁବଂଶୀ କ୍ଷତ୍ରିୟମାନେ ଧର୍ମକ୍ଷେତ୍ରରେ ଏକ ବିପ୍ଲବ ସୃଷ୍ଟି କରି ଭକ୍ତିକେନ୍ଦ୍ରିକ ପାଞ୍ଚରାତ୍ରଧର୍ମ ବା ସାତ୍ତ୍ୱତଧର୍ମ ବା ଭାଗବତ ଧର୍ମର ପ୍ରଚାର କରିଥିଲେ । ଏହିଧର୍ମରେ ସେମାନଙ୍କ ବଂଶର ମୁଖ୍ୟମାନଙ୍କୁ (ବାସୁଦେବ (ଶ୍ରୀକୃଷ୍ଣ), ସଂକର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ)ଙ୍କୁ ବିଶିଷ୍ଟସ୍ଥାନ ଅର୍ପଣ କରାଯାଇଥିଲା । ଏହିଭଳି ଭାବରେ କ୍ଷତ୍ରିୟ ବାସୁଦେବକୃଷ୍ଣଙ୍କୁ କେନ୍ଦ୍ରକରି ବୈଷ୍ଣବଧର୍ମ ଏକ ନୂତନ ଦିଗରେ ଗତିକରିଥିଲା । ସାତ୍ତ୍ୱତବଂଶ ଦ୍ୱାରା ପ୍ରଚଳିତ ଏହି ଧର୍ମର ତତ୍ତ୍ୱ ଅନେକାଂଶରେ ବୈଦିକ ମତବାଦର ଅନୁକୂଳ ନଥିବାରୁ ତତ୍କାଳୀନ ପ୍ରସିଦ୍ଧ ରାଜନ୍ୟଗଣ (ଦୁର୍ଯ୍ୟୋଧନ, ଶାଲ୍ୱ, ଶିଶୁପାଳ, ଦନ୍ତବକ୍ର, ଜରାସନ୍ଧ ଏହାର ଘୋର ବିରୋଧ କରିଥିଲେ । ଜରାସନ୍ଧର ପ୍ରଚଣ୍ଡ ଆକ୍ରମଣକୁ ପ୍ରତିହତ କରି ନପାରି ସାତ୍ତ୍ୱତବଂଶୀ କ୍ଷତ୍ରିୟ ଶ୍ରୀକୃଷ୍ଣଙ୍କ ଅଧିନାୟକତ୍ୱରେ ପଶ୍ଚିମ ଭାରତର ଦ୍ୱାରକା ନାମକ ସ୍ଥାନରେ ନିବାସ କରିଥିଲେ । ସେଠାରେ ଅବସ୍ଥାନକରି ସେମାନେ ପାଣ୍ଡୁବଂଶୀ କ୍ଷତ୍ରିୟ, ପାଞ୍ଚାଳଦେଶ ଓ ମତ୍ସ୍ୟଦେଶ ରାଜାଙ୍କ ସହାୟତାରେ ପୂର୍ବୋକ୍ତ ରାଜନ୍ୟଗଣଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ସେହିଯୁଦ୍ଧ ମହାଭାରତ ଯୁଦ୍ଧ ନାମରେ ବିଦିତ । ଏହି ଯୁଦ୍ଧରେ ସାତ୍ତ୍ୱତଧର୍ମ ବିରୋଧୀ କ୍ଷତ୍ରିୟ ରାଜବଂଶର ସମୂଳ ଧ୍ୱଂସ ଘଟିଥିଲା । ଏବଂ ଉତ୍ତର ଭାରତ ଓ ପଶ୍ଚିମ ଭାରତରେ ସାତ୍ତ୍ୱତଧର୍ମ ପୂର୍ଣ୍ଣପ୍ରତିଷ୍ଠା ଲାଭ କରିଥିଲା । ସାତ୍ତ୍ୱତ-ବଂଶୀ କ୍ଷତ୍ରିୟଗଣ ବଂଶାନୁକ୍ରମିକ ଭାବେ ଏହିଧର୍ମର ସର୍ବଭାରତୀୟ ପ୍ରସାର ଲାଗି ପ୍ରବଳ ଉଦ୍ୟମ କରିଥିଲେ । ପ୍ରାତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ଜଣାପଡେ ଯେ ଏକଦା ଚତୁର୍ବ୍ୟୂହ ଉପାସନା ତଥା ସଙ୍କର୍ଷଣ ବା ବାସୁଦେବ ଉପାସନା ବହୁପ୍ରସାରିତ ହୋଇଥିଲା । (୩୨) ସାତ୍ତ୍ୱତବଂଶର ଦାୟାଦଗଣ ମଧ୍ୟ ଦକ୍ଷିଣ ଭାରତରେ ରାଜତ୍ୱସ୍ଥାପନ କରି (୩୩) ସମଗ୍ର ଦକ୍ଷିଣ ଭାରତରେ ସାତ୍ତ୍ୱତଧର୍ମ ପ୍ରଚାର କରିବା ପାଇଁ ପ୍ରବଳ ଉଦ୍ୟମ କରିଥିଲେ । ଦକ୍ଷିଣ ଭାରତର ତାମିଲ ପ୍ରଦେଶରେ ଆଲୱାର ନାମକ ଏକ ପ୍ରଭାବଶାଳୀ ସମ୍ପ୍ରଦାୟ ସେକାଳରେ ବସବାସ କରୁଥିଲେ । ସେମାନଙ୍କର ଆଧ୍ୟାତ୍ମିକ ଜୀବନ ଅତି

ଉଚ୍ଚକୋଟୀର ଥିଲା । ଦକ୍ଷିଣ ଭାରତରେ କ୍ଷତ୍ରିୟକୃଷ୍ଣ ବାସୁଦେବ କୈନ୍ଦ୍ରିକ ଓ ଭକ୍ତି ନିର୍ଦ୍ଧିତ ବୈଷ୍ଣବଧର୍ମ ବା ଧାର୍ମିକ ଧର୍ମର ପ୍ରସାର ପାଇଁ ସାତ୍ୱତ ବଂଶୀ କ୍ଷତ୍ରିୟମାନଙ୍କ ସେମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ କରିବାକୁ ପଡ଼ିଥିଲା । ପାରସ୍ପରିକ ମତସମନ୍ୱୟର ପରିଣତିରୂପେ ତାମିଲ ଦେବତା ପାଞ୍ଚରାତ୍ରଧର୍ମରେ ଗୃହୀତ ହୋଇ ଏବଂ କୃଷ୍ଣବାସୁଦେବଙ୍କ ସହିତ ତାଙ୍କର ତାଦାତ୍ମ୍ୟ ଘଟିଥିଲା । ଏହା ବୈଷ୍ଣବଧର୍ମରେ ଏକ ନୂତନ ଦିଗସୃଷ୍ଟି କରିଥିଲା । ଆଲୱାର ସମ୍ପ୍ରଦାୟର ସାଧନାମାର୍ଗ ମଧ୍ୟ ପାଞ୍ଚରାତ୍ରଧର୍ମର ସାଧନାମାର୍ଗ ସହିତ ମିଶ୍ରିତ ହୋଇ ଏକ ନୂତନ ସାଧନାମାର୍ଗର ଉଦ୍ଭବ ହୋଇଥିଲା । ଏଠାରେ ପ୍ରାସଙ୍ଗିକ ଭାବେ ତାମିଲ ଦେଶବାସୀ ଆଲୱାର-ସମ୍ପ୍ରଦାୟ ଓ ତାହାର ଧର୍ମ ପରମ୍ପରା ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦେବା ସମୀଚୀନ ମନେହୁଏ ।

## ଆଲୱାର ସମ୍ପ୍ରଦାୟ ଓ ତାହାର ଧର୍ମ

ଡକ୍ଟର ମଲ୍ଲିକ ମହମ୍ମଦ ତାଙ୍କର "ଅଲୱାର ଭକ୍ତୋଁକା ତାମିଲ ପ୍ରବନ୍ଧମ୍ ଔର୍ ହିନ୍ଦୀକୃଷ୍ଣ କାବ୍ୟ" ଗ୍ରନ୍ଥରେ ଆଲୱାର୍‌ମାନେ ଜାତିରେ ଆୟର୍ ଥିବା ଉଲ୍ଲେଖ କରିଛନ୍ତି । (ପୃ ୨୦) 'ଅୟର' ଶବ୍ଦ ସଂସ୍କୃତ 'ଆଭୀର' ଶବ୍ଦର ଅପଭ୍ରଂଶରୂପ । ପ୍ରାଚୀନ ଭାରତରେ ଯେଉଁ ଏକ ପ୍ରକାର ଯାଯାବର ଶ୍ରେଣୀୟ ଗୋପାଳକ ଜାତି ଥିଲେ, ସେମାନଙ୍କୁ ଆଭୀର କୁହାଯାଉଥିଲା । ହରିବଂଶ ପୁରାଣାନୁଯାୟୀ ସେମାନେ ମଥୁରା ନିକଟବର୍ତ୍ତୀ ସ୍ଥାନରେ ବାସ କରୁଥିଲେ । କ୍ରମେ ସେମାନେ ଯାଯାବର ବୃତ୍ତି ତ୍ୟାଗକରି ସ୍ଥାୟୀ ବସତି ସ୍ଥାପନ କରି ରହିଥିଲେ (ପଦ ୫୧୬୧ ୬୩) । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ସେମାନଙ୍କର ସ୍ଥିତି ଓ ପ୍ରଭାବ ସୁସ୍ପଷ୍ଟ ହୋଇଯାଇଥିଲା । ଦକ୍ଷିଣ ଭାରତର ତାମିଲ ଦେଶରେ ଦେଖାଯାଉଥିବା ଆଲୱାର୍ ସଂପ୍ରଦାୟକୁ ଏହି ଆଭୀର ଜାତିର ଏକ ସ୍ରୋତରୂପେ ଅନୁମାନ କରାଯାଇପାରେ । ସେମାନେ ଆଭୀର ଧର୍ମ ଓ ସଂସ୍କୃତିର ବାହକ ତଥା ପ୍ରଚାରକ ଥିଲେ । 'ତୋଲକାପ୍‌ପିୟମ୍' ନାମକ ଏକ ତାମିଲ ରଚନାରେ ଆଲୱାର୍ ସଂପ୍ରଦାୟର ଧର୍ମ ପରମ୍ପରା ସମ୍ପର୍କରେ ଆଲୋକପାତ କରାଯାଇଛି । ଏଥିରେ କୁହାଯାଇଛି— "ତାମିଲ୍ ପ୍ରଦେଶ ପାଞ୍ଚଟି ଭୂଭାଗରେ

ବିଶିଷ୍ଟ ଏବଂ ପ୍ରତ୍ୟେକ ଭୂଭାଗର ଜଣେ ଜଣେ ଅଧିଦେବତା ଅଛନ୍ତି । ସେମାନଙ୍କ ମଧ୍ୟରୁ ମାୟୋନ୍ ବା ତିରୁମାଲ୍‌ଙ୍କ ସ୍ଥାନ ସମସ୍ତ ଅଧିଦେବତାଙ୍କ ଉପରେ । ମାୟୋନ୍ ହେଉଛନ୍ତି ମୂଲ୍ଲୈ ପ୍ରଦେଶ (ବନଭୂମି)ର ଅଧିଦେବତା ଏବଂ ଆୟର୍ ହେଉଛନ୍ତି ଏହି ବନଭୂମିର ବାସିନ୍ଦା । ଆୟର୍‌ମାନଙ୍କ ମତରେ ତାଙ୍କର ଇଷ୍ଟଦେବତା ମାୟୋନଙ୍କର ଲାଳନପାଳନ ଆୟର କୁଳରେ ହୋଇଥିଲା । ଆୟର୍‌ମାନେ ମାୟୋନ୍‌ଙ୍କର ବାଲ୍ୟଲୀଳା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାଆନ୍ତି । ଆୟର୍‌ଜାତିର ରମଣୀମାନେ ମାୟୋନ୍‌ଙ୍କୁ ସ୍ୱାମୀରୂପେ ପ୍ରୀତିଦାନ କରିଥାଆନ୍ତି ।"

ଆଲଓ୍ୱାର୍ ସଂପ୍ରଦାୟ (ଆୟର ଜାତି)ର ସଙ୍ଗମ କବିମାନଙ୍କ ବର୍ଣ୍ଣନାରେ ମାୟୋନ୍ ମୁଖ୍ୟସ୍ଥାନ ଅଧିକାର କରିଛନ୍ତି । ଏ ସମ୍ପର୍କରେ ଯେଉଁ ବର୍ଣ୍ଣନା ଦୃଷ୍ଟିଗୋଚର ହୁଏ, ତାହାର ସାରାଂଶ ହେଉଛି— "ମାୟୋନ୍ ହେଉଛନ୍ତି ଗୋପାଳମାନଙ୍କର ମୁଖ୍ୟ । ଗୋଚାରଣ, ପୀତବସନ ପରିଧାନ ଓ ମୟୂର ପୁଚ୍ଛଧାରଣ, ସୁଲଳିତ ସ୍ୱରରେ ବଂଶୀବାଦନ ଦ୍ୱାରା ଆୟର୍ ରମଣୀଙ୍କୁ ମିଳିତ ନୃତ୍ୟ କରିବା ପାଇଁ ଆହ୍ୱାନ ଓ ସେମାନଙ୍କ ସହିତ ମଧୁର ନୃତ୍ୟ କରିବା ତାଙ୍କର ପ୍ରିୟ ଅଭ୍ୟାସ । କୁରବଇକୁତ୍ତୁ ନାମକ ନୃତ୍ୟ (ଏକ ପ୍ରକାର ମିଳିତ ନୃତ୍ୟ)ରେ ମାୟୋନ୍ ନାପ୍‌ପିନାଇଙ୍କ ସହିତ ମିଶି ନୃତ୍ୟୋନ୍ମତ୍ତ ହୁଅନ୍ତି ।" (Indian Culture, Vol-IV P' 268-269 — V. R. R. Dikhitar) ଆଲଓ୍ୱାର୍‌ମାନଙ୍କ ଅସଂଖ୍ୟ ଭକ୍ତି ସଙ୍ଗୀତ ମଧ୍ୟରୁ ନାୟିକବି ଆଣ୍ଡାଲ୍‌ଙ୍କର କେତୋଟି କବିତାରେ ମାୟୋନ୍ ଓ ନାପ୍‌ପିନାଇଙ୍କର ମଧୁର ପ୍ରେମଚିତ୍ର ଦେଖିବାକୁ ମିଳିଥାଏ । ଏଥିରେ ନାପ୍‌ପିନାଇଙ୍କୁ ଉତ୍ତମବେଶା ଓ ନନ୍ଦଗୋପାଳଙ୍କ କନ୍ୟା କୁହାଯାଇଛି । ଟିପ୍‌ପଣୀକାର ଜେ. ଏସ୍, ଏମ୍ ହପ୍‌ପର ଟିପ୍‌ପଣୀରେ ନନ୍ଦଗୋପାଳ କନ୍ୟାଙ୍କୁ ନନ୍ଦଗୋପାଳ ବଧୂ ଅର୍ଥରେ ଗ୍ରହଣ କରିବା ପାଇଁ ମତ ଦାନ କରିଛନ୍ତି । (୩୩)

ଶ୍ରୀମଦ୍ଭାଗବତ ଗ୍ରନ୍ଥର ଦଶମ ସ୍କନ୍ଧରେ ଗୋପାଳକୃଷ୍ଣଙ୍କର ଯେଉଁ ମଧୁର ପ୍ରେମଲୀଳା ପରିବେଷଣ କରାଯାଇଛି, ତାହାକୁ ଉପରୋକ୍ତ ମାୟୋନ୍‌ଙ୍କର ପ୍ରେମଲୀଳାର ରୂପାନ୍ତର ରୂପେ ଗ୍ରହଣ କରିବାରେ

ଅବାନ୍ତରତା ନାହିଁ । ବିଶେଷ ଭାବରେ ଗୋପାଳକୃଷ୍ଣଙ୍କର ବୟସ, ବେଶ ଓ ଭୂଷା ସହିତ ମାୟୋନ୍‌ଙ୍କର ସମ୍ପୂର୍ଣ୍ଣ ସାମ୍ୟ ରହିଛି । ମହାଭାରତ ଗ୍ରନ୍ଥର କୌଣସି ଗୋଟିଏ ଶବ୍ଦରେ ମଧ୍ୟ କୃଷ୍ଣବାସୁଦେବଙ୍କଠାରେ ଗୋପାଳତ୍ୱର ଆଭାସ ମିଳିନଥାଏ ବା ମହାଭାରତ ଭଳି ଏକ ବିରାଟ ଗ୍ରନ୍ଥର କୌଣସି ସ୍ଥଳରେ କୃଷ୍ଣ ଗୋପପୁରରେ ବାଲ୍ୟକାଳ ଅତିବାହିତ କରିବା, ଗୋଚାରଣ କରିବା ଓ ଗୋପରମଣୀଙ୍କ ସହ ପ୍ରେମଲୀଳା କରିବାର ବର୍ଣ୍ଣନା ନାହିଁ ।' ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ କୃଷ୍ଣ ପ୍ରଥମେ କେବଳ ସାତ୍ୱତବଂଶୀ ଜାତ କ୍ଷତ୍ରିୟ ରୂପେ ବର୍ଣ୍ଣିତ ହେଉଥିଲେ ଓ ପରବର୍ତ୍ତୀ କାଳରେ ତାଙ୍କଠାରେ ଗୋପାଳତ୍ୱର ଆରୋପ କରାଯାଇଛି । ସମ୍ଭବତଃ ସାତ୍ୱତଧର୍ମ ସହିତ ଆଲୱାର ଧର୍ମର ସମ୍ମିଶ୍ରଣ ଘଟିଲାବେଳେ ସାତ୍ୱତବଂଶୀ କ୍ଷତ୍ରିୟ କୃଷ୍ଣଙ୍କଠାରେ ଗୋପାଳ ରୂପର ଆରୋପ କରାଯାଇଛି ଏବଂ ଏହି ମିଶ୍ରଣ ପ୍ରକ୍ରିୟାକୁ ପୌରାଣିକ ରୂପ ଦେଇ ହିନ୍ଦୁ ଜନତାର ଗ୍ରାହ୍ୟ କରାଇବା ପାଇଁ ଶ୍ରୀମଦ୍ଭାଗବତ ଗ୍ରନ୍ଥ ରଚନା କରାଯାଇଅଛି । ମହାଭାରତ ଗ୍ରନ୍ଥ ଓ ଶ୍ରୀମଦ୍ଭାଗବତ ଗ୍ରନ୍ଥ ମଧ୍ୟରେ ଥିବା ପାର୍ଥକ୍ୟ ହେଉଛି ମହାଭାରତ ଗ୍ରନ୍ଥରେ କୃଷ୍ଣ ବାସୁଦେବଙ୍କର ଅବତାର ଓ କ୍ଷତ୍ରିୟ । ଐକାନ୍ତିକ ଭକ୍ତିମାର୍ଗର ଉତ୍କୃଷ୍ଟତା ମହାଭାରତ ଗ୍ରନ୍ଥରେ ପ୍ରତିପାଦ୍ୟ । ଶ୍ରୀମଦ୍ଭାଗବତ ଗୀତାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଏହାହିଁ ଶିକ୍ଷା ଦେଇଛନ୍ତି । ଶ୍ରୀମଦ୍ଭାଗବତ ଗ୍ରନ୍ଥର ଦଶମସ୍କନ୍ଧରେ କୃଷ୍ଣଙ୍କର ଦୁଇଟି ରୂପ ଅର୍ଥାତ୍ ଗୋପାଳରୂପ (ଦଶମସ୍କନ୍ଧର ଗୋପଲୀଳା) ଓ କ୍ଷତ୍ରିୟ ରୂପ (ଦଶମ ସ୍କନ୍ଧର ଦ୍ୱାରକା ଲୀଳା) ଚିତ୍ରିତ ହୋଇଛି । ସେହିଭଳି ସାତ୍ୱତଧର୍ମର ଐକାନ୍ତିକ ଭକ୍ତିମାର୍ଗ (ବିଶେଷ ଭାବରେ ତୃତୀୟ ସ୍କନ୍ଧ ଓ ଏକାଦଶ ସ୍କନ୍ଧରେ) ଓ ଆଲୱାର ଧର୍ମର ପ୍ରେମମାର୍ଗ (ଦଶମସ୍କନ୍ଧ ଗୋପଲୀଳା) ଶ୍ରୀମଦ୍ଭାଗବତ ଗ୍ରନ୍ଥରେ ପ୍ରତିପାଦ୍ୟ ।

ସୁତରାଂ ଏହି ଭଳି ଏକ ପରିବେଶରେ ସାତ୍ୱତଧର୍ମରେ ଗୋପାଳକୃଷ୍ଣ ଉପାସନା ଓ ପ୍ରେମଭକ୍ତିମାର୍ଗର ଅଭ୍ୟୁଦୟ ଘଟିଥିଲା । ପ୍ରମୁଖ ସମାଲୋଚକ ଆର୍‌. ଜି. ଭଣ୍ଡାରକର, ଡକ୍ଟର ମହେନ୍ଦ୍ର ମଲ୍ଲିକ୍ ଏବଂ ପଶୁରାମ ଚତୁର୍ବେଦୀ ଆଦି ଏହି ଅନୁମାନର ଦୃଢ଼ ସମର୍ଥକ ଅଟନ୍ତି ।

ଏହି ଗୋପାଳକୃଷ୍ଣ ଉପାସନାର ଅଭ୍ୟୁଦୟ କେବେ ଘଟିଲା, ତାହା ନିର୍ଣ୍ଣୟ କରିବା କଷ୍ଟକର ହେଲେ ହେଁ ଐତିହାସିକ ପ୍ରମାଣ ଅବଲମ୍ବନରେ ଏହାକୁ ଖ୍ରୀଷ୍ଟପର ଶତାବ୍ଦୀରେ ଅବସ୍ଥାପିତ କରାଯାଇପାରେ । ଆଲ୍ହାବାଦ ନିକଟବର୍ତ୍ତୀ ଏକ ଗୁମ୍ଫାରେ ସମ୍ଭବତଃ ସପ୍ତମ\ଅଷ୍ଟମ ଶତାବ୍ଦୀରେ ଖୋଦିତ ଏକ ଶିଳାଲେଖରେ ଶ୍ରୀକୃଷ୍ଣଗୋପୀଙ୍କ ପ୍ରତିମା ନିର୍ମାଣର ଉଲ୍ଲେଖ (୩୪) ଏବଂ ଯୋଧପୁର ନିକଟବର୍ତ୍ତୀ ମନ୍ଦୋରର ଏକ ସ୍ତମ୍ଭରେ ଉତ୍କୀର୍ଣ୍ଣ ଶିଳ୍ପ ଶିଶୁକୃଷ୍ଣଙ୍କର ଶକଟଭଞ୍ଜନ ଲୀଳା, ଗୋବର୍ଦ୍ଧନ ଲୀଳା ଦେଖିବାକୁ ମିଳି-ଥାଏ । ରାମକୃଷ୍ଣ ଗୋପାଳ ଭଣ୍ଡାରକର ଏହାର ସମୟକୁ ଖ୍ରୀଷ୍ଟୀୟ ପଞ୍ଚମ ଶତକ ବୋଲି ଅନୁମାନ କରିଛନ୍ତି । (୩୫) ଏହି ଦୁଇଟି ଐତିହାସିକ ତଥା ପ୍ରାମାଣିକ ଉପାଦାନକୁ ଭିତ୍ତି କରି ଗୋପାଳକୃଷ୍ଣ ଉପାସନାର ଅଭ୍ୟୁଦୟକାଳ ସମ୍ପର୍କରେ ଏପରି ମତ ପ୍ରଦାନ କରିଛନ୍ତି । ସେଥିପାଇଁ କେତେକ ଶ୍ରୀମଦ୍ଭାଗ-ବତ ଗ୍ରନ୍ଥର ରଚନା କାଳକୁ ଖ୍ରୀଷ୍ଟ ପରବର୍ତ୍ତୀ ଶତାବ୍ଦୀରେ ଚିହ୍ନିତ କରିଛନ୍ତି । ଏହି ଗୋପାଳକୃଷ୍ଣ ଉପାସନା ଫଳରେ ଶ୍ରୀରାଧା, ଗୋପାଙ୍ଗନା ଓ ମଥୁରା ବ୍ରଜମଣ୍ଡଳର ବୃନ୍ଦାବନ ଆଦିର ଗୁରୁତ୍ୱ ବୃଦ୍ଧି ପ୍ରାପ୍ତ ହୋଇଥିଲା ।

ସାତ୍ୱତ ଧର୍ମର ଆରାଧ୍ୟ ଦେବତା ବାସୁଦେବ କୃଷ୍ଣଙ୍କର ଶକ୍ତି-ଲକ୍ଷ୍ମୀ ବା ରୁକ୍ମିଣୀଙ୍କର ପ୍ରଭାବକୁ ଅପସାରଣ କରି କ୍ରମେ ଗୋପାଳକୃଷ୍ଣଙ୍କର ଶକ୍ତି ଶ୍ରୀରାଧା ଓ ଗୋପାଙ୍ଗନାଙ୍କର ପ୍ରଭାବ ପ୍ରକଟିତ ହୋଇଥିଲା । ତେଣୁ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଶ୍ରୀରାଧା ହେଉଛନ୍ତି ଆଲୱାରଙ୍କ ଗ୍ରନ୍ଥରେ ବର୍ଣ୍ଣିତ ନାପ୍ପିନାଇଙ୍କର ରୂପାନ୍ତର ମାତ୍ର । ସେହିଭଳି ଆଭୀରମାନଙ୍କର ମୂଳବାସ ସ୍ଥାନ ବନାଞ୍ଚଳ ବୃନ୍ଦାବନ ଗୋପାଳକୃଷ୍ଣଙ୍କର ଧାମରୂପେ ବୈଷ୍ଣବଗ୍ରନ୍ଥ ମାନଙ୍କରେ ଗୁରୁତ୍ୱସ୍ଥାନ ଅଧିକାର କରିଥିଲା । ପ୍ରାୟ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ଗୋପାଳକୃଷ୍ଣ ଉପାସନାର ଗୁରୁତ୍ୱ କ୍ରମଶଃ ବୃଦ୍ଧି ପାଇଥିଲା ଏବଂ ଷୋଡଶ ଶତାବ୍ଦୀ ବେଳକୁ ଏହା ପୂର୍ଣ୍ଣ ବିକଶିତ ହୋଇଥିଲା । ଏହା ଆଉ କୃଷ୍ଣବାସୁଦେବ କୈନ୍ଦ୍ରିକ ନ ହୋଇ ଗୋପାଳକୃଷ୍ଣ କୈନ୍ଦ୍ରିକ ବୈଷ୍ଣବ ଧର୍ମରେ ରୂପାନ୍ତରିତ ହେଲା । ଏହାକୁ ଅନେକ ନବ୍ୟ ବୈଷ୍ଣବଧର୍ମ ଆଖ୍ୟା ଦେଇଥାଆନ୍ତି ।

ଗୋପାଳ ପୂଜା କେନ୍ଦ୍ରିକ ବୈଷ୍ଣବଧର୍ମରେ ଭକ୍ତି ଓ ପ୍ରେମ ଉଭୟର ଗୁରୁତ୍ୱ ଥିଲେ ମଧ୍ୟ ପ୍ରେମର ଗୁରୁତ୍ୱ ଅଧିକ ଉପଲବ୍ଧ ହୋଇଥାଏ । ପ୍ରେମ ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ କାମ ସହିତ ସମ୍ବନ୍ଧିତ ନିଶ୍ଚୟ । ତେଣୁ କିଶୋର ଗୋପାଳକୃଷ୍ଣଙ୍କୁ 'କ୍ଲୀଂ' ବୀଜମନ୍ତ୍ର ରୂପେ ଚିହ୍ନିତ କରାଯାଇଛି । ଗୋପାଳ ପୂଜା ଉପାସନାର ଗୁରୁତ୍ୱ କ୍ରମେ ବୃଦ୍ଧି ପାଇବା ଫଳରେ ତାଙ୍କୁ କେନ୍ଦ୍ର କରି ଅନେକ ପାଞ୍ଚରାତ୍ର ସଂହିତା ରଚିତ ହୋଇଥିଲା । 'ବ୍ରହ୍ମସଂହିତା' ନାମକ ପାଞ୍ଚରାତ୍ର ସଂହିତାରେ କାମିନୀ ପରିବେଷ୍ଟିତ ଗୋକୁଳବାସୀ ଗୋପାଳକୃଷ୍ଣ ବା ଗୋବିନ୍ଦଙ୍କୁ ଈଶ୍ୱର ପରମବ୍ରହ୍ମ, ଅନାଦି ଆଦିପୁରୁଷ ଆଦି ରୂପେ ବାରମ୍ବାର ସମ୍ବୋଧନ କରାଯାଇଛି । ଏଥିରେ କୃଷ୍ଣଙ୍କୁ ଦ୍ୱିଭୁଜ ବିଶିଷ୍ଟ ମୁରଳୀଧାରୀ ମୟୂରଚନ୍ଦ୍ରିକା ଶୋଭିତ ଓ ବନମାଳା ବିଲମ୍ବିତ କିଶୋର ରୂପେ ଚିତ୍ରଣ କରାଯାଇଅଛି । ଏହାର ପରବର୍ତ୍ତୀ କାଳରେ ଗୋପାଳକୃଷ୍ଣଙ୍କର ମହତ୍ତ୍ୱ ପ୍ରତିପାଦକ ଗୋପାଳ-ତାପିନୀ, ପୁରୁଷୋତ୍ତମ ତାପିନୀ, ରାଧାତାପିନୀ ପ୍ରଭୃତି ଗ୍ରନ୍ଥମାନ ରଚିତ ହୋଇ ଗୋପାଳକୃଷ୍ଣ ଉପାସନାର ପ୍ରସାର ଘଟାଇଥିଲା ।

## ରାଧାକୃଷ୍ଣ ଯୁଗଳମୂର୍ତ୍ତି ଉପାସନା

ପାଞ୍ଚରାତ୍ର ଧର୍ମର ମୁଖ୍ୟଦେବତା ବାସୁଦେବଙ୍କର ଶକ୍ତି ରୂପେ ମହାଲକ୍ଷ୍ମୀ ସହିତ କୃଷ୍ଣଙ୍କର ଶକ୍ତି ରୂପେ ରୁକ୍ମିଣୀ ଓ ଆଲୱାରମାନଙ୍କର ପ୍ରଭାବରେ ଗୋପାଳକୃଷ୍ଣଙ୍କର ଶକ୍ତିରୂପେ ଶ୍ରୀରାଧାଙ୍କର ଆବିର୍ଭାବ ଘଟିଥିଲା । ଶ୍ରୀମଦ୍ଭାଗବତ, ହରିବଂଶ, ବିଷ୍ଣୁପୁରାଣ, ମହାଭାରତ ପ୍ରଭୃତି ଗ୍ରନ୍ଥରେ ଶ୍ରୀରାଧାଙ୍କର ନାମୋଲ୍ଲେଖ ନଥିବାରୁ ସେ କୌଣସି ବୈଦିକ ଦେବୀ ପର୍ଯ୍ୟାୟଭୁକ୍ତା ନଥିଲେ ବୋଲି ନିଃସନ୍ଦେହରେ କୁହାଯାଇପାରେ । କିନ୍ତୁ 'ରାଧା' ଏକ ବୈଦିକ ଶବ୍ଦ । ବେଦରେ ଏହା ଧନସମ୍ପଦ ଅର୍ଥରେ ବ୍ୟବହୃତ ଏବଂ ଇନ୍ଦ୍ର ରାଧାପତି ରୂପେ ସମ୍ବୋଧିତ ହୋଇଛନ୍ତି । ବେଦର କୌଣସି ସ୍ଥଳରେ ସେ କୃଷ୍ଣଶକ୍ତି ବା ପ୍ରକୃତି ଅର୍ଥରେ ପ୍ରଯୁକ୍ତ ହୋଇନାହିଁ । କିନ୍ତୁ ବେଦ ଓ ବୈଦିକ ଶବ୍ଦ ପ୍ରତି ଆଲୱାରମାନଙ୍କର ଅଖଣ୍ଡ ବିଶ୍ୱାସ ଥିବାରୁ ଆଲୱାର ଧର୍ମର ମୁଖ୍ୟଦେବତା ମାୟୋନ୍‌ଙ୍କର ହୃଦୟହାରିଣୀ ପ୍ରେମିକା ନାପ୍ପିନାଇ ଶ୍ରୀରାଧା ରୂପେ ରୂପାନ୍ତରିତ ହୋଇ

ଗୋପାଳକୃଷ୍ଣଙ୍କର ଶକ୍ତି ରୂପେ ଆସନ ଗ୍ରହଣ କରିବାରେ ଭାରତର ଧାର୍ମିକ ଜନତାଙ୍କ ମନରେ କୌଣସି ଅବିଶ୍ୱାସ ସୃଷ୍ଟି ହୋଇନଥିଲା ।

ପ୍ରଥମ ପର୍ଯ୍ୟାୟରେ ଶ୍ରୀରାଧା ଗୋପାଳକୃଷ୍ଣଙ୍କର ଶକ୍ତି ରୂପେ ଚର୍ଚ୍ଚିତା ନହୋଇ ହୃଦୟହାରିଣୀ ପ୍ରେମିକା ରୂପେ ଚର୍ଚ୍ଚିତ ହୋଇଥିବାର ଦେଖାଯାଏ । ଏ କ୍ଷେତ୍ରରେ ତନ୍ତ୍ର ପ୍ରଭାବିତ ବୌଦ୍ଧଧର୍ମର ବାମାଚାରୀ ସାଧନାର ପ୍ରତ୍ୟକ୍ଷ ପ୍ରଭାବକୁ ଲକ୍ଷ୍ୟ କରାଯାଇଥାଏ । ପ୍ରଥମ ଶତାବ୍ଦୀରେ ରଚିତ ହାଳଙ୍କର 'ଗାଥା ସପ୍ତଶତୀ'ଠାରୁ ଆରମ୍ଭ କରି ଦ୍ୱାଦଶ ଶତାବ୍ଦୀରେ ଆବିର୍ଭୂତ ନିମ୍ବାର୍କାଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ବିଭିନ୍ନ ସାହିତ୍ୟରେ ସେଥିପାଇଁ ରାଧା ପ୍ରେମିକା ରୂପେ କେବଳ ଦେଖିବାକୁ ମିଳିଥାନ୍ତି । ସର୍ବପ୍ରଥମେ ନିମ୍ବାର୍କାଚାର୍ଯ୍ୟ ତାଙ୍କର ଦଶଶ୍ଳୋକୀରେ କୃଷ୍ଣଙ୍କର ବାମ ଭାଗରେ ବିରାଜିତା, ସର୍ବାଭୀଷ୍ଟପ୍ରଦା କୃଷ୍ଣଶକ୍ତି ରୂପେ ଶ୍ରୀରାଧାଙ୍କୁ ମର୍ଯ୍ୟାଦା ପ୍ରଦାନ କରିଥିବା ଜଣାଯାଏ । ଠିକ୍ ସେହି ଶତାବ୍ଦୀରେ ଓଡ଼ିଶାର ପ୍ରଖ୍ୟାତ ବୈଷ୍ଣବ କବି ଜୟଦେବ ତାଙ୍କର ଶ୍ରୀଗୀତଗୋବିନ୍ଦରେ ରାଧାମାଧବଙ୍କର ଜୟଗାନ କରି ରସସିକ୍ତ ରାଧାକୃଷ୍ଣଲୀଳା ପରିବେଷଣ କରିଛନ୍ତି । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ଗୋପାଳକୃଷ୍ଣ କୈନ୍ଦ୍ରିକ ବୈଷ୍ଣବ ଧର୍ମରେ ଶ୍ରୀରାଧାଙ୍କର ଗୁରୁତ୍ୱ ଅଧିକ ପ୍ରକଟିତ ହୋଇଥିଲା । ଏହି ସମୟ ସୀମା ମଧ୍ୟରେ ବୈଷ୍ଣବ ଧର୍ମର ବିଭିନ୍ନ ଆଚାର୍ଯ୍ୟଗଣ ତଥା ରାୟ ରାମାନନ୍ଦ ଓ ଶ୍ରୀଚୈତନ୍ୟ ସହଜିଆ ବୌଦ୍ଧଧର୍ମ ପ୍ରଭାବିତ ପରକୀୟା ପ୍ରେମଜନିତ ଘୃଣ୍ୟ ଯୌନଯୋଗ ମିଶ୍ରିତ ବୈଷ୍ଣବ ଧର୍ମ ମଧ୍ୟରୁ ପ୍ରେମିକା ଶ୍ରୀରାଧାଙ୍କୁ ଉଦ୍ଧାର କରି ତାଙ୍କୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରିବା ନିମନ୍ତେ ପ୍ରଗାଢ ଉଦ୍ୟମ କରିଥିଲେ । ଏଥିପାଇଁ ସେମାନଙ୍କୁ ବିଭିନ୍ନ ଭାରତୀୟ ଧର୍ମ ଦର୍ଶନ ଗ୍ରନ୍ଥ ମଧ୍ୟରୁ ପ୍ରାମାଣିକ ଉଦ୍ଧୃତି ଗ୍ରହଣ କରି ଶ୍ରୀରାଧାଙ୍କୁ କୃଷ୍ଣଶକ୍ତି ରୂପରେ ଶ୍ରେଷ୍ଠସ୍ଥାନ ପ୍ରଦାନ କରିବା ନିମନ୍ତେ ବହୁ ପ୍ରୟତ୍ନ କରିଥିଲେ । ଫଳରେ ଶ୍ରୀରାଧା ପ୍ରେମମୂଳକ କବିତା ଜଗତରୁ ତତ୍ତ୍ୱମୂଳକ ଶାସ୍ତ୍ର ମଧ୍ୟକୁ ଅବତରଣ କରିଥିଲେ ଓ ରାଧାକୃଷ୍ଣ ଯୁଗଳ ଉପାସନାର ପ୍ରଚଳନ ପ୍ରସାର ହେବାକୁ ଲାଗିଲା । ରାଧାମୂର୍ତ୍ତି ନିର୍ମାଣ, କୃଷ୍ଣ ମୂର୍ତ୍ତି ସହିତ ରାଧାମୂର୍ତ୍ତିଙ୍କର ବିବାହ ଏବଂ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଉପାସନା ପ୍ରଥମେ ଓଡ଼ିଶାରୁ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପ୍ରଥମ ଦଶକରୁ ହୋଇଥିଲା । ଏ କ୍ଷେତ୍ରରେ

ବାଲେଶ୍ୱରର ରସିକାନନ୍ଦ ଗୋସ୍ୱାମୀଙ୍କର ଉଦ୍ୟମ ଉଲ୍ଲେଖଯୋଗ୍ୟ । ଅନୁରୂପ ଭାବେ ରାଧାମୂର୍ତ୍ତି ଉପାସନାର ଶାସ୍ତ୍ରୀୟତା ପ୍ରତିଷ୍ଠା କରିବା ଦିଗରେ ଓଡ଼ିଶାର ଯୋଗଜନ୍ମା ବୈଷ୍ଣବ ପଣ୍ଡିତ ବଳଦେବ ବିଦ୍ୟାଭୂଷଣଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ପ୍ରଚେଷ୍ଟା ଯୋଗୁଁ ସବୁ ଧାରଣାପୂ ସ୍ଥଳରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ପୂଜା ପ୍ରତିଷ୍ଠିତ ହୋଇଥିଲା । ସର୍ବୋପରି ଏହି ଧର୍ମର ପ୍ରାମାଣିକ ଗ୍ରନ୍ଥ ଶ୍ରୀମଦ୍ଭାଗବତ ମହାପୁରାଣ ଗ୍ରନ୍ଥ ରଚନା ହେବାଦ୍ୱାରା ବୈଷ୍ଣବ ଧର୍ମର ବନ୍ୟା ସମଗ୍ର ଭାରତ ଭୂମିକୁ ପରିପ୍ଲାବିତ କରିଥିଲା । ବୈଷ୍ଣବ ଧର୍ମର ସ୍ରୋତ ଉତ୍ତର ଭାରତରୁ ଦକ୍ଷିଣ ଭାରତ ଆଡ଼କୁ ପ୍ରବାହିତ ହୋଇଥିଲେ ହେଁ ଦକ୍ଷିଣ ଭାରତରେ ଏହି ସ୍ରୋତ ବହୁ ପ୍ରସାରିତ ଓ ଶାଖା ପ୍ରଶାଖାଯୁକ୍ତ ହୋଇ ବିପୁଳାୟିତ ରୂପ ଧାରଣ କରିଥିଲା । ଏହାର ପରିଣତ ସ୍ୱରୂପ ଭାରତରେ କେତେକ ବୈଷ୍ଣବ ସମ୍ପ୍ରଦାୟର ଆବିର୍ଭାବ ଘଟିଥିଲା । ସେଗୁଡ଼ିକ ହେଉଛି ଦକ୍ଷିଣ ଭାରତର ରାମାନୁଜ ସଂପ୍ରଦାୟ, ମାଧ୍ୱ ଓ ନିମ୍ବାର୍କ ସମ୍ପ୍ରଦାୟ ଓ ଉତ୍ତର ଭାରତର ବଲ୍ଲଭ ସମ୍ପ୍ରଦାୟ ଏବଂ ପୂର୍ବ ଭାରତର ଶ୍ରୀଚୈତନ୍ୟ ସମ୍ପ୍ରଦାୟ । ଏହି ସମ୍ପ୍ରଦାୟମାନଙ୍କ ମଧ୍ୟରେ ରାମାନୁଜ ସମ୍ପ୍ରଦାୟ 'ଶ୍ରୀ' ସମ୍ପ୍ରଦାୟ ଭାବେ, ମାଧ୍ୱ ସମ୍ପ୍ରଦାୟ 'ବ୍ରହ୍ମ' ସମ୍ପ୍ରଦାୟ ଭାବେ, ବଲ୍ଲଭ ସମ୍ପ୍ରଦାୟ 'ରୁଦ୍ର' ସମ୍ପ୍ରଦାୟ ଭାବେ ଓ ନିମ୍ବାର୍କ ସମ୍ପ୍ରଦାୟ 'ସନକ' ସମ୍ପ୍ରଦାୟ ଭାବେ ପରିଚିତ ଥିଲେ । ବୈଷ୍ଣବ ଧର୍ମ କ୍ଷେତ୍ରରେ ଏହି ଚତୁଃ ବୈଷ୍ଣବ ସମ୍ପ୍ରଦାୟଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହାଛଡ଼ା ପୂର୍ବ ଭାରତର ଶ୍ରୀ ଚୈତନ୍ୟ ସମ୍ପ୍ରଦାୟ ମଧ୍ୟ ବୈଷ୍ଣବ ଧର୍ମର ଅଭ୍ୟୁଦୟକାଳରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ବୈଷ୍ଣବ ଧର୍ମର ଏହିସବୁ ସମ୍ପ୍ରଦାୟ ଭାରତୀୟ ଧର୍ମଦର୍ଶନକୁ ଆତ୍ମସ୍ଥ କରି ନିଜର ଦାର୍ଶନିକ ମୂଳକ ଗ୍ରନ୍ଥମାନ ପ୍ରଣୟନ କରିଥିଲେ । ଏହି ସମସ୍ତ ବୈଷ୍ଣବ ଆଚାର୍ଯ୍ୟ ସ୍ୱଧର୍ମ ଦର୍ଶନକୁ ଭିନ୍ନ ଭିନ୍ନ ପ୍ରକାରରେ ଉପସ୍ଥାପିତ କରିଥିଲେ ହେଁ ସମସ୍ତ ସମ୍ପ୍ରଦାୟର ଧର୍ମଦର୍ଶନଗୁଡ଼ିକ ଭାରତୀୟ ଦର୍ଶନ ଶାସ୍ତ୍ର ବେଦ, ଉପନିଷଦ୍, ସାଂଖ୍ୟ, ନ୍ୟାୟ ଓ ବୈଶେଷିକ ଦର୍ଶନ ଗର୍ଭିତ ଗ୍ରନ୍ଥ, ଶ୍ରୀମଦ୍ଭଗବଦ୍ ଗୀତା, ପଞ୍ଚରାତ୍ର ସଂହିତା, ତାପିନୀଗ୍ରନ୍ଥ, ବିଭିନ୍ନ ପୁରାଣ ଯଥା ବିଷ୍ଣୁପୁରାଣ, ହରିବଂଶ ପୁରାଣ, ପଦ୍ମପୁରାଣ, ବାୟୁ ପୁରାଣ, ବିଷ୍ଣୁଧର୍ମୋତ୍ତର ପୁରାଣ,

ନାରଦୀୟ ଭକ୍ତିସୂତ୍ର ଓ ଶାଣ୍ଡିଲ୍ୟଙ୍କର ଭକ୍ତିସୂତ୍ର ପ୍ରଭୃତି ଗ୍ରନ୍ଥଗୁଡ଼ିକର ଆଶ୍ରୟରେ ପରିପୁଷ୍ଟ ହୋଇଥିଲା । ନିମ୍ନରେ ଏହିସବୁ ବୈଷ୍ଣବ ସମ୍ପ୍ରଦାୟର ଧର୍ମଦର୍ଶନର ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହେଲା । (୩୫)

## ଶ୍ରୀ ସମ୍ପ୍ରଦାୟ ବା ରାମାନୁଜ ସମ୍ପ୍ରଦାୟ

ଖ୍ରୀଷ୍ଟୀୟ ୧୦୩୭-୧୦୩୮ ମଧ୍ୟରେ ତାମିଲ ଦେଶରେ ରାମାନୁଜାଚାର୍ଯ୍ୟଙ୍କର ଆବିର୍ଭାବ ଘଟିଥିଲା । ପୂର୍ବରୁ କୁହାଯାଇଛି ଯେ ତାମିଲ ପ୍ରଦେଶ ଏକଦା ଭକ୍ତି ଆନ୍ଦୋଳନ ଓ ବୈଷ୍ଣବଧର୍ମର ପ୍ରଧାନ କେନ୍ଦ୍ର ଥିଲା । ସେହି ସ୍ଥାନରୁ ରାମାନୁଜାଚାର୍ଯ୍ୟଙ୍କର ଆବିର୍ଭାବ ଏକ ସ୍ୱାଭାବିକ ପରିଣତି । ରାମାନୁଜ କେବଳ ଜଣେ ଭକ୍ତ ନଥିଲେ, ବିଖ୍ୟାତ ପଣ୍ଡିତ ମଧ୍ୟ ଥିଲେ । ତାଙ୍କ ପ୍ରଣୀତ ବହୁନ୍ଦ ଦାର୍ଶନିକ ଓ ତତ୍ତ୍ୱମୂଳକ ଗ୍ରନ୍ଥମଧ୍ୟରେ ବ୍ରହ୍ମସୂତ୍ର ଉପରେ ରଚିତ ଭାଷ୍ୟ 'ଶ୍ରୀଭାଷ୍ୟ' ବେଦାନ୍ତ ସଂଗ୍ରହ, ବ୍ରହ୍ମସୂତ୍ରର ଟୀକା 'ବେଦାନ୍ତସାର' ଓ 'ବେଦାନ୍ତ ଦୀପ' ଈଶ୍ୱର ଓ ଶରଣାଗତି ବିଷୟକ ଆଲୋଚନାମୂଳକ ଗ୍ରନ୍ଥ 'ଗଦ୍ୟତ୍ରୟ' ଓ ଗୀତା ଭାଷ୍ୟ ପ୍ରଭୃତି ପ୍ରଧାନ । ତାଙ୍କର 'ଶ୍ରୀଭାଷ୍ୟ' ରେ ବିଶିଷ୍ଟାଦ୍ୱୈତବାଦକୁ ପ୍ରତିଷ୍ଠା ଦିଆଯାଇଛି ଓ 'ବେଦାନ୍ତ ସଂଗ୍ରହ'ରେ ଶଙ୍କର ଏବଂ ଭାସ୍କରଙ୍କର ମତକୁ ଖଣ୍ଡନ କରାଯାଇଛି ।

ରାମାନୁଜ ସମ୍ପ୍ରଦାୟରେ ନାରାୟଣଙ୍କର ଶକ୍ତି 'ଶ୍ରୀ' ବା ଲକ୍ଷ୍ମୀଙ୍କୁ ପ୍ରାଧାନ୍ୟ ଦିଆଯାଇଥିବାରୁ, ଏହି ସମ୍ପ୍ରଦାୟ ଶ୍ରୀ ସମ୍ପ୍ରଦାୟ ନାମରେ ଖ୍ୟାତ ।

ରାମାନୁଜ ତାଙ୍କର ଦର୍ଶନ ମଧ୍ୟରେ ତିନୋଟି ତତ୍ତ୍ୱ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ତାହାହେଉଛି ଚିତ୍ ଅଚିତ୍ ଓ ଈଶ୍ୱର ସମ୍ବନ୍ଧୀୟ ତତ୍ତ୍ୱ । ତାଙ୍କ ମତରେ ଚିତ୍ ହେଉଛି ଜୀବ, ଅଚିତ୍ ହେଉଛି ଜଡ ବା ପ୍ରକୃତି ଓ ଈଶ୍ୱର ଚିତ୍ ଏବଂ ଅଚିତ୍ ମଧ୍ୟରେ ଅର୍ଥାତ୍ ଜୀବ ଜଗତ ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପେ ବିଦ୍ୟମାନ । ଚିତ୍ (ଜୀବ) ହେଉଛି ଭୋକ୍ତା ଓ ଅଚିତ୍ (ପ୍ରକୃତି) ହେଉଛି ଭୋଗ୍ୟ ।ରାମାନୁଜ ଶଙ୍କରଙ୍କର ନିର୍ବିଶେଷବାଦକୁ ଖଣ୍ଡନ କରି କହନ୍ତି, ବ୍ରହ୍ମ ନିର୍ଗୁଣ ବା ନିର୍ବିଶେଷ ନୁହନ୍ତି । ସେ ପ୍ରାକୃତ ଗୁଣବିହୀନ ହେଉ ନିର୍ଗୁଣ ରୂପେ ପ୍ରତିପାଦିତ । କିନ୍ତୁ ସେ ପ୍ରକୃତରେ ସେ କଲ୍ୟାଣ ଗୁଣର ଆକର, ଅନନ୍ତଜ୍ଞାନ, ଅନନ୍ତଶକ୍ତିର ଆଧାର ଓ ଆନନ୍ଦ ସ୍ୱରୂପ ।

ଜୀବ, ଜଗତ୍ ଓ ବ୍ରହ୍ମର ସମ୍ପର୍କ ନିରୂପଣ କରିବାକୁ ଯାଇ ରାମାନୁଜ ତିନି ପ୍ରକାର ଭେଦ ନିରୂପଣ କରିଛନ୍ତି । ଯଥା– ସଜାତୀୟ ଭେଦ, ବିଜାତୀୟ ଭେଦ ଓ ସ୍ୱଗତ ଭେଦ । ଗୋଟିଏ ଜାତିର ଦୁଇଟି ପଦାର୍ଥ ମଧ୍ୟରେ ଭେଦ, ଅର୍ଥାତ୍ ଗୋଜାତି ମଧ୍ୟରେ ଗାଈ ଗାଈ ମଧ୍ୟରେ ଭେଦକୁ ସଜାତୀୟ ଭେଦ, ଦୁଇଟି ଭିନ୍ନ ଜାତି ମଧ୍ୟରେ ଭେଦ ଯଥା- ଗାଈ ଓ ମଇଷି ମଧ୍ୟରେ ଭେଦକୁ ବିଜାତୀୟ ଭେଦ ଓ ଗୋଟିଏ ବସ୍ତୁର ବିଭିନ୍ନ ଅଙ୍ଗ ମଧ୍ୟରେ ଭେଦ ଯଥା ମନୁଷ୍ୟର ହାତ ଗୋଡ; ନାକ କାନ ମଧ୍ୟରେ ଥିବା ଭେଦକୁ ସ୍ୱଗତ ଭେଦ କୁହାଯାଇଥାଏ ।

ରାମାନୁଜଙ୍କ ମତରେ ଈଶ୍ୱରଙ୍କ ସହିତ ଜୀବ ଓ ପ୍ରକୃତିର ସଜାତୀୟ ଓ ବିଜାତୀୟ ଭେଦ ନିଷ୍ପିଦ୍ଧ ରହିଛି । କିନ୍ତୁ ସ୍ୱଗତ ଭେଦ ବିଶୃତରେ ଈଶ୍ୱରଙ୍କ ସହିତ ଜୀବ ଓ ପ୍ରକୃତିର ଭେଦ ନାହିଁ । ଜୀବ ଓ ଜଗତ୍ର ନିତ୍ୟ ସ୍ୱତନ୍ତ୍ର ପଦାର୍ଥ ହେଲେ ସୁଦ୍ଧା ଈଶ୍ୱରଙ୍କର ଅଧୀନ ଜୀବ ଓ ଜଗତ୍ର ଈଶ୍ୱରଙ୍କର ଶରୀର ସଦୃଶ । ଆତ୍ମା ଯେପରି ଶରୀରକୁ ନିୟମନ କରି ନିଜ ସ୍ୱାର୍ଥସିଦ୍ଧି ପାଇଁ କାର୍ଯ୍ୟରେ ପ୍ରବୃତ୍ତ କରାଇଥାଏ, ଈଶ୍ୱର ସେପରି ଜୀବ ଓ ଜଗତ ମଧ୍ୟରେ ଅବସ୍ଥାନ କରି ତାହାକୁ ନିଜ ଇଚ୍ଛାରେ ପରିଚାଳିତ କରନ୍ତି । ଈଶ୍ୱର ନିୟାମକ ଓ ପ୍ରଧାନ ହେତୁ ବିଶେଷ୍ୟ, ଜୀବ ଓ ଜଗତ୍ର ନିୟମ୍ୟ ତଥା ଅପ୍ରଧାନ ହେତୁ ବିଶେଷଣ । ବିଶେଷଣ ବିଶେଷ୍ୟଠାରୁ ପୃଥକ ନହୋଇ ଯେପରି ସର୍ବଦା ବିଶେଷ୍ୟ ସହିତ ଯୁକ୍ତ ହୋଇଥାଏ । ସେହିପରି ଈଶ୍ୱରଙ୍କ ସହିତ ଜୀବ ଓ ଜଗତ୍ ବା ଚିତ୍ ଓ ଅଚିତ୍ର ଅପୃଥକ ଭାବ ରହିଛି । ଈଶ୍ୱର ଚିତ୍ ଓ ଅଚିତ୍ର ଏହି ପ୍ରକାର ଏକତ୍ର ସମ୍ବନ୍ଧ ବିଶେଷଣ ଯୁକ୍ତ ବିଶେଷ୍ୟ ବା ବିଶିଷ୍ଟ ଭୁକ୍ତ ହୋଇଥିବାରୁ ରାମାନୁଜଙ୍କର ଅଦ୍ୱୈତବାଦକୁ ବିଶିଷ୍ଟାଦ୍ୱୈତବାଦ କୁହାଯାଇଥାଏ ।

ରାମାନୁଜଙ୍କ ମତରେ ଚିତ୍ ଓ ଅଚିତ୍ ବା ଜୀବ ଓ ଜଗତ୍ ନିତ୍ୟ ପଦାର୍ଥ । ପ୍ରଳୟ ସମୟରେ ଏହା ସୂକ୍ଷ୍ମ ରୂପ ଧାରଣ କରେ ଓ ବ୍ରହ୍ମ ଏହା ମଧ୍ୟରେ ଅବସ୍ଥାନ କରନ୍ତି । ସେତେବେଳେ ବ୍ରହ୍ମଙ୍କୁ କାରଣ ବ୍ରହ୍ମ କୁହାଯାଏ । ସୃଷ୍ଟି ଆରମ୍ଭରେ ବ୍ରହ୍ମ ପୁଣି ସ୍ଥୂଳ ରୂପରେ ଓ ଜଗତ ରୂପରେ ଅଭିବ୍ୟକ୍ତ ହୁଅନ୍ତି । ସେତେବେଳେ ତାଙ୍କୁ କାର୍ଯ୍ୟବ୍ରହ୍ମ କୁହାଯାଇ-

ଥାଏ । ରାମାନୁଜଙ୍କ ମତରେ ଜୀବ ଅଣୁ ସ୍ୱରୂପ ଓ ସଂଖ୍ୟାରେ ଅନନ୍ତ ଏବଂ ପ୍ରତ୍ୟେକ ଜୀବ ପରସ୍ପରଠାରୁ ପୃଥକ୍ । ଜୀବ ବ୍ରହ୍ମଠାରୁ ପୃଥକ କାରଣ ଜୀବ ଦୁଃଖରେ ପୀଡ଼ିତ ହୋଇଥାଏ । ବ୍ରହ୍ମ ଆନନ୍ଦମୟ ଓ ଜୀବ ବ୍ରହ୍ମର ଏକ ଅଂଶ ମାତ୍ର । ଜୀବ ଅଳ୍ପଜ୍ଞ ଓ ଅନନ୍ତ । ବ୍ରହ୍ମ ସର୍ବଜ୍ଞ । ବ୍ରହ୍ମ ଅଂଶୀ ଜୀବ ଅଂଶ । ଜୀବ ମଧ୍ୟରେ ଈଶ୍ୱର ଅନ୍ତର୍ଯ୍ୟାମୀ ରୂପରେ ବାସକରି ତାହାର ନିୟାମକ ହୋଇଥାଆନ୍ତି । ତେଣୁ ଜୀବ ସମ୍ପୂର୍ଣ୍ଣ ଭାବରେ ଈଶ୍ୱରଙ୍କର ଆଶ୍ରିତ ଓ ଅଧୀନ ।

ରାମାନୁଜ ତାଙ୍କର ସୃଷ୍ଟିତତ୍ତ୍ୱ ପ୍ରସଙ୍ଗରେ ଉପନିଷଦ୍ ଓ ପାଞ୍ଚରାତ୍ର ମତକୁ ଅନୁସରଣ କରିଛନ୍ତି । ତାଙ୍କ ମତରେ ସୃଷ୍ଟି ବ୍ରହ୍ମଙ୍କର ଏକ ପରିଣତି । ଈଶ୍ୱରଙ୍କର ସୃଷ୍ଟି କରିବା ଇଚ୍ଛାରେ ପ୍ରକୃତିର ଗୁଣ ସାମ୍ୟ ନଷ୍ଟ ହୋଇ ତ୍ରିଗୁଣର ଉଦୟ ହୋଇଥାଏ । ତ୍ରିଗୁଣର ପାରସ୍ପରିକ ମିଶ୍ରଣ ଜନିତ ଅଳ୍ପାଧିକ୍ୟ ଅବସ୍ଥାନ ନେଇ ବିଭିନ୍ନ ଅହଙ୍କାର ଓ ଅହଙ୍କାରରୁ ପଞ୍ଚମହାଭୂତ, କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ ତଥା ଜଗତର ସମସ୍ତ ପଦାର୍ଥର ସୃଷ୍ଟି ହୁଏ । ଏହା ପାଞ୍ଚରାତ୍ରଧର୍ମର ସୃଷ୍ଟିତତ୍ତ୍ୱ ଅନୁରୂପ । ଈଶ୍ୱର ନିଜର ମାୟାଦ୍ୱାରା ସୃଷ୍ଟିକାର୍ଯ୍ୟ ସମ୍ପନ୍ନ କରନ୍ତି । ମାୟାହେଉଛି ଈଶ୍ୱରଙ୍କର ଏକ ଶକ୍ତି ବିଶେଷ । ସୃଷ୍ଟି ଈଶ୍ୱରଙ୍କର ଅଂଶ ହୋଇଥିବାରୁ ଏହା ଈଶ୍ୱରଙ୍କ ସଦୃଶ ନିତ୍ୟ ଓ ସତ୍ୟ ।

**ସାଧନା :** ରାମାନୁଜ ଶରଣାଗତି ବା ପ୍ରପତ୍ତି ଉପରେ ବିଶେଷ ପ୍ରାଧାନ୍ୟ ପ୍ରଦାନ କରିଛନ୍ତି । ଏଥିପାଇଁ ସେ କର୍ମ ଓ ଜ୍ଞାନମାର୍ଗକୁ ଉପେକ୍ଷା କରି ନାହାନ୍ତି । ତାଙ୍କମତରେ ବର୍ଣ୍ଣାଶ୍ରମ ବିହିତ କର୍ମାନୁଷ୍ଠାନ ଜୀବର କର୍ତ୍ତବ୍ୟ କର୍ମ । ବେଦ ବିହିତ କର୍ମାନୁଷ୍ଠାନ ଦ୍ୱାରା ଚିତ୍ତ ଶୁଦ୍ଧ ହୋଇଥାଏ । ଚିତ୍ତ ଶୁଦ୍ଧ ହେଲେ ଅବିଦ୍ୟା ନଷ୍ଟ ହୋଇ ବ୍ରହ୍ମଜ୍ଞାନ ପାଇଁ ବ୍ୟାକୁଳତା ଆସିଥାଏ । ଶରଣାଗତି ଦ୍ୱାରା ଭଗବାନଙ୍କର ପୂର୍ଣ୍ଣଶରଣାପନ୍ନ ହେଲେ ଭଗବାନଙ୍କ ଅନୁଗ୍ରହରୁ ଈଶ୍ୱର ସମ୍ବନ୍ଧୀୟ ଅପରୋକ୍ଷ ଜ୍ଞାନର ଉଦୟ ହୋଇଥାଏ । ରାମାନୁଜ ମୁକ୍ତିର ଅର୍ଥକୁ ସାଯୁଜ୍ୟ ମୁକ୍ତି (ବ୍ରହ୍ମ ସହିତ ଏକ ହୋଇଥିବା) ଅର୍ଥରେ ନେଇ ନାହାନ୍ତି । ମୁକ୍ତଜୀବ ଅପ୍ରାକୃତ ଗୁଣ ମଣ୍ଡିତ ହୋଇ, ଅପ୍ରାକୃତ ଦେହ ଧାରଣ କରି ବୈକୁଣ୍ଠରେ ଭଗବାନଙ୍କର ସେବା ଅଧିକାରୀ

ପ୍ରାପ୍ତ ହୁଏ । ଏହାହିଁ ମୁକ୍ତି । ରାମାନୁଜଙ୍କ ମତରେ ବୈକୁଣ୍ଠବାସୀ ନାରାୟଣ ହିଁ ପରଂବ୍ରହ୍ମ ।

## ବ୍ରହ୍ମ ସମ୍ପ୍ରଦାୟ ବା ମାଧ୍ୱ ସମ୍ପ୍ରଦାୟ:

ମାଧ୍ୱ ସମ୍ପ୍ରଦାୟର ଅନ୍ୟନାମ ବ୍ରହ୍ମ ସମ୍ପ୍ରଦାୟ । ଏହି ସମ୍ପ୍ରଦାୟର ପ୍ରଧାନ ଆଚାର୍ଯ୍ୟ ମାଧ୍ୱ ଦକ୍ଷିଣ ଭାରତର ଉଡୁପୀ ନାମକ ସ୍ଥାନରେ ୧୧୯୯ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ମାଧ୍ୱାଚାର୍ଯ୍ୟଙ୍କ ପ୍ରଣୀତ ଗ୍ରନ୍ଥ ସମୂହ ହେଉଛି ୧- ବ୍ରହ୍ମସୂତ୍ର ଭାଷ୍ୟ, ୨- ଏତରେୟ, ଛାନ୍ଦୋଗ୍ୟ, କେନ, କଠ, ବୃହଦାରଣ୍ୟକ ଆଦି ଉପନିଷଦ୍ ଉପରେ ଭାଷ୍ୟ, ୩- ଭାଗବତ ତାତ୍ପର୍ଯ୍ୟ ନିର୍ଣ୍ଣୟ, ୪- ଗୀତାଭାଷ୍ୟ, ୫- ଅନୁବ୍ୟାଖ୍ୟାନ, ୬- ମହାଭାରତ ତାତ୍ପର୍ଯ୍ୟ ନିର୍ଣ୍ଣୟ, ୭- ବସ୍ତୁତତ୍ତ୍ୱ ନିର୍ଣ୍ଣୟ, ୮- ପ୍ରପଞ୍ଚ ମିଥ୍ୟାତ୍ୱ ନିର୍ଣ୍ଣୟ, ୯- ଗୀତା ତାତ୍ପର୍ଯ୍ୟ ନିର୍ଣ୍ଣୟ, ୧୦- ତତ୍ତ୍ୱସାର ସଂଗ୍ରହ ।

ମାଧ୍ୱାଚାର୍ଯ୍ୟ ଜୀବାତ୍ମା ଓ ପରମାତ୍ମା ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରତିପାଦନ କରିଥିବା ହେତୁ ତାଙ୍କ ଦର୍ଶନ ଦ୍ୱୈତବାଦ ଉପରେ ଆଧାରିତ । ସେ ଜୀବାତ୍ମା ଓ ପରମାତ୍ମାଙ୍କ ସମ୍ବନ୍ଧରେ ଯେଉଁ ମତ ଉତ୍ଥାପିତ କରିଛନ୍ତି ତାହାର ସୂଚନା ନିମ୍ନରେ ଦିଆଗଲା ।

**ପରମାତ୍ମା :-** ମାଧ୍ୱଙ୍କ ମତରେ ବିଷ୍ଣୁ ହେଉଛନ୍ତି ପରମାତ୍ମା । ସେ ଅନନ୍ତଗୁଣରେ ପରିପୂର୍ଣ୍ଣ । ଅର୍ଥାତ୍ ତାଙ୍କଠାରେ ବିରାଜିତ ସମସ୍ତଗୁଣର କୌଣସି ସୀମା ନାହିଁ । ଉତ୍ପତ୍ତି, ସ୍ଥିତି, ସଂହାର, ନିୟମନ, ଜ୍ଞାନ, ଆବରଣ ଓ ମୋକ୍ଷ --- ଏହି ଆଠଟିର କର୍ତ୍ତା ହେଉଛନ୍ତି ଭଗବାନ୍ । ଜ୍ଞାନ, ଆନନ୍ଦ ଓ କଲ୍ୟାଣ ଆଦି ତାଙ୍କର ଶରୀର । ସେ ସର୍ବଜ୍ଞ, ସର୍ବ ପଦବାଚ୍ୟ, ନିତ୍ୟ ଏବଂ ସବୁଥିରେ ସ୍ୱତନ୍ତ୍ର । ସେ ଏକ, ପୁଣି ଅନେକ ରୂପରେ ପ୍ରକାଶିତ ଏବଂ ତାଙ୍କର ସମସ୍ତ ରୂପ (ଅବତାର)ରେ ପରିପୂର୍ଣ୍ଣତା ରହିଛି ।

**ଜୀବାତ୍ମା .-** ଜୀବାତ୍ମା ପରମାତ୍ମାଙ୍କର ଚିତ୍‌ଶକ୍ତିର ଏକ ଅଂଶ ହେଲେ ମଧ୍ୟ ସେ ପରମାତ୍ମାଙ୍କଠାରୁ ସବୁଗୁଣରେ ପୃଥକ । ଜୀବାତ୍ମା ଦୁଃଖ, ଭୟ, ମୋହ ଆଦି ଦୋଷରେ ଯୁକ୍ତହୋଇ ସଂସାରରେ ବିଚରଣ କରୁଥିବାରୁ ପରମାତ୍ମାଙ୍କ ସହିତ ଏକ ହୋଇପାରେ ନାହିଁ । ଆଧ୍ୟାତ୍ମିକ ବିକାଶ ଭେଦରେ ମାଧ୍ୱ ଜୀବକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି । ଯଥା—

୧- ତମୋଯୋଗ୍ୟ ଜୀବ - ଦୈତ୍ୟ, ରାକ୍ଷସ, ପିଶାଚ ଏବଂ ଅଧମ ମନୁଷ୍ୟ ।

୨- ନିତ୍ୟ ସଂସାରୀ ଜୀବ - (ମଧ୍ୟମ ମନୁଷ୍ୟ) ସାଂସାରିକ ସୁଖ ଦୁଃଖରେ ଯୁକ୍ତ ଏମାନେ କର୍ମ ଫଳାନୁଯାୟୀ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ ବିଚରଣ କରିଥାନ୍ତି ।

୩- ମୁକ୍ତି ଯୋଗ୍ୟ ଜୀବ - ଦେବ, ଋଷି, ପିତୃ, ଚକ୍ରବର୍ତ୍ତୀ ଏବଂ ଉତ୍ତମ ମନୁଷ୍ୟ ।

ମାଧ୍ୱଙ୍କ ମତରେ ଜ୍ଞାନ ଗୁଣାଦି ଭେଦରେ ପ୍ରତ୍ୟେକ ଜୀବ ପ୍ରତ୍ୟେକ ଜୀବଠାରୁ ପୃଥକ ଏବଂ ଜୀବ ଈଶ୍ୱରଙ୍କଠାରୁ ପୃଥକ । ମୁକ୍ତ ଜୀବ ମଧ୍ୟ ନିଜର ଜ୍ଞାନାଦି ଗୁଣ ଦ୍ୱାରା ଅନ୍ୟ ମୁକ୍ତ ଜୀବଠାରୁ ପୃଥକ ହୋଇଥାଏ ଏବଂ ସେମାନଙ୍କର ସାଧନାନୁଯାୟୀ ଆନନ୍ଦର ଅନୁଭୂତି ହୋଇଥାଏ ।

ମାଧ୍ୱ ପରମାତ୍ମାଙ୍କର ଶକ୍ତି ଲକ୍ଷ୍ମୀଙ୍କୁ ମଧ୍ୟ ପରମାତ୍ମାଙ୍କ ସଦୃଶ ନିତ୍ୟମୁକ୍ତା, ଅପ୍ରାକୃତ ଓ ଦିବ୍ୟ ବିଗ୍ରହବତୀ ତଥା ନାନାରୂପଧାରିଣୀ ଭାବେ ଉଲ୍ଲେଖ କରିଛନ୍ତି । ସେ ସର୍ବଦା ପରମାତ୍ମାଙ୍କର ଅଧୀନା ଅଟନ୍ତି । ମାଧ୍ୱଙ୍କ ମତରେ ପ୍ରକୃତି, ଗୁଣମୟୀ, ଜଡ଼ରୂପା, ନିତ୍ୟା, ସର୍ବବ୍ୟାପ୍ତା ଅଟେ ଏବଂ ରମା ଏହାର ଅଭିମାନିନୀ ଦେବତା । ସୃଷ୍ଟି ବ୍ୟାପାରରେ ପରମାତ୍ମା କେବଳ ନିମିତ୍ତ ମାତ୍ର ହେଉଛୁ ନିଜର କାରଣ ଅଟନ୍ତି । ପ୍ରକୃତ ସୃଷ୍ଟି ପ୍ରକୃତିର ଜାତ ହେଉଥିବାରୁ ପ୍ରକୃତି ସୃଷ୍ଟି ପାଇଁ ଉପାଦାନ କାରଣ । ସାଂଖ୍ୟରେ ସୃଷ୍ଟି ବିକାଶ ପାଇଁ ଯେପରି ଚବିଶ ତତ୍ତ୍ୱର ଅବତାରଣା କରାଯାଇଛି, ମାଧ୍ୱ ଦର୍ଶନରେ ତାହା ଅନୁରୂପ ଭାବେ ବର୍ଣ୍ଣିତ ।

ମାଧ୍ୱାଚାର୍ଯ୍ୟ ସ୍ୱ ସମ୍ପ୍ରଦାୟର ସାଧନା ମାର୍ଗରେ ପଞ୍ଚଭେଦ ଜ୍ଞାନ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସେଗୁଡ଼ିକ ହେଉଛି-

୧- ଈଶ୍ୱର ଓ ଜୀବ ମଧ୍ୟରେ ଭେଦ

୨- ଈଶ୍ୱର ଓ ଜଡ଼ ମଧ୍ୟରେ ଭେଦ

୩- ଜୀବ ଓ ଜଡ଼ ମଧ୍ୟରେ ଭେଦ

୪- ଜୀବ ଓ ଜୀବ ମଧ୍ୟରେ ଭେଦ

୫- ଜଡ଼ ଓ ଜଡ଼ ମଧ୍ୟରେ ଭେଦ

ସାଧନା ପାଇଁ ଏହି ପଞ୍ଚାଙ୍ଗନ ବ୍ୟକ୍ତିତ ଭଗବତ୍ ନାମ ରୂପର ନିରନ୍ତର ଶ୍ରବଣ, ମନନ ଓ ଧ୍ୟାନ ନିତାନ୍ତ ପ୍ରୟୋଜନ୍ । ଭଗବାନ୍‌ଙ୍କର ଅନୁଗ୍ରହ ହେଲେ ସାଧକ ହୃଦୟରେ ଭଗବାନ୍‌ଙ୍କ ସମ୍ବନ୍ଧୀୟ ଅପରୋକ୍ଷ ଜ୍ଞାନ ଓ ତତ୍‌ପରେ ଭଗବାନ୍‌ଙ୍କ ପ୍ରତି ପରମ ଭକ୍ତି ଉଦୟ ହୋଇଥାଏ ଏବଂ ଜୀବ ମୋକ୍ଷ ଲାଭ କରିଥାଏ । ଏହି ମୋକ୍ଷ କର୍ମକ୍ଷୟ, ଉତ୍‌କ୍ରାନ୍ତି, ଅର୍ଚ୍ଚିରାଦିମାର୍ଗ ଓ ଭୋଗ- ଏହି ଚାରି ପ୍ରକାରରେ ବିଭକ୍ତ । ଏତଦ୍‌ବ୍ୟତୀତ ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ ଓ ସାଯୁଜ୍ୟ ଏହି ଚାରି ପ୍ରକାର ମୁକ୍ତିର ଅବତାରଣା ସେ କରିଛନ୍ତି ।

ମାଧ୍ୱ ତାଙ୍କ ଧର୍ମ ଦର୍ଶନର ଅବତାରଣା ପାଇଁ ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ, ବିଶିଷ୍ଟ ଅଂଶୀ, ଶକ୍ତି, ସାଦୃଶ୍ୟ ଓ ଅଭାବ ଆଦି ଆଠଟି ପଦାର୍ଥ ଏବଂ ପରମାତ୍ମା, ଲକ୍ଷ୍ମୀ, ଜୀବ, ଅବ୍ୟାକୃତ, ଆକାଶ, ପ୍ରକୃତି, ଗୁଣତ୍ରୟ, ମହତ୍ତ୍ୱ, ଅହଙ୍କାର, ବୁଦ୍ଧି, ମନ, ଇନ୍ଦ୍ରିୟ, ଭୂତ, ତନ୍ମାତ୍ର, ବ୍ରହ୍ମାଣ୍ଡ ଅବିଦ୍ୟା, ବର୍ଣ୍ଣ, ଅନ୍ଧକାର, ବାସନା କାଳ ଏବଂ ପ୍ରତିବିମ୍ବ ଆଦି ୨୦ ପ୍ରକାର ଦ୍ରବ୍ୟର ଅବତାରଣା କରିଛନ୍ତି । ଏହାଛଡ଼ା ସେ ବୈଶେଷିକ ଗୁଣ, ଶମ, ଦମ, କୃପା, ତିତିକ୍ଷା, ନିଷିଦ୍ଧ ଓ ଉଦାସୀନ ଆଦି ତିନିପ୍ରକାର କର୍ମର ମଧ୍ୟ ଉଲ୍ଲେଖ କରିଛନ୍ତି ।

ମାଧ୍ୱଙ୍କ ମତରେ ବୈକୁଣ୍ଠବାସୀ ନାରାୟଣ ହେଉଛନ୍ତି ପରଂବ୍ରହ୍ମ ।

## ସନକ ସମ୍ପ୍ରଦାୟ ବା ନିମ୍ବାର୍କ ସମ୍ପ୍ରଦାୟ :

ନିମ୍ବାର୍କ ସମ୍ପ୍ରଦାୟ ସନକ ସମ୍ପ୍ରଦାୟ ଭାବେ ପରିଚିତ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଆଚାର୍ଯ୍ୟ ନିମ୍ବାର୍କ ଆନ୍ଧ୍ରପ୍ରଦେଶର ଏକ ତେଲୁଗୁ ବ୍ରାହ୍ମଣ ପରିବାରରେ ଭୂମିଷ୍ଠ ହୋଇଥିଲେ । ତାଙ୍କଦ୍ୱାରା ପ୍ରଣୀତ ଗ୍ରନ୍ଥଗୁଡ଼ିକ ହେଉଛି ବେଦାନ୍ତ ପାରିଜାତ ସୌରଭ (ବ୍ରହ୍ମସୂତ୍ରର ଭାଷ୍ୟ), ଦଶଶ୍ଳୋକୀ ଓ ଶ୍ରୀକୃଷ୍ଣ-ସ୍ତବରାଜ । ରାମାନୁଜ ଓ ମାଧ୍ୱଙ୍କ ପରି ନିମ୍ବାର୍କ ଚିତ୍ (ଜୀବ), ଅଚିତ୍ (ଜଡ଼ ବା ପ୍ରକୃତି), ଈଶ୍ୱର ଏବଂ ସାଧନାତତ୍ତ୍ୱ ସମ୍ପର୍କରେ ଆଲୋଚନା କରିଛନ୍ତି । ତାହାକୁ ନିମ୍ନରେ ପ୍ରତିପାଦନ କରାଯାଉଛି ।

**ଜୀବତତ୍ତ୍ୱ -** ନିମ୍ବାର୍କଙ୍କ ମତରେ ଜୀବ ଈଶ୍ୱରଙ୍କର ଅଂଶ ବିଶେଷ ଅର୍ଥାତ୍ ସର୍ବଶକ୍ତିମାନ ଈଶ୍ୱରଙ୍କର ସେ ଶକ୍ତିରୂପ ଅଟେ । ଜୀବ ସ୍ୱଭାବତଃ ଜ୍ଞାନ ସ୍ୱରୂପ ବା ଜ୍ଞାନମୟ ; କାରଣ ଏହା ବିରାଟ ଚୈତନ୍ୟ ସତ୍ତାର ଏକ ଅଂଶ ବିଶେଷ । ତେଣୁ ସେ ସ୍ୱରୂପତଃ ଓ ଗୁଣତଃ ଜ୍ଞାନମୟ । ଜୀବଠାରେ କର୍ତ୍ତୃତ୍ୱଭାବ ସ୍ୱତଃସିଦ୍ଧ । ସଂସାରୀ ଅବସ୍ଥାରେ ଜୀବର କର୍ତ୍ତୃତ୍ୱଭାବ ସ୍ପଷ୍ଟ ଅନୁଭୂତ ହୋଇଥାଏ । ମୁକ୍ତାବସ୍ଥାରେ ମଧ୍ୟ ଜୀବର କର୍ତ୍ତୃତ୍ୱଭାବ ରହିଥାଏ । କର୍ତ୍ତାହେତୁ ଜୀବ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ବିଭିନ୍ନ କାର୍ଯ୍ୟକରି ତାହାର ଫଳ ଭୋଗକରେ । ସେଥିପାଇଁ ଜୀବମଧ୍ୟ ଭୋକ୍ତାଅଟେ । ଜୀବକର୍ତ୍ତା, ଇନ୍ଦ୍ରିୟ-ମାନେ ହେଉଛନ୍ତି କାରଣ । ଇନ୍ଦ୍ରିୟମାନଙ୍କୁ ନିଜ ବଶରେ ରଖି ସ୍ୱଇଚ୍ଛାରେ ପରିଚାଳିତ କରୁଥିବାରୁ ଜୀବ ଇନ୍ଦ୍ରିୟମାନଙ୍କର ସ୍ୱାମୀ ଅଟେ । ଜୀବ ଜ୍ଞାନମୟ କର୍ତ୍ତା, ଭୋକ୍ତା ଓ ସ୍ୱାମୀ ହେଲେ ମଧ୍ୟ ସ୍ୱତନ୍ତ୍ର ନୁହେଁ । ଏହା ଈଶ୍ୱରଙ୍କର ଅଧୀନ ହେତୁ ପରତନ୍ତ୍ର ଅଟେ । ଈଶ୍ୱର ନିୟାମକ, ଜୀବ ନିୟମ୍ୟ । ନିୟନ୍ତା ଈଶ୍ୱର ଜୀବ ମଧ୍ୟରେ ବାସକରି ଜୀବକୁ ନିଜ ଇଚ୍ଛା ଅନୁଯାୟୀ ପରିଚାଳିତ କରନ୍ତି ଓ ତାଠାରେ କର୍ତ୍ତୃତ୍ୱ ଉତ୍ପନ୍ନ କରନ୍ତି । ମାଧ୍ୱଙ୍କଭଳି ନିମ୍ବାର୍କ ଜୀବକୁ ଅଣୁ ସ୍ୱରୂପ, ସଂଖ୍ୟାରେ ଅନେକ ଓ ସୁଖ ଦୁଃଖାଦି ଜ୍ଞାନଯୁକ୍ତ ରୂପେ ବର୍ଣ୍ଣନା କରିଛନ୍ତି । ବଦ୍ଧ (ସଂସାର ମଧ୍ୟରେ ଆବଦ୍ଧ) ଜୀବକୁ ସେ ମୁମୁକ୍ଷୁ (ମୁକ୍ତିକାମୀ) ଓ ବୁଭୁକ୍ଷୁ ବିଷୟାସକ୍ତ) - ଏହିପରି ଦୁଇ ଶ୍ରେଣୀରେ ବିଭକ୍ତ କରିଛନ୍ତି ।

ଗୁଣମୟୀ ପ୍ରକୃତିର ମାୟାରେ ଆବୃତ୍ତହୋଇ ଜୀବର ସ୍ୱରୂପଗତ ଜ୍ଞାନ ସଙ୍କୁଚିତ ହୋଇଯିବା ଫଳରେ ସେ ବଦ୍ଧଜୀବ ହୋଇଥାଏ । କେବଳ ଈଶ୍ୱରଙ୍କର କରୁଣା ହେଲେ ଜୀବର ସ୍ୱରୂପଗତ ଜ୍ଞାନ ଆସିଥାଏ ଏବଂ ସେ ବଦ୍ଧାବସ୍ଥାରୁ ଉତ୍ତୀର୍ଣ୍ଣ ହୋଇଥାଏ ।

ମୁକ୍ତ ଜୀବକୁ ନିମ୍ବାର୍କ ମଧ୍ୟ **ମୁକ୍ତ** ଓ **ନିତ୍ୟମୁକ୍ତ** ଭେଦରେ ଦୁଇ ପ୍ରକାରେ ବିଭକ୍ତ କରିଛନ୍ତି । ଅବିଦ୍ୟାରୁ ଉତ୍ପନ୍ନ ଦୁଃଖର ଅନୁଭବରୁ ରହିତ ଜୀବକୁ ସେ **ମୁକ୍ତ ଜୀବ** ଏବଂ ଭଗବାନଙ୍କ ନିକଟରେ ନିତ୍ୟ ଅବସ୍ଥାନ କରି ଭଗବାନଙ୍କ ରୂପ ନିତ୍ୟ ଦର୍ଶନ କରି ଭଗବାନଙ୍କ ସେବା ଓ ଭଜନରେ ଆନନ୍ଦ ଲାଭ କରୁଥିବା ଜୀବକୁ ସେ **ନିତ୍ୟମୁକ୍ତଜୀବ** ଆଖ୍ୟା ଦେଇଛନ୍ତି ।

## ଅଚିତ୍ ବା ଜଡ଼ ବା ପ୍ରକୃତି ।

ନିମ୍ବାର୍କ ଚେତନା ବା ଜ୍ଞାନ ରହିତ ଅଚିତ୍‌କୁ ତିନି ପ୍ରକାରରେ ବିଭକ୍ତ କରିଛନ୍ତି । ତାହା ହେଉଛି ୧- ପ୍ରାକୃତ (ପ୍ରକୃତିରୁ ଜାତ ଏବଂ ପ୍ରକୃତି ମଧ୍ୟସ୍ଥ ବିଶ୍ୱ ବ୍ରହ୍ମାଣ୍ଡ), ଏଥିରେ ପ୍ରକୃତିର ପ୍ରଭାବ ସମ୍ପୂର୍ଣ୍ଣ ରହିଥାଏ ।

୨- ଅପ୍ରାକୃତ - ପରମବ୍ୟୋମ, ବିଷ୍ଣୁପଦ ଆଦି ଦିବ୍ୟଜଗତ, ଯେଉଁଠାରେ ପ୍ରକୃତିର ସ୍ପର୍ଶ ବା ପ୍ରଭାବ ଆଦୌ ନାହିଁ ।

୩- କାଳ- ଜଗତର ସମସ୍ତ ପରିଣାମ (କାର୍ଯ୍ୟ)ର ଜନକ ହେଉଛି କାଳ । କାଳ ଅଖଣ୍ଡ ରୂପଧାରୀ ଓ ନିତ୍ୟ । ଏହା ଈଶ୍ୱରଙ୍କର ଇଚ୍ଛାରେ ପରିଚାଳିତ ହେଉଥିବାରୁ ପରତନ୍ତ୍ର ଅଟେ ।

**ଈଶ୍ୱର** - ନିମ୍ବାର୍କ ଶଙ୍କରଙ୍କ ପରି ବ୍ରହ୍ମଙ୍କୁ ନିର୍ବିଶେଷ ଓ ନିର୍ଗୁଣ ନ କହି ସଗୁଣ କହିଛନ୍ତି । ତାଙ୍କ ମତରେ ବ୍ରହ୍ମ ସମସ୍ତ ପ୍ରାକୃତଗୁଣ ବିବର୍ଜିତ ହେତୁ ନିର୍ଗୁଣ ରୂପେ ପ୍ରଖ୍ୟାତ ହୁଅନ୍ତି, କିନ୍ତୁ ସେ ପ୍ରକୃତରେ ସମସ୍ତ ଅପ୍ରାକୃତ ଗୁଣଯୁକ୍ତ ହେତୁ ସଗୁଣ ଅଟନ୍ତି । ତାଙ୍କ ମତରେ ବ୍ରହ୍ମ ସର୍ବବ୍ୟାପୀ, ସର୍ବନିୟନ୍ତା, ଅତିସୂକ୍ଷ୍ମ, ଅତିମହାନ୍, ଅସୀମ ଶକ୍ତିର ଆଧାର, ପ୍ରାକୃତ ଦୋଷ (ଅବିଦ୍ୟା, ଅସ୍ମିତା, ରାଗ ଓ ଦ୍ୱେଷ ଗୁଡିକ ହେଉଛି ପ୍ରାକୃତ ଦୋଷ) ରହିତ ସ୍ୱତନ୍ତ୍ର, ଅନନ୍ତ କଲ୍ୟାଣ ଗୁଣର ଆକର, ସୌଶୀଲ୍ୟ, ବାତ୍ସଲ୍ୟ ଓ କରୁଣାଦି ଗୁଣର ଆଧାର ଏବଂ ଷଡୈଶ୍ୱର୍ଯ୍ୟଯୁକ୍ତ । ସେ ଜଗତର ସୃଷ୍ଟି, ସ୍ଥିତି ଓ ସଂହାର କାରକ ।

ଜୀବ ଓ ବ୍ରହ୍ମର ସମ୍ବନ୍ଧ ନିରୂପଣ କରିବାକୁ ଯାଇ ନିମ୍ବାର୍କ କହନ୍ତି- ଜୀବ ଓ ବ୍ରହ୍ମ ମଧ୍ୟରେ ଭେଦାଭେଦ ସ୍ୱାଭାବିକ । ବଦ୍ଧାବସ୍ଥାରେ ସର୍ବଜ୍ଞ ବ୍ରହ୍ମଙ୍କଠାରୁ ଅଳ୍ପଜ୍ଞ ଜୀବର ଭିନ୍ନତା ସ୍ପଷ୍ଟଭାବରେ ହେଉଥିଲେ ହେଁ ଜୀବ ସର୍ବଦା ବ୍ରହ୍ମଙ୍କର ଅଧୀନ ହୋଇଥିବାରୁ ପୃଥକ୍ ହୋଇ ରହିପାରେ ନାହିଁ । ତେଣୁ ବଦ୍ଧାବସ୍ଥାରେ ଭେଦାଭେଦ ଭାବ ଉଭୟ ରହିଥାଏ । ମୁକ୍ତାବସ୍ଥାରେ ସେହିପରି ଅବିଦ୍ୟା ମୁକ୍ତ ହୋଇ ଜୀବ ବ୍ରହ୍ମଙ୍କ ସହିତ ଅଭିନ୍ନ ହେଲାପରି ପ୍ରତୀତ ହେଲେ ମଧ୍ୟ ଜୀବ ଏକ ବିଶେଷ ରୂପପ୍ରାପ୍ତ ହୋଇ ବ୍ରହ୍ମଙ୍କଠାରୁ ପୃଥକ୍ ଅବସ୍ଥାନ କରେ । ଏଠାରେ ମଧ୍ୟ ଭେଦାଭେଦ ଭାବ

ରହିଛନ୍ତି । ସେଥିପାଇଁ ନିମ୍ବାର୍କ ଭେଦାଭେଦ ଭାବ ମଣ୍ଡିତ ଜୀବବ୍ରହ୍ମ ସମ୍ପର୍କକୁ ଗଛ ଓ ଗଛର ଫଳ, ପ୍ରଦୀପ ଓ ପ୍ରଦୀପର ପ୍ରଭା ସହିତ ତୁଳନା କରିଛନ୍ତି ।

**ସାଧନା** - ଅନ୍ୟ ବୈଷ୍ଣବାଚାର୍ଯ୍ୟଙ୍କ ପରି ନିମ୍ବାର୍କ ମଧ୍ୟ ଶରଣାଗତି ବା ପ୍ରପତ୍ତିକୁ ସାଧନାର ଶ୍ରେଷ୍ଠମାର୍ଗ ଭାବେ ଗ୍ରହଣ କରିଛନ୍ତି । ତାଙ୍କ ଏକାନ୍ତ ଭାବରେ ଶରଣାଗତିକୁ ଆଶ୍ରୟ କଲେ ଈଶ୍ୱରଙ୍କ ଅନୁଗ୍ରହରୁ ତାହାଦ୍ୱାରା ଈଶ୍ୱରଙ୍କ ପ୍ରତି ଆତ୍ମାନ୍ତିକା ପ୍ରେମଭକ୍ତିର ଉଦୟ ହୋଇଥାଏ ଏବଂ ଏହା ଦ୍ୱାରା ସେ ଭଗବାନଙ୍କର ସାକ୍ଷାତ୍ ଲାଭ କରିଥାଏ । ମୁକ୍ତାବସ୍ଥାରେ ଜୀବ ବ୍ରହ୍ମଙ୍କ ସହିତ ମିଶି ନ ଯାଇ ଅପ୍ରାକୃତ ଦେହଧାରଣ ପୂର୍ବକ ଭଗବାନଙ୍କ ସମୀପରେ ଅବସ୍ଥାନ କରି, ଭଗବାନଙ୍କ ସେବା ଓ ଭଜନ ଦ୍ୱାରି ଅପୂର୍ବ ଆନନ୍ଦରେ ନିମଜ୍ଜିତ ହୋଇଥାଏ ।

ନିମ୍ବାର୍କଙ୍କ ମତରେ ସଚ୍ଚିଦାନନ୍ଦ ବିଗ୍ରହ, ରସ ସ୍ୱରୂପ ଚିର କିଶୋର ଶ୍ରୀକୃଷ୍ଣ ହେଉଛନ୍ତି ପରବ୍ରହ୍ମ ଏବଂ ତାଙ୍କ ବାମ ଭାଗରେ ଅବସ୍ଥାନ କରୁଥିବା ଶ୍ରୀରାଧା ତାଙ୍କର ଶକ୍ତି । ଏଠାରେ ସ୍ମରଣ କରିବାକୁ ହେବ ଯେ ବୈଷ୍ଣବାଚାର୍ଯ୍ୟମାନଙ୍କ ମଧ୍ୟରୁ ସର୍ବ ପ୍ରଥମେ ନିମ୍ବାର୍କ ନାରାୟଣଙ୍କ ସ୍ଥାନରେ ଶ୍ରୀକୃଷ୍ଣଙ୍କୁ ପରବ୍ରହ୍ମ ରୂପେ ଓ ଲକ୍ଷ୍ମୀଙ୍କ ସ୍ଥାନରେ ଶ୍ରୀରାଧାଙ୍କୁ ତାଙ୍କ ଶକ୍ତି ରୂପେ ବୈଷ୍ଣବ ଧର୍ମ ଦର୍ଶନ ଜଗତରେ ଅବତାରଣ କରାଇଛନ୍ତି । ଏହିଠାରୁ ହିଁ ବୈଷ୍ଣବଧର୍ମର ପରମ୍ପରାକୁ ଛାଡି ବାସୁଦେବ କୃଷ୍ଣଙ୍କ ସ୍ଥାନରେ ଗୋପାଳକୃଷ୍ଣଙ୍କର ଓ ଲକ୍ଷ୍ମୀଙ୍କ ସ୍ଥାନରେ ଶ୍ରୀରାଧାଙ୍କର ପ୍ରବେଶ ଓ ପ୍ରତିଷ୍ଠା ହୋଇଥିଲା । ନିମ୍ବାର୍କପନ୍ଥୀ ଶ୍ରୀଜୟଦେବ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଶ୍ରୀଗୀତଗୋବିନ୍ଦ ରଚନା କରି ସେଥିରେ ରାଧାକୃଷ୍ଣଙ୍କ ମଧୁର ପ୍ରେମଲୀଳାର ଅବତାରଣା କରିଥିଲେ ।

## ରୁଦ୍ର ସମ୍ପ୍ରଦାୟ ବା ବଲ୍ଲଭ ସମ୍ପ୍ରଦାୟ-

ବଲ୍ଲଭ ସମ୍ପ୍ରଦାୟ ବୈଷ୍ଣବ ଧର୍ମ ଜଗତରେ ରୁଦ୍ର ସମ୍ପ୍ରଦାୟ ଭାବେ ପରିଚିତ । ପଦ୍ମ ପୁରାଣର ବର୍ଣ୍ଣନାନୁଯାୟୀ ବିଷ୍ଣୁସ୍ୱାମୀ (ଖ୍ରୀ ଅ ୧୨୩୫- ୧୨୯୭) ବଲ୍ଲଭ ସମ୍ପ୍ରଦାୟର ପ୍ରଥମ ଆଚାର୍ଯ୍ୟ । ତେଣୁ ଅନେକ ବଲ୍ଲଭ

ସମ୍ପ୍ରଦାୟକୁ ବିଷ୍ଣୁସ୍ୱାମୀ ସମ୍ପ୍ରଦାୟ ମଧ୍ୟ କହିଥାଆନ୍ତି । ବିଷ୍ଣୁସ୍ୱାମୀ ୧୪୭୯ ଖ୍ରୀ. ଅରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ରଚିତ ପ୍ରସିଦ୍ଧ ଗ୍ରନ୍ଥମାନ ହେଉଛି - ୧- ବ୍ରହ୍ମସୂତ୍ରର ଅଣୁଭାଷ୍ୟ, ୨- ତତ୍ତ୍ୱଦୀପ ନିବନ୍ଧ (ଭାଗବତ ତତ୍ତ୍ୱ ପ୍ରଖ୍ୟାପକ), ୩- ସୁବୋଧିନୀ (ଭାଗବତରେ ୧ମ, ୨ୟ, ୩ୟ, ଓ ୧୦ମ ସ୍କନ୍ଧ ଉପରେ ଟୀକା), ୪- ଭାଗବତସୂକ୍ଷ୍ମ ଟୀକା ୫- ପୂର୍ବ ମୀମାଂସାଭାଷ୍ୟ ୬- ସିଦ୍ଧାନ୍ତ ମୁକ୍ତାବଳୀ ଅନ୍ୟାନ୍ୟ ବୈଷ୍ଣବାଚାର୍ଯ୍ୟମାନଙ୍କ ପରି ସେ ବ୍ରହ୍ମ, ଜୀବ, ଜଗତ୍ ଓ ସାଧନା ମାର୍ଗ ସମ୍ବନ୍ଧରେ ନିଜର ଦାର୍ଶନିକ ମତ ଉପସ୍ଥାପନ କରିଛନ୍ତି ।

ବଲ୍ଲଭଙ୍କର ଦାର୍ଶନିକସିଦ୍ଧାନ୍ତକୁ ଶୁଦ୍ଧାଦ୍ୱୈତବାଦ କୁହାଯାଇଥାଏ । କାରଣ ସେ ମାୟା ସହିତ ଅଲିପ୍ତ ଶୁଦ୍ଧବ୍ରହ୍ମଙ୍କର ଅଦ୍ୱୈତତତ୍ତ୍ୱକୁ ପ୍ରତିପାଦନ କରିଛନ୍ତି । ବ୍ରହ୍ମଙ୍କର ସ୍ୱରୂପ ନିର୍ଦ୍ଧାରଣ କରି ସେ କହିଛନ୍ତି । ଅପ୍ରାକୃତ ଗୁଣଯୁକ୍ତ ଅଖିଳରସାମୃତ ମୂର୍ତ୍ତି ନିଖିଳ ଲୀଳାଧାମ ଶ୍ରୀକୃଷ୍ଣ ହେଉଛନ୍ତି ପରବ୍ରହ୍ମ । ଏହି ଦୃଶ୍ୟମାନ ଜଗତ ତାଙ୍କ ଲୀଳାର ପ୍ରକାଶ ମାତ୍ର, କାରଣ ସେ ଲୀଳାମୟ । ଜୀବ, ଜଗତ ଓ ବ୍ରହ୍ମ ମଧ୍ୟରେ ଏକତ୍ୱ ପ୍ରତିପାଦନ କରିବାକୁ ଯାଇ ସେ ବ୍ରହ୍ମଙ୍କର ତିନୋଟି ରୂପରେ ଅବତାରଣା କରିଛନ୍ତି । ତାହା ହେଉଛି —

୧- ଆଧିଦୈବିକ - ପରବ୍ରହ୍ମ (ଶ୍ରୀକୃଷ୍ଣ)

୨- ଆଧ୍ୟାତ୍ମିକ - ଅକ୍ଷର ବ୍ରହ୍ମ (ଜୀବ)

୩- ଆଧିଭୌତିକ - କ୍ଷର ବ୍ରହ୍ମ (ଜଗତ୍)

ବଲ୍ଲଭ ପରିଣାମ ବାଦ ବିଶ୍ୱାସୀ ଥିଲେ । ସେଥିପାଇଁ ସେ ସୃଷ୍ଟି ସମ୍ବନ୍ଧୀୟ ଦର୍ଶନର ଅବତାରଣା ବେଳେ ଜୀବ ଓ ଜଗତ୍‌କୁ ବ୍ରହ୍ମଙ୍କର ପରିଣତି (ଅର୍ଥାତ୍ ପରବ୍ରହ୍ମ ଲୀଳା କରିବା ମାନସରେ ଜୀବ ଓ ଜଗତରେ ପରିଣତ ହୋଇଛନ୍ତି) ବୋଲି କହିଛନ୍ତି । ତାଙ୍କ ମତରେ ଜଗତ୍‌ର ସୃଷ୍ଟି ସ୍ଥିତି ଓ ସଂହାର ହେଉଛି ପରବ୍ରହ୍ମଙ୍କର ଲୀଳା ବିଳାସ ମାତ୍ର । ସେ ନିଜ ମାୟାବଳରେ ଜଗତ୍ ସୃଷ୍ଟି କରି ସେଥିରେ କ୍ରୀଡ଼ା କରନ୍ତି ଏବଂ ଶେଷରେ ସଂହାର କରନ୍ତି । ଏହି ଜଗତ୍ ଓ ଜୀବ ବ୍ରହ୍ମଙ୍କର ଅନ୍ୟରୂପ ହୋଇଥିବାରୁ

ବ୍ରହ୍ମଙ୍କ ସ୍ୱରୂପ ତାହା ନୁହେଁ । କେବଳ ଜଗତର କାର୍ଯ୍ୟକ ଭକ୍ତି, ଅନୁଗ୍ରହ ଓ ପୁଷ୍ଟି (ପ୍ରେମମାର୍ଗ)କୁ ମଧ୍ୟ ସେ ଈଶ୍ୱରଙ୍କର ଲୀଳା ବୋଲି କହିଛନ୍ତି । ଜୀବକୁ ଅନୁଗ୍ରହ କରି ମୁକ୍ତି ଦେବାପାଇଁ ସେ ଭୂତଳରେ ଅବତୀର୍ଣ୍ଣ ହୁଅନ୍ତି । ଯେଉଁ ଜୀବ ଭଗବାନ୍‌ଙ୍କର ଶରଣାପନ୍ନ ହୁଏ, ତାହା ଅନ୍ତରରେ ଯେଉଁ ଭକ୍ତି ଓ ପୁଷ୍ଟିର ଉଦୟ ହୁଏ, ତାହା ମଧ୍ୟ ଈଶ୍ୱରଙ୍କର ଲୀଳାମାନ ।

ଜୀବ (ଅକ୍ଷର ବ୍ରହ୍ମ) : ବଲ୍ଲଭଙ୍କ ମତରେ ପରବ୍ରହ୍ମ ହେଉଛନ୍ତି ସଚ୍ଚିଦାନନ୍ଦ ବିଗ୍ରହ ଅର୍ଥାତ୍ ସତ୍, ଚିତ୍ ଓ ଆନନ୍ଦର ଆଧାର । ପରବ୍ରହ୍ମଙ୍କର ରମଣ କରିବାର ଇଚ୍ଛା ଉତ୍ପନ୍ନ ହେଲେ, ସେ ସତ୍-ଚିତ୍-ଆନନ୍ଦରୁ ଆନନ୍ଦାଂଶକୁ ତିରୋହିତ କରି କେବଳ ଚିଦଂଶକୁ ନେଇ ଅକ୍ଷରବ୍ରହ୍ମ ଅର୍ଥାତ୍ ଜୀବରେ ପରିଣତ ହୁଅନ୍ତି । ବ୍ରହ୍ମ ଚିଦଂଶକୁ ନେଇ ଜୀବ ରୂପରେ ପରିଣତ ହେଲା ବେଳେ ତାଙ୍କର ଚିଦଂଶ ସେହିଭଳି ଅବିକୃତ ଥାଏ, ଏଥିରେ କିଛି ପରିବର୍ତ୍ତନ ଘଟେନାହିଁ । ବ୍ରହ୍ମଙ୍କଠାରୁ ଜୀବର ଉଦୟକୁ ସେ ଅଗ୍ନି ସ୍ଫୁଲିଙ୍ଗବତ୍ (ଅଗ୍ନିରୁ ଅଗ୍ନିକଣା ବିଚ୍ଛୁରିତ ହେଲପରି) କହିଛନ୍ତି । ତେଣୁ ଜୀବ ବା ଅକ୍ଷର ବ୍ରହ୍ମ, ପରବ୍ରହ୍ମଙ୍କ ଭଳି ନୁହେଁ । ଜୀବ ପରବ୍ରହ୍ମଙ୍କର ଚିଦଂଶରୁ ନିର୍ଗମିତ ହେଲା ବେଳେ ସେଥିରେ ଆନନ୍ଦାଂଶ ନଥିବାରୁ ଜୀବ ସଂସାରରେ ଦୁଃଖପ୍ରାପ୍ତ ହୋଇଥାଏ । ଏହି ଚିଦଂଶରେ ପରବ୍ରହ୍ମଙ୍କର ଐଶ୍ୱର୍ଯ୍ୟ ନଥିବାରୁ ଜୀବ ଦୀନତାକୁ, ଯଶ ନ ଥିବାରୁ ହୀନତାକୁ ଓ ଶ୍ରୀ ନଥିବାରୁ ସମସ୍ତ ବିପତ୍ତିକୁ, ଜ୍ଞାନ ନଥିବାରୁ ଦେହାଦିରେ ଆତ୍ମବୁଦ୍ଧି ଜ୍ଞାନକୁ ପ୍ରାପ୍ତ ହୋଇଥାଏ ବଲ୍ଲଭଙ୍କ ମତରେ ଜୀବ ଜ୍ଞାତା, ଜ୍ଞାନସ୍ୱରୂପ ଓ ଅଣୁରୂପ ଅଟେ । ଜୀବକୁ ସେ ଶୁଦ୍ଧ, ମୁକ୍ତ ଓ ସଂସାରୀ ଭେଦରେ ୩ ପ୍ରକାର ବିଭକ୍ତ କରିଛନ୍ତି । ପରବ୍ରହ୍ମଙ୍କ ଚିଦଂଶରୁ ବିଚ୍ଛୁରିତ ହୋଇ ଅବିଦ୍ୟାକୁ ପ୍ରାପ୍ତ ହେବାର ପୂର୍ବବର୍ତ୍ତୀ ଅବସ୍ଥା ହେଉଛି ଶୁଦ୍ଧାବସ୍ଥା, ସଂସାରରେ ପ୍ରବେଶ କରି ଅବିଦ୍ୟାକୁ ପ୍ରାପ୍ତହେବା ହେଉଛି ତାହାର ସଂସାରୀ ଅବସ୍ଥା ଓ ପୁଷ୍ଟିମାର୍ଗ ଆଶ୍ରୟରେ ଭଗବାନ୍‌ଙ୍କର ଅନୁଗ୍ରହଲାଭ କରି ଜୀବଠାରେ ପରବ୍ରହ୍ମଙ୍କ ଆନନ୍ଦାଂଶର ପ୍ରାଦୁର୍ଭାବ ହେବା ଓ ସଚ୍ଚିଦାନନ୍ଦ ଅବସ୍ଥା ପ୍ରାପ୍ତ ହେବାକୁ ଜୀବର ମୁକ୍ତାବସ୍ଥା କୁହାଯାଇଥାଏ । ସଂସାରୀ-ଜୀବକୁ ସେ ଦୈବ ଓ ଆସୁର ଭେଦରେ ଦୁଇ ଭାଗରେ ବିଭକ୍ତ କରିଛନ୍ତି ।

**ଜଗତ୍ :** ସୁନା ଯେପରି କେୟୁର, କୁଣ୍ଡଳ ଓ କଙ୍କଣ ଆଦି ବିଭିନ୍ନ ରୂପରେ ପରିଣତ ହୋଇ ମଧ୍ୟ ଅବିକୃତ ଥାଏ, ବ୍ରହ୍ମ ସେହିପରି ଜଗତରେ ପରିଣତ ହୋଇ ଅବିକୃତ ରହନ୍ତି ବୋଲି ବଲ୍ଲଭ ମତଦାନ କରିଛନ୍ତି ପରବ୍ରହ୍ମ ଲୀଳାକରିବା ମାନସରେ ତାଙ୍କ ସତ୍ ଅଂଶକୁ ଭୌତିକ ପଦାର୍ଥ ଓ ଜଗତ୍‌ରେ ପରିଣତ କରନ୍ତି । ଅର୍ଥାତ୍ ସମସ୍ତ ଭୌତିକ ପଦାର୍ଥ ପରବ୍ରହ୍ମଙ୍କ ସତ୍ ଅଂଶକୁ ଭୌତିକ ପଦାର୍ଥ ପରବ୍ରହ୍ମଙ୍କ ସତ୍ ଅଂଶରୁ ଉଦୟ ହୁଏ । ଏଥିରେ ତାଙ୍କର ଚିତ୍ ଅଂଶ ନ ଥିବାରୁ ତାହା ଜଡ଼ ହୋଇ ଥାଏ । ସେହିଭଳି ସେଥିରେ ଆନନ୍ଦାଂଶ ନ ଥିବାରୁ ଭୌତିକ ପଦାର୍ଥ ଆନନ୍ଦ ବିହୀନ ହୋଇଥାଏ । ଜଗତ୍ ବ୍ରହ୍ମଙ୍କ ସତ୍ ଅଂଶରୁ ଉଦୟ ହୋଇ ଥିବାରୁ ଏହା ବ୍ରହ୍ମଙ୍କ ଭଳି ନିତ୍ୟ । ତେଣୁ ବଲ୍ଲଭ ଜଗତ୍‌ର ସୃଷ୍ଟି ଓ ବିନାଶ କୁ କହି ଆବିର୍ଭାବ ଓ ତିରୋଭାବ କହିଛନ୍ତି । ତାଙ୍କ ମତରେ ଜଗତ୍ ହେଉଛି ବ୍ରହ୍ମମୟ । ଉପନିଷଦ୍ ମଧ୍ୟ କହେ 'ସର୍ବଂ ଖଳ୍ୱିଦଂ ବ୍ରହ୍ମ ।' ବଲ୍ଲଭ ଜଗତ ଓ ସଂସାରକୁ ପୃଥକ ବୋଲି କହିଛନ୍ତି । ଜଗତ୍ ହେଉଛି ବ୍ରହ୍ମଙ୍କର ସଦଂଶର ପରିଣତି । ଏଥିରେ ଜୀବ କଳ୍ପିତ ପଞ୍ଚ ଅବିଦ୍ୟା (ସ୍ୱରୂପ ଜ୍ଞାନ, ଦେହାଧ୍ୟାସ ଇନ୍ଦ୍ରିୟାଧ୍ୟାସ, ପ୍ରାଣାଧ୍ୟାସ ଓ ଅନ୍ତଃ କରଣାଧ୍ୟାସ)ର ସଂଯୋଗ ହେଲେ ତାହା ସଂସାର ହୋଇଥାଏ । ଜୀବଠାରେ ଜ୍ଞାନର ଉଦୟ ହେଲେ ପଞ୍ଚ ଅବିଦ୍ୟାର ନାଶ ଓ ପଞ୍ଚ ଅବିଦ୍ୟା ନାଶରେ ସଂସାର ନାଶ ହୋଇଥାଏ । ଜଗତ୍‌ର କିନ୍ତୁ ବିନାଶ ଘଟେ ନାହିଁ କାରଣ ତାହା ନିତ୍ୟ ପଦାର୍ଥ । ବଲ୍ଲଭଙ୍କ ମତରେ କ୍ଷର ବ୍ରହ୍ମ ଜଗତ ବା ପ୍ରକୃତି) ଠାରୁ ଅକ୍ଷର ବ୍ରହ୍ମ (ପୁରୁଷ ବା ଜୀବ) ଶ୍ରେଷ୍ଠ । ଅକ୍ଷର ବ୍ରହ୍ମଙ୍କଠାରୁ ପରବ୍ରହ୍ମ (ପୁରୁଷୋତ୍ତମ) ଶ୍ରେଷ୍ଠ ।

**ସାଧନା ମାର୍ଗ -** ବଲ୍ଲଭାଚାର୍ଯ୍ୟ ମର୍ଯ୍ୟାଦାମାର୍ଗ ଓ ପୁଷ୍ଟିମାର୍ଗ ଭେଦରେ ସାଧନା ମାର୍ଗକୁ ଦ୍ୱିବିଧ ଭାବେ ଅବତାରଣା କରି ପୁଷ୍ଟିମାର୍ଗକୁ ଶ୍ରେଷ୍ଠ, କଲ୍ୟାଣକର ଓ ମୁକ୍ତି ପ୍ରଦାୟକ କହିଛନ୍ତି । ବୈଦିକ ରୀତିରେ କର୍ମ ସାଧନ ଓ ଜ୍ଞାନମାର୍ଗରେ ବ୍ରହ୍ମଜ୍ଞାନ ଲାଭକୁ ସେ ମର୍ଯ୍ୟାଦାମାର୍ଗ କହିଛନ୍ତି । ଜ୍ଞାନ-ମାର୍ଗଦ୍ୱାରା ଅକ୍ଷର ବ୍ରହ୍ମଙ୍କୁ ଲାଭ କରି ହୋଇଥାଏ । ଅର୍ଥାତ୍ ଆତ୍ମସ୍ୱରୂପ ଉପଲବ୍ଧି ହୋଇଥାଏ ବା ଆତ୍ମଜ୍ଞାନ ଲାଭ ହୋଇଥାଏ । ପରବ୍ରହ୍ମ ବା

ପୁରୁଷୋତ୍ତମଙ୍କୁ ଲାଭ କରିବା ପାଇଁ ପୁଷ୍ଟିମାର୍ଗର ଅବଲମ୍ବନ ଏକମାତ୍ର ଉପାୟ । ସର୍ବତୋଭାବରେ ଆତ୍ମ ସମର୍ପଣ ଏବଂ ବ୍ରଜଲଲନା ରାଗାତ୍ମିକା ପ୍ରୀତିଦ୍ୱାରା ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କର ଅଧରାମୃତ ଲାଭ କରିବାର ମାର୍ଗ ହେଉଛି ପୁଷ୍ଟି ମାର୍ଗ ।

ପୁଷ୍ଟି ମାର୍ଗ ଆଶ୍ରୟରେ ସାଧନ କଲେ ଆନନ୍ଦ ସ୍ୱରୂପ ପରବ୍ରହ୍ମ ପରବ୍ରହ୍ମ ଶ୍ରୀକୃଷ୍ଣ ପ୍ରକଟିତ ହୋଇ ଜୀବଠାରେ ସ୍ୱସ୍ୱରୂପ ଆନନ୍ଦାଂଶର ସଞ୍ଚାର କରନ୍ତି । ଏହା ଫଳରେ ଜୀବ ଆନନ୍ଦମୟ ହୋଇଥାଏ । ଏହାହିଁ ତାହାର ପୂର୍ଣ୍ଣତା ଓ ମୁକ୍ତି । ଏହାକୁ ସ୍ୱରୂପାପତ୍ତି କୁହାଯାଇଥାଏ । କ୍ଳେଶ ପୂର୍ଣ୍ଣ ସଂସାରର ଦୁଃଖରୁ ମୁକ୍ତିଲାଭ କରି ତାର ଆନନ୍ଦ ସ୍ୱରୂପରେ ଅବସ୍ଥାନ କରିବାର ଏହାହିଁ ଏକମାତ୍ର ଉପାୟ ବୋଲି ବଲ୍ଲଭ କହିଛନ୍ତି । ସେଥିପାଇଁ ସେ ଗୋପୀକୃଷ୍ଣଙ୍କର ବ୍ରଜଲଲନା ରାଗାତ୍ମିକା ପ୍ରୀତିର ବିଶଦ ଆଲୋଚନା ତାଙ୍କ ଗ୍ରନ୍ଥରେ କରିଛନ୍ତି ।

## ସହଜିଆ ବୈଷ୍ଣବ ଧର୍ମ ଓ ଶ୍ରୀଚୈତନ୍ୟ ସମ୍ପ୍ରଦାୟ

ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବଧର୍ମ-ଦର୍ଶନର ଅବତାରଣା ପୂର୍ବରୁ ସହଜିଆ ବୈଷ୍ଣବଧର୍ମର ଅଭ୍ୟୁଦୟ ଓ ତାହାର ସାଧନା ପ୍ରଣାଳୀ ସମ୍ବନ୍ଧରେ ସମ୍ୟକ ସୂଚନା ଦେବା ପ୍ରାସଙ୍ଗିକ ମନେହୁଏ । କାରଣ ରାଧାକୃଷ୍ଣ ପ୍ରେମରେ ପରକୀୟା ଭାବର ଆରୋପ, ରାଧାକୃଷ୍ଣ ଶୃଙ୍ଗାରଲୀଳା ବର୍ଣ୍ଣନାରେ ଅସଙ୍କୋଚ ଭାବ ଓ ରାଧାକୃଷ୍ଣ ମିଳନରୁ ଉତ୍ପନ୍ନ ମଧୁର ରସର ଆସ୍ୱାଦନ, କୃଷ୍ଣଙ୍କୁ ମଦନ ରୂପରେ ଉପାସନା, 'କ୍ଳୀଂ' କାମ ବୀଜକୁ କୃଷ୍ଣଙ୍କର ସ୍ୱରୂପ ରୂପେ ଗ୍ରହଣ କରିବା, କାମ ଗାୟତ୍ରୀ ଓ ଯୁଗଳଗାୟତ୍ରୀ ମନ୍ତ୍ର ଜପକୁ ଗୁରୁତ୍ୱ ଦେବା ଇତ୍ୟାଦି କେତେକ ତତ୍ତ୍ୱ ଉଭୟ ସହଜିଆ ବୈଷ୍ଣବଧର୍ମ ଓ ଶ୍ରୀ ଚୈତନ୍ୟ ସମ୍ପ୍ରଦାୟରେ ଦେଖିବାକୁ ମିଳିଥାଏ । କେବଳ ସେତିକି ନୁହେଁ ରାୟ ରାମାନନ୍ଦଙ୍କୁ ମଧ୍ୟ ଚୈତନ୍ୟ ଚନ୍ଦ୍ରୋଦୟ ନାଟକରେ ସହଜ ବୈଷ୍ଣବ ବୋଲି ଉଲ୍ଲେଖ କରାଯାଇଛି । ('ମହାରାଜ ସଖ୍ୟେତ୍ତ ସହଜ ବୈଷ୍ଣବ ଭବତି') ପୁନଶ୍ଚ ରୂପ ଗୋସ୍ୱାମୀ ଓ ରାୟ

ବିମାନନ୍ଦଙ୍କ କଥୋପ କଥନ ମଧ୍ୟରେ ସହଜ ପ୍ରେମ ବିଷୟ ଉତ୍ଥାପିତ ହୋଇଥିବା ବିଷୟ ନିମ୍ନ ଉକ୍ତିରୁ ମଧ୍ୟ ଜଣାଯାଇଥାଏ ଯଥା—

"ଗାୟକ ହେ-କହ ସହଜ ପ୍ରେମର ଲକ୍ଷଣ
ରୂପ ଗୋସାଇଁ କହେ-ସାହଜିକ ପ୍ରେମ ଧର୍ମ ।"

( ଶ୍ରୀଚୈତନ୍ୟ ଚରିତାମୃତ, ଅନ୍ତ୍ୟଲୀଳା, ୧/ପୃ ୬୨୧ )

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସହଜଯାନ ବୌଦ୍ଧଧର୍ମ ଓ ସହଜପ୍ରେମ ପ୍ରଭୃତିରେ ଯେଉଁ 'ସହଜ' ଶବ୍ଦର ପ୍ରୟୋଗ କରାଯାଇଛି, ତାହା 'ସହଜାତ' ଅର୍ଥରେ ଗୃହୀତ । ସହଜାତକୁ ସହଜାତ ପ୍ରବୃତ୍ତି ବା ସହଜାତ ସୁଖ ବା ସହଜାତ ଆନନ୍ଦ ଉଦ୍ଦେଶ୍ୟରେ ମଧ୍ୟ ପ୍ରୟୋଗ କରାଯାଇପାରେ । ମନୁଷ୍ୟର ଯେତେଗୁଡ଼ିଏ ସହଜାତ ପ୍ରବୃତ୍ତି ରହିଛି, ତାହା ମଧ୍ୟରୁ କାମ ପ୍ରବୃତ୍ତି ଏକ ବଳବତ୍ତର ପ୍ରବୃତ୍ତି । ଏଥିରୁ ଯେଉଁ ଆନନ୍ଦ ବା ସୁଖ ମିଳିଥାଏ, ତାହା ସର୍ବଶ୍ରେଷ୍ଠ ସହଜାତ ଆନନ୍ଦ ଭାବେ ଗ୍ରହଣ କରାଯାଇଛି । ବ୍ୟାକୁଳତା ଉତ୍ପାଦକ ଭାବ, ରାଗ ଆଦି ଯାହାଙ୍କଠୁ ମନୁଷ୍ୟର ହୃଦୟକୁ ତରଳିତ ଓ କୋମଳ କରିଥାଏ, ସେ ସବୁର ମୂଳ ହେଉଛି କନ୍ଦର୍ପ ଭାବ । ମନୁଷ୍ୟର ସମସ୍ତ କାମନା ଓ କର୍ମକୁ ନିୟନ୍ତ୍ରଣ କରୁଥିବାରୁ ଏହାର ଅନ୍ୟ ନାମ କାମ । ଏହା ଯେତିକି ସୁଖ ଦିଏ, ସେତିକି ମଧ୍ୟ ଦୁଃଖ ଦେଇଥାଏ । ସେଥିପାଇଁ ବୁଦ୍ଧଦେବ କହିଥିଲେ କାମନାର ବିନାଶରେ ଦୁଃଖର ବିନାଶ । କାମ ବା ମାରକୁ ଜୟ କରିବାପାଇଁ ବୁଦ୍ଧଦେବ ବାରମ୍ବାର ଉପଦେଶ ଦେଇଛନ୍ତି । କିନ୍ତୁ ଏଭଳି କଠୋର ସଂଯମ କେତେକ ବୌଦ୍ଧଭିକ୍ଷୁମାନଙ୍କ ମଧ୍ୟରେ ବିଦ୍ରୋହ ସୃଷ୍ଟି କରିଥିଲା । ସେଥିପାଇଁ ବୁଦ୍ଧଙ୍କ ଜୀବଦ୍ଦଶାରେ କେତେକ ବୌଦ୍ଧଭିକ୍ଷୁ ଗୋପନରେ ତନ୍ତ୍ରର ଗୁହ୍ୟ ସମାଜ ( ଯେଉଁଠାରେ ନାରୀ ସହିତ ସମ୍ଭୋଗ କରି ସାଧନା କରିବାକୁ ହୋଇଥାଏ)ରେ ଯୋଗ ଦେଇଥିଲେ ଓ ବୁଦ୍ଧଙ୍କ ତିରୋଧାନ ପରେ ପ୍ରବୃତ୍ତି ପ୍ରବଣ ବୌଦ୍ଧଭିକ୍ଷୁମାନେ ବୌଦ୍ଧଧର୍ମର ଅନ୍ୟ ଏକ ଶାଖା ସୃଷ୍ଟି କରି ସେଥିରେ ଶୃଙ୍ଗାର ମିଶ୍ରିତ ତନ୍ତ୍ର ସାଧନା, (ଯେଉଁଥିରେ ପ୍ରଜ୍ଞା (ନାରୀ) ଗ୍ରହଣ କରି ତାହା ସାହାଯ୍ୟରେ

ଯୌନ ସାଧନା କରିବାକୁ ହୋଇଥାଏ) ପ୍ରଚଳନ କରିଥିଲେ । ଫଳରେ ବାମାଗ୍ରର ତନ୍ତ୍ର ବୌଦ୍ଧଧର୍ମର ଶିରା ପ୍ରଶିରାରେ ପ୍ରବେଶ କଲାରୁ ତାହା ଭଗ ଭଗ ହୋଇପଡ଼ିଥିଲା । ସେଥିମଧ୍ୟରୁ ବଜ୍ରଯାନ ଓ ସହଜ ଯାନ ବୌଦ୍ଧଧର୍ମର ପ୍ରସଙ୍ଗ ଏଠାରେ ଉଲ୍ଲେଖଯୋଗ୍ୟ । ବୁଦ୍ଧଦେବ ଶୂନ୍ୟତା ଓ କରୁଣା ସାହାଯ୍ୟରେ ନିର୍ବାଣ ଲାଭ ପାଇଁ ଯେଉଁ ମାର୍ଗ ନିର୍ଦ୍ଦେଶ କରିଥିଲେ ତାହାକୁ ବଜ୍ରଯାନୀ ଓ ସହଜଯାନୀ ବୌଦ୍ଧମାନେ ଅନ୍ୟ ଅର୍ଥରେ ଗ୍ରହଣ କରିଥିଲେ । ବଜ୍ରଯାନୀମାନେ ନିର୍ବାଣକୁ ବଜ୍ରସତ୍ତ୍ୱ ଓ ସହଜଯାନୀ ବୌଦ୍ଧମାନେ ସହଜାନଂଦ ଓ ମହାସୁଖ ଆଖ୍ୟା ଦେଇଥିଲେ । ନିର୍ବାଣ ବା ବଜ୍ରସତ୍ତ୍ୱ ବା ମହାସୁଖ ପାଇଁ ଉଭୟ ଯାନର ଏକପ୍ରକାର ପନ୍ଥା ମଧ୍ୟ ନିର୍ଦ୍ଦେଶିତ ହୋଇଥିଲା । ବଜ୍ରଯାନର 'ଅଦ୍ୱୟ ବଜ୍ରସଂଗ୍ରହ' ନାମକ ଗ୍ରନ୍ଥର ପ୍ରେମପଞ୍ଚକରେ ଶୂନ୍ୟତା ଓ କରୁଣାର ମିଳନକୁ ଦମ୍ପତି ରୂପେ ଗ୍ରହଣ କରାଯାଇଛି । ଯଥା—

"ପ୍ରଜ୍ଞା ସୌ ବରଃକାନଃ ପ୍ରଜ୍ଞାତୌପ୍ରାଦ ମାନକଃ
ନସ୍ୟାତ୍ ଯଦ୍ଧ ମୃତୈ୍ୟବ ସ୍ୟାତ୍ ଶୂନ୍ୟତା କାମିନୀ ମତା ।"

ଏମାନଙ୍କର ମିଳନରୁ ବଜ୍ରସତ୍ତ୍ୱ (ନିର୍ବାଣ) ଉତ୍ପନ୍ନ ହୁଏ ବୋଲି କୁହାଯାଇଛି ଓ ସେହି ବଜ୍ରସତ୍ତ୍ୱ ଲାଭର ଉପାୟ ଭାବେ ମୈଥୁନାଚରଣକୁ ନିର୍ଦ୍ଦେଶ କରାଯାଇଛି । ସହଜଯାନୀ ବୌଦ୍ଧମାନେ ମଧ୍ୟ ସାଙ୍କେତିକ ଭାବେ ସେମାନଙ୍କ ରଚନାରେ ଅନୁରୂପ ମତପ୍ରଦାନ କରିଛନ୍ତି । ବୌଦ୍ଧକୌଳତନ୍ତ୍ର ଅନ୍ତର୍ଗତ କୁମାରୀ ତନ୍ତ୍ରରେ ଜଗତକୁ ସ୍ତ୍ରୀମୟ ଓ ଲକ୍ଷ୍ୟସିଦ୍ଧି ପାଇଁ ଯେକୌଣସି ସ୍ତ୍ରୀ ସହିତ ଯୌନ ସଙ୍ଗମ କରିବା ନିମନ୍ତେ ନିର୍ଦ୍ଦେଶିତ ହୋଇଛି ।

ମୁଦ୍ରା ଲିଙ୍ଗ ନ ସଯୋଗାଦ୍ ବଜ୍ରାବେଶ ପ୍ରବର୍ତ୍ତନାତ୍
ସର୍ବୀରାଧର ପାଛ ଚକ୍ରଣ୍ଠ ଧ୍ୱନି ଘପନାତ୍ ।
ବିପୁଳାନନ୍ଦ ସମ୍ଭୋଗାତ୍ ଚଦୁରୁ ସ୍ଫୋଟନାତ୍ ଧ୍ରୁବମ୍
ନ ଚରାନ୍ତନଥୋ ରାଜା ବଜ୍ରସତ୍ତ୍ୱଃ ପ୍ରସିଧ୍ୟତି ।"
(ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି, ପଞ୍ଚମ ପରିଚ୍ଛେଦ)

ଏହି ସାଧନା ହେଉଛି ବାମାଚାରୀ ବୌଦ୍ଧ ତନ୍ତ୍ରର ବିଷୟ ।

ବୌଦ୍ଧତନ୍ତ୍ର ବ୍ୟତୀତ ହିନ୍ଦୁତନ୍ତ୍ରର ବାମାଚାରର ପଦ୍ଧତିରେ ନିଶାର୍ଦ୍ଧରେ ଚକ୍ରପୂଜା (ଗୋଟିଏ ସାଧକ ସହ ଗୋଟିଏ ସାଧିକା ସଙ୍ଗିନୀ ଏହି କ୍ରମରେ ଅନେକ ଯୁଗଳ ସାଧକ ସାଧିକା ଚକ୍ରାକାରରେ ବସି ତନ୍ତ୍ର ସାଧନା କରିବା) ଏବଂ ଗୁହ୍ୟ ସମାଜର ଗୁହ୍ୟ ସାଧନା [ଗୁପ୍ତରେ ନାରୀ ସମ୍ଭୋଗ ପୂର୍ବକ ତନ୍ତ୍ର ସାଧନା]ରେ ମୈଥୁନ-ଯୋଗ ସାଧନା ବିଷୟ ରହିଛି । ସେ ଯାହା ହେଲେ ମଧ୍ୟ ମନୁଷ୍ୟର ବଳବତ୍ତର କାମ ପ୍ରବୃତ୍ତିକୁ ବଳପୂର୍ବକ ଦମନ ନ କରି ତାହାର ଉପଯୋଗରେ ପରମାନନ୍ଦ ରୂପକ ସିଦ୍ଧିଲାଭ କରିବାର ପ୍ରଥା ଉଭୟ ହିନ୍ଦୁତନ୍ତ୍ର ଓ ବୌଦ୍ଧତନ୍ତ୍ରରେ ଥିଲା । ଏହା ପ୍ରାୟ ଖ୍ରୀଷ୍ଟୀୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀରୁ ବହୁ ପ୍ରସାରିତ ହୋଇଥିଲା ।

ସହଜାତ କାମ ପ୍ରବୃତ୍ତି କେବଳ ନାରୀ ସମ୍ଭୋଗରେ ଆତ୍ମ ପ୍ରକାଶ କରି ନଥାଏ ; ଏହା ବାତ୍ସଲ୍ୟ ସ୍ନେହ, ସଖ୍ୟସ୍ନେହ, ଭକ୍ତିସ୍ନେହରେ ମଧ୍ୟ ରୂପାନ୍ତରିତ ହୋଇଥାଏ । ଏହାକୁ ପ୍ରେମ ଆଖ୍ୟା ଦିଆଯାଇଥାଏ । ମନୁଷ୍ୟର ଏହି ସହଜାତ ପ୍ରେମଭାବ ରାଗ ଓ ଆସକ୍ତିର କାରଣ ହୋଇଥାଏ । ଆସକ୍ତି ସାଂସାରିକ ବନ୍ଧନର କାରଣ ହୁଏ । ଏହାକୁ ବଳପୂର୍ବକ ସଂଯମ କଲେ, ତାହା ଦ୍ୱିଗୁଣ ଭାବରେ ବା ଅନ୍ୟ ମାନସିକ ବିକୃତିରେ ଆତ୍ମ ପ୍ରକାଶ କରେ । ତେଣୁ ଏହାକୁ ଦମନ ନକରି ଆଧ୍ୟାତ୍ମିକ ବିକାଶରେ କିପରି ଉପଯୋଗ କରାଯିବ, ତାହାର ଉପାୟ ମଧ୍ୟ ଏକଦା ଉଦ୍ଭାବିତ ହୋଇଥିଲା । ମନୁଷ୍ୟ ତା'ର ସହଜ ପ୍ରେମକୁ ବ୍ୟକ୍ତି ବିଶେଷରେ ନିବଦ୍ଧ ନକରି ଯଦି ଭଗବତ୍ ମୁଖୀ କରାଇପାରେ, ତେବେ ତାହା ତା'ର ଆଧ୍ୟାତ୍ମିକ ବିକାଶକୁ ତ୍ୱରାନ୍ୱିତ କରାଇପାରେ । ହେବଜ୍ରତନ୍ତ୍ରରେ ତେଣୁ କୁହାଯାଇଛି । ଯେଉଁ ରାଗ (ଆସକ୍ତି) ମନୁଷ୍ୟର ବନ୍ଧନର (ସାଂସାରିକ ବନ୍ଧନ) କାରଣ ହୋଇଥାଏ, ତାହାକୁ ମଧ୍ୟ ମୋକ୍ଷର କାରଣ କରାଯାଇପାରେ । ଏହି କ୍ରମରେ ସହଜ ପ୍ରେମକୁ ଭଗବତ୍‌ମୁଖୀ କରାଇ ତାହା ମାଧ୍ୟମରେ ଈଶ୍ୱରୋପଲବ୍ଧି ହୋଇଥିଲା ସହଜ ଓ ସରଳ କରାଇବା ଉପାୟ ବୈଷ୍ଣବ ଧର୍ମରେ ଏକଦା ଗୃହୀତ ଏଥି ନିମନ୍ତେ ଆଲୱାରମାନଙ୍କର ମୁଖ୍ୟ ଭୂମିକା ସ୍ୱୀକାର୍ଯ୍ୟ । ଶ୍ରୀମଦ୍ଭାଗବତରେ କୁହାଯାଇଥିବା ରାଗାତ୍ମିକା ପ୍ରେମ ହେଉଛି ଏହି ସହଜ ପ୍ରେମର ରୂପାନ୍ତର

କରଣର ପ୍ରୟାସ ମାତ୍ର । ଏହି ସହଜ ପ୍ରେମ କ୍ରମେ ପାଞ୍ଚରାତ୍ର ଧର୍ମରେ ପ୍ରବେଶ କରିଥିଲା । 'ବ୍ରହ୍ମ ସଂହିତା'ରେ ମଧ୍ୟ ଏହି ସହଜ ପ୍ରେମକୁ ଭଗବତ୍ ଉପାସନାର ଏକ ପନ୍ଥା ବୋଲି ଗ୍ରହଣ କରାଯାଇ କୁହାଯାଇଛି—

"ଏବଂ କ୍ରୋଧ କାମ ସହଜ ପ୍ରଣୟାଦ୍ ଭୀତ
ବାତ୍ସଲ୍ୟ ମୋହ ଗୁରୁ ଗୌରବ ସେବ୍ୟ ଭାବୈଃ"

ଚାଳୁକ୍ୟବଂଶୀୟ ରାଜାଙ୍କର ଏକ ଶିଳାଲେଖ (ଖ୍ରୀ ୧୩୦୪ରେ ଖୋଦିତ)ରେ ଏହି ସହଜ ପ୍ରେମକୁ ଭଗବତ୍ ଶୃଙ୍ଗାର ବାରିଧି ବୋଲି ବର୍ଣ୍ଣନା କରାଯାଇଛି । ଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ଏହି ସାହଜିକ ପ୍ରେମ ବିଷୟ ରାୟ ରାମାନନ୍ଦଙ୍କ ମୁଖରେ ଆଲୋଚିତ ହୋଇଛି । ଆଚାର୍ଯ୍ୟ ନିମ୍ବାର୍କ ଓ ବଲ୍ଲଭ ଯେଉଁ-ରାଗାତ୍ମିକା ପ୍ରେମକୁ ଶ୍ରେଷ୍ଠ ସାଧନା ମାର୍ଗ କହିଛନ୍ତି, ତାହା ଏହି ସହଜ ପ୍ରେମର ରୂପାନ୍ତରୀକରଣ ମାତ୍ର । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ସମୟ କ୍ରମେ ବୈଷ୍ଣବ ଧର୍ମରେ ଯେଉଁ ରାଗାତ୍ମିକା ପ୍ରେମ ସାଧନା ଗୃହୀତ ହୋଇଥିଲା ତାହା ରାଧାକୃଷ୍ଣଙ୍କର ପରକୀୟା ଶୃଙ୍ଗାର ରସ ବର୍ଣ୍ଣନାରେ ସତ୍ତା ହରାଇ ନଥିଲା । ଓଡ଼ିଶାର ବୈଷ୍ଣବ କବି ଶ୍ରୀଜୟଦେବ ମଧ୍ୟ ତାଙ୍କର ଶ୍ରୀଗୀତଗୋବିନ୍ଦରେ ଯେଉଁ ରାଧାକୃଷ୍ଣ ଶୃଙ୍ଗାର ଲୀଳାର ବର୍ଣ୍ଣନା ଦେଇଛନ୍ତି, ସେଥିରେ ପରକୀୟା ପ୍ରେମର ନିନ୍ଦିତ ରୂପ ନାହିଁ । ପୁନଶ୍ଚ ନିମ୍ବାର୍କ ମଧ୍ୟ ରାଧାକୃଷ୍ଣ ପ୍ରେମରେ ପରକୀୟାତ୍ୱର ଆରୋପ କରି ନାହାନ୍ତି । ତେବେ ଏଠାରେ ପ୍ରଶ୍ନ ଉଠେ ଯେ ଆଧ୍ୟାତ୍ମିକ ଭାବଗର୍ଭିତ ରାଧାକୃଷ୍ଣ ରାଗାତ୍ମିକ ପ୍ରେମ ଲୀଳା ମଧ୍ୟରେ ପରକୀୟା ସମ୍ଭୋଗ ପ୍ରବେଶ କରି ରାଧାକୃଷ୍ଣଙ୍କ ଶୁଦ୍ଧ ପ୍ରେମକୁ କେବେ ଓ କିପରି ବିଡ଼ମ୍ବିତ କଲା ?

ଏହି ପ୍ରଶ୍ନର ସମାଧାନ ନିମିତ୍ତ ଏଠାରେ ସହଜିଆ ବୈଷ୍ଣବ ଧର୍ମର ଅଭ୍ୟୁଦୟ ଇତିହାସର ସୂଚନା ଦେବା ଆବଶ୍ୟକ । ଯେତେବେଳେ ଶଙ୍କରାଚାର୍ଯ୍ୟଙ୍କ ଦୃଢ଼ ପଦକ୍ଷେପ ଦ୍ୱାରା (ଖ୍ରୀ ୮ମ/୯ମ ଶତାବ୍ଦୀ) ବୌଦ୍ଧଧର୍ମ ଭାରତରୁ ମୂଳୋତ୍ପାଟିତ ହେଲା । ସେତେବେଳେ ଯେଉଁ ଅନେକ ପ୍ରବୃତ୍ତି ପ୍ରବଣ ସହଜିଆ ବୌଦ୍ଧ ଅନନ୍ୟୋପାୟ ହୋଇ ହିନ୍ଦୁଧର୍ମ ମଧ୍ୟରେ ଆତ୍ମ-ଗୋପନ କରିଥିଲେ । ସେମାନେ ତାଙ୍କର ସାଧନାର ମୁଖ୍ୟ ଅଂଶ ପରନାରୀ

ସମ୍ଭୋଗକୁ ହିନ୍ଦୁଧର୍ମ ମଧ୍ୟରେ ଭିନ୍ନ ରୂପେ ପ୍ରତିଷ୍ଠିତ କରିବାକୁ ଲାଗିଲେ ଓ ହିନ୍ଦୁଧର୍ମର ପ୍ରଧାନ ସ୍ରୋତ ବୈଷ୍ଣବ ଧର୍ମରେ ଅନୁପ୍ରବେଶ କରି ନିଜକୁ ସହଜିଆ ବୈଷ୍ଣବ ଭାବେ ପରିଚିତ କରାଇଲେ । ସେମାନଙ୍କ ମୁଖରେ ଶ୍ରୀଜୟଦେବ ଗୀତଗୋବିନ୍ଦ-ବର୍ଣ୍ଣିତ ରାଧାକୃଷ୍ଣ ପ୍ରେମଲୀଳା ପରକୀୟା ରଙ୍ଗରଞ୍ଜିତ ହେଲା । କ୍ରମେ ବଙ୍ଗଳା, ଉତ୍କଳରେ ଏହି ସହଜିୟା ବୈଷ୍ଣବ ମାନଙ୍କର ସଂଖ୍ୟା ବିଶେଷ ଭାବରେ ବୃଦ୍ଧି ପାଇଥିଲା । ଏହି ସହଜିୟା ବୈଷ୍ଣବଧର୍ମର ଦର୍ଶନ ହେଉଛି - ପ୍ରତ୍ୟେକ ପୁରୁଷ ହେଉଛି କୃଷ୍ଣଙ୍କର ପ୍ରତୀକ ଓ ପ୍ରତ୍ୟେକ ନାରୀ ହେଉଛି ରାଧାଙ୍କର ପ୍ରତୀକ । ତେଣୁ ରାଧାକୃଷ୍ଣ ପ୍ରେମଲୀଳାର ମାଧୁର୍ଯ୍ୟ ଆସ୍ୱାଦନ କରିବା ନିମନ୍ତେ ଏକ ନୂତନ ଉପାୟ ଉଦ୍ଭାବନ କରିଥିଲେ । ଏହି ଉପାୟ ହେଉଛି ସହଜିଆ ସାଧକ ନିଜଠାରେ କୃଷ୍ଣତ୍ୱ ଆରୋପ କରି ନିର୍ବାଚିତା ସୁନ୍ଦରୀ ପରନାରୀଠାରେ ରାଧାତ୍ୱ ଆରୋପ କରି ତାହା ସହିତ ଯୌନସଙ୍ଗମରେ ପ୍ରବୃତ୍ତ ହେଲେ ରାଧାକୃଷ୍ଣ ମିଳନର ମାଧୁର୍ଯ୍ୟ ରସକୁ ସହଜରେ ଉପଲବ୍ଧି କରିପାରିବ । ଶ୍ରୀ ମଣୀନ୍ଦ୍ର ମୋହନ ବୋଷଙ୍କ ଦ୍ୱାରା ସଂଗୃହୀତ 'ସାଧନଟୀକା' ନାମକ ଏକ ଗ୍ରନ୍ଥରେ ସହଜିଆ ସାଧନାର ବିବରଣୀ ପ୍ରଦାନ କରାଯାଇଛି । ସୁନ୍ଦରୀ ପରନାରୀ ନିର୍ବାଚନ କରି ଗୋପନରେ ନିଶାର୍ଦ୍ଧରେ ତା ସହିତ କପରି ରତିକ୍ରୀଡ଼ାରେ ବ୍ୟାପୃତ ହୋଇ ଯୁଗଳ ଗାୟତ୍ରୀ ମନ୍ତ୍ର ଜପପୂର୍ବକ ରାଧାକୃଷ୍ଣ ଲୀଳାମାଧୁର୍ଯ୍ୟ ଅନୁଭବ କରିବ, ତାହା ଏଥିରେ ବର୍ଣ୍ଣିତ ହୋଇଛି । 'ରାଗ ଉଦୟ ଦୀପିକା' ନାମକ ଏକ ଓଡ଼ିଆ ପାଣ୍ଡୁଲିପିରେ ଅନୁରୂପ ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳିଥାଏ । 'ବିବର୍ତ୍ତ ବିଳାସ' ନାମକ ଗ୍ରନ୍ଥରେ ବିଲ୍ୱମଙ୍ଗଳ, ବିଦ୍ୟାପତି, ଚଣ୍ଡୀଦାସ ପ୍ରଭୃତି କପରି ପରକୀୟା ସମ୍ଭୋଗ କରୁଥିଲେ, ତାହାର ବର୍ଣ୍ଣନା ଦେଖିବାକୁ ମିଳିଥାଏ । (୩୬) ବଡ଼ୁଚଣ୍ଡୀ ଦାସଙ୍କ 'ଶ୍ରୀକୃଷ୍ଣ କୀର୍ତ୍ତନ' କାବ୍ୟ, ଚଣ୍ଡୀଦାସ ଓ ବିଦ୍ୟାପତିଙ୍କ ଗୀତିକା ସମୂହରେ ରାଧାକୃଷ୍ଣଙ୍କ ପରକୀୟା ପ୍ରେମଲୀଳାର ଯେଉଁ ଚିତ୍ର ଦେଖିବାକୁ ମିଳିଥାଏ, ତାହାକୁ ସେମାନଙ୍କର ନିଜ ଅନୁଭୂତିର ପ୍ରତିଫଳନ ଛଡ଼ା ଅନ୍ୟ କିଛି କୁହାଯାଇନପାରେ । ଶ୍ରୀଚୈତନ୍ୟଙ୍କର ଆବିର୍ଭାବ ବେଳକୁ ସହଜିଆ ବୈଷ୍ଣବଙ୍କର ଯୌନ ବ୍ୟଭିଚାର ପ୍ରବଳ ହୋଇଉଠିଥିଲା । ସହଜ ସାଧକଙ୍କର ଲମ୍ପଟ୍ୟ କାମୁକ ଭାବ ଓ ସାଧନା ସର୍ଗୀମର ନିର୍ଲଜ୍ଜା

ଭାବ କୃଷ୍ଣ ଓ ରାଧା ଚରିତକୁ ସଂମିଶ୍ରିତ ହୋଇ ନନ୍ଦିତ ଓ କଳୁଷିତ କରିଦେଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସାରଳା ମହାଭାରତର ଖଳ୍ଲକାର ଜନ୍ମବୃତ୍ତାନ୍ତରେ ସାରଳା ଦାସ ଏହାର ଏକ ସ୍ପଷ୍ଟ ଆଲେଖ୍ୟ ପ୍ରଦାନ କରିଛନ୍ତି ।

ଶ୍ରୀଚୈତନ୍ୟଙ୍କର ଆବିର୍ଭାବ ସମୟକୁ ସହଜିଆ ବୈଷ୍ଣବଙ୍କର ବ୍ୟଭିଚାର ସୀମାଅତିକ୍ରମ କରିଥିଲା । ସାଧନା ମଧ୍ୟରୁ ନିଷିଦ୍ଧ ପରକୀୟା ଯୌନ ସମ୍ଭୋଗକୁ ବାଦ ଦେବାପାଇଁ ଶ୍ରୀଚୈତନ୍ୟ ଚେଷ୍ଟା କରି ସଫଳ ହୋଇଥିଲେ । ସାଧିକାର ସାଧକ ପ୍ରତି ବ୍ୟାକୁଳତା ଓ ସାଧକର ସାଧିକା ପ୍ରତି ଆବେଗକୁ ସେ ଭକ୍ତର ଭଗବତ୍ ପ୍ରାପ୍ତି ପାଇଁ ଉନ୍ମାଦଯୁକ୍ତ ଆକୁଳତାରେ ପରିଣତ କରାଇବା ଚେଷ୍ଟାରେ ନିଜର ଆଚରଣ ମଧ୍ୟରେ ରାଧାଭାବ ରୂପେ ତାହାକୁ ଦର୍ଶାଇଥିଲେ ଏବଂ ତାହା କ୍ରମେ ଚୈତନ୍ୟ ସମ୍ପ୍ରଦାୟର ସାଧନା ମାର୍ଗ ରୂପେ ଗୃହୀତ ହୋଇଥିଲା । ସହଜିଆମାନଙ୍କ ଦ୍ୱାରା ରାଧାକୃଷ୍ଣ ପ୍ରେମଲୀଳାରେ ଯେଉଁ ପରକୀୟା ଭାବ ଆରୋପ କରାଯାଇଥିଲା ତାହା କିନ୍ତୁ ଅପରିବର୍ତ୍ତିତ ରହିଥିଲା । କାରଣ ଏଥିରେ ଥିବା ତ୍ୟାଗ ସର୍ବସ୍ୱ, ଯନ୍ତ୍ରଣା ପୀଡ଼ିତ ବ୍ୟାକୁଳଭାବ ଭଗବତ୍ ପ୍ରାପ୍ତି ନିମିତ୍ତ ବ୍ୟାକୁଳତାର ଦୃଷ୍ଟାନ୍ତ ରୂପେ ଗୃହୀତ ହୋଇଥିଲା ।

## ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବ ସମ୍ପ୍ରଦାୟର ଧର୍ମ ଦର୍ଶନ : ସଂକ୍ଷିପ୍ତ ସୂଚନା

ବଲ୍ଲଭାଚାର୍ଯ୍ୟଙ୍କ ଆବିର୍ଭାବ ସମୟରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଆବିର୍ଭାବ ଘଟିଥିଲା । (୧୪୮୫-୧୫୩୩ ଖ୍ରୀ. ଅ.) ବଲ୍ଲଭାଚାର୍ଯ୍ୟ ଓ ଶ୍ରୀଚୈତନ୍ୟଙ୍କର ଧର୍ମ ଦର୍ଶନ ମଧ୍ୟରେ ସମ୍ପୂର୍ଣ୍ଣ ସାମ୍ୟ ନଥିଲେ ମଧ୍ୟ ଅନେକାଂଶରେ ସାଦୃଶ୍ୟ ପରିଲକ୍ଷିତ ହୁଏ । ରାଗାତ୍ମିକା ପ୍ରେମ ମାଧ୍ୟମରେ ବଦ୍ଧଦେହ ମୁକ୍ତି ଲାଭ କରିବା ଓ ଅପ୍ରାକୃତ ଦେହଧାରଣ କରିବା ଉଭୟ ସମ୍ପ୍ରଦାୟର ସାଧନ ମାର୍ଗର ଲକ୍ଷ୍ୟ । ଉଭୟ ମଧ୍ୟ ଶ୍ରୀକୃଷ୍ଣଙ୍କୁ ପରବ୍ରହ୍ମ ରୂପେ ଗ୍ରହଣ କରିଛନ୍ତି ଓ ଜଗତ୍ ଏବଂ ଜୀବକୁ ଭଗବାନ୍‌ଙ୍କର ଶକ୍ତି

ବିଶେଷ ରୂପେ ଭଗୃର କରିଛନ୍ତି । ଏ ଉଭୟ ସମ୍ପ୍ରଦାୟର ଧର୍ମଦର୍ଶନରେ କେତେକ ମୌଳିକ ପାର୍ଥକ୍ୟ ମଧ୍ୟ ରହିଛି ।

୧୫୦୯ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ଓ ଶ୍ରୀକ୍ଷେତ୍ରରେ ଚବିଶବର୍ଷ ଅବସ୍ଥାନ କାଳ ମଧ୍ୟରେ ଶ୍ରୀଚୈତନ୍ୟ ପ୍ରଚାରିତ ବୈଷ୍ଣବ ଧର୍ମର ଅଭ୍ୟୁଦୟ ଘଟିଥିଲା । ଶ୍ରୀଚୈତନ୍ୟ ଏହି ଧର୍ମର ଆଚାର୍ଯ୍ୟ ବା ପ୍ରବର୍ତ୍ତକ ଅଟନ୍ତି ସତ କିନ୍ତୁ ଏହାର ଦାର୍ଶନିକ ସିଦ୍ଧାନ୍ତର ମୂଳ ପ୍ରବକ୍ତା ହେଉଛନ୍ତି ପ୍ରଶାସକ ରାୟ ରାମାନନ୍ଦ ପଟ୍ଟନାୟକ ଏବଂ ସେହି ଦାର୍ଶନିକ ସିଦ୍ଧାନ୍ତର ପ୍ରକୃତ ପ୍ରତିପାଦକ ହେଉଛନ୍ତି ଓଡ଼ିଶାର ଯୋଗଜନ୍ମା ପଣ୍ଡିତ ବଳଦେବ ବିଦ୍ୟାଭୂଷଣ । ବଳଦେବ ପର୍ଯ୍ୟନ୍ତ ଶ୍ରୀଚୈତନ୍ୟ ସମ୍ପ୍ରଦାୟର ପ୍ରକୃତରେ କୌଣସି ଦର୍ଶନମୂଳକ ଗ୍ରନ୍ଥ ନଥିଲା । ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭକାଳରେ (ଖ୍ରୀ. ଅ ୧୭୩୦-୪୦) ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ଭାରତୀୟ ଧର୍ମ ମହାସଭା ଆହ୍ୱାନକ୍ରମେ ବ୍ରହ୍ମସୂତ୍ରର ଗୋବିନ୍ଦଭାଷ୍ୟ ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ ଏବଂ ବ୍ରହ୍ମ, ଜୀବ, ଜଗତ୍ ଓ ସାଧ୍ୟ ସାଧନା ସମ୍ପର୍କିତ ଦାର୍ଶନିକ ସିଦ୍ଧାନ୍ତକୁ ଘୋଷଣା କରିଥିଲେ । ଏହାର ନାମ ଥିଲା ଅଚିନ୍ତ୍ୟ ଭେଦାଭେଦବାଦ । ଅବଶ୍ୟ ଏହି ଗ୍ରନ୍ଥର ବିଷୟବସ୍ତୁ ଯେଉଁ ତଥ୍ୟଗୁଡ଼ିକରେ ପରିପୁଷ୍ଟ ହୋଇଛି, ସେଗୁଡ଼ିକ ହେଉଛି ରାୟରାମାନନ୍ଦ ଓ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ କଥୋପକଥନରୁ ଉଦ୍‌ଭୂତ ତଥ୍ୟ, ଷଡ଼ଗୋସ୍ୱାମୀ (ବିଶେଷ ଭାବରେ ରୂପ, ସନାତନ ଓ ଜୀବ)ଙ୍କ ଗ୍ରନ୍ଥରେ ବର୍ଣ୍ଣିତ ତଥ୍ୟ, ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ଭାଗବତ ବ୍ୟାଖ୍ୟା ଓ ବ୍ରହ୍ମ ସଂହିତାର ପ୍ରତିପାଦିତ ତତ୍ତ୍ୱ । ଚୈତନ୍ୟ ସମ୍ପ୍ରଦାୟର ଧର୍ମଦର୍ଶନ-ମୂଳକ ଗ୍ରନ୍ଥଗୁଡ଼ିକ ହେଉଛି —

ଶ୍ରୀ ସନାତନ ଗୋସ୍ୱାମୀ କୃତ — ଭାଗବତାମୃତ, ହରି ଭକ୍ତିବିଳାସ, ଦିକ୍ ପ୍ରଦର୍ଶନୀ ଟୀକା, ବୈଷ୍ଣବ-ତୋଷିଣୀ ଟୀକା, ବୃହତ୍-ଭାଗବତାମୃତ ।

କବି କର୍ଣ୍ଣପୂର କୃତ — ଚୈତନ୍ୟ ଚନ୍ଦ୍ରୋଦୟନାଟ, କୃଷ୍ଣଗଣୋଦ୍ଦେଶ ଦୀପିକା ।

| | | |
|---|---|---|
| ଶ୍ରୀରୂପ ଗୋସ୍ୱାମୀ କୃତ | — | ଲଳିତ ମାଧବ, ବିଦଗ୍ଧମାଧବ, ଲଘୁଭାଗବତାମୃତ, ଉଜ୍ଜ୍ୱଳ ନୀଳମଣି, ଭକ୍ତିରସାମୃତସିନ୍ଧୁ, ସ୍ମରଣ ମଙ୍ଗଳ |
| ଶ୍ରୀଜୀବଗୋସ୍ୱାମୀକୃତ | — | ଷଟ୍ ସନ୍ଦର୍ଭ |
| ବିଶ୍ୱନାଥ ଚକ୍ରବର୍ତ୍ତୀକୃତ | — | ଶ୍ରୀମଦ୍ଭାଗବତର ସାରାର୍ଥଦର୍ଶିନୀ ଟୀକା |
| ରାୟରାମାନନ୍ଦ ପଟ୍ଟନାୟକକୃତ | — | ଜଗନ୍ନାଥ ବଲ୍ଲଭ ନାଟକ ଓ କୃଷ୍ଣଲୀଳା । |
| କୃଷ୍ଣଦାସ କବିରାଜ ଗୋସ୍ୱାମୀକୃତ | — | ଚୈତନ୍ୟ ଚରିତାମୃତ ଓ ଗୋବିନ୍ଦ ଲୀଳାମୃତ |
| ବଳଦେବ ବିଦ୍ୟାଭୂଷଣକୃତ | — | ସିଦ୍ଧାନ୍ତରତ୍ନ ପ୍ରମେୟ ରତ୍ନାବଳୀ, ବେଦାନ୍ତ ସ୍ୟମନ୍ତକ ଗୋବିନ୍ଦ ବିରୁଦାବଳୀ ଓ ଗୋବିନ୍ଦ ଭାଷ୍ୟ |

ଅନ୍ୟାନ୍ୟ ବୈଷ୍ଣବ ସମ୍ପ୍ରଦାୟର ଦାର୍ଶନିକ ସିଦ୍ଧାନ୍ତ ଉପସ୍ଥାପନ ଖଣ୍ଡରେ ଚୈତନ୍ୟ ସମ୍ପ୍ରଦାୟର ଧର୍ମ ଦର୍ଶନ ଉପସ୍ଥାପିତ ହୋଇଛି । ସେଗୁଡିକର ସମ୍ୟକ ସୂଚନା ଏଠାରେ ପ୍ରଦତ୍ତ ହେଲା ।

**ଭଗବତ୍ ତତ୍ତ୍ୱ :**

ଚୈତନ୍ୟ ସମ୍ପ୍ରଦାୟ ମତରେ ପରଂବ୍ରହ୍ମ, ନିର୍ଗୁଣ, ନିର୍ବିଶେଷ ନୁହନ୍ତି । ସେ ପ୍ରାକୃତଗୁଣ ବର୍ଜ୍ଜିତ ଓ ଅପ୍ରାକୃତ ଗୁଣ ମଣ୍ଡିତ ଓ ସାକାର । ସେ ହେଉଛନ୍ତି ସର୍ବବ୍ୟାପୀ, ଅନନ୍ତଶକ୍ତିର ଆଧାର । ସମସ୍ତ କଲ୍ୟାଣ ଗୁଣର ଆକର ଷଡ଼୍ୈଶ୍ୱର୍ଯ୍ୟ ମଣ୍ଡିତ ବିଗ୍ରହ, ସର୍ବ ନିୟନ୍ତା, ଲୀଳାମୟ ରସଘନ ବିଗ୍ରହ ଓ ସଚ୍ଚିଦାନନ୍ଦତନୁ । ସେ ହେଉଛନ୍ତି ଚିର କିଶୋର ଏବଂ ସମସ୍ତ ଅବତାରର ଜନକ । ପରଂବ୍ରହ୍ମ ହେଉଛନ୍ତି ଅପ୍ରାକୃତ ଧାମର ଊର୍ଦ୍ଧ୍ୱରେ ଥିବା ନିତ୍ୟ ଗୋଲକରେ ବିରାଜିତ ରସରାଜ ଶ୍ରୀକୃଷ୍ଣ । ଶ୍ରୀଚୈତନ୍ୟଙ୍କ

ମତରେ ଭଗବାନ୍ ଅନନ୍ତ ଶକ୍ତିର ଆଧାର । ତାଙ୍କର ଶକ୍ତି ମୁଖ୍ୟତଃ ତିନି ଭାଗରେ ବିଭକ୍ତ । ଯଥା ପରାଶକ୍ତି ନାମରେ ବିଦିତ । ତଟସ୍ଥା ଶକ୍ତି ଓ ଅପରା ଶକ୍ତି । ପରାଶକ୍ତି ହେଉଛି ଭଗବାନ୍‌ଙ୍କର ସ୍ୱରୂପଶକ୍ତି । ଏହା ସର୍ବୋତ୍କୃଷ୍ଟ ଶକ୍ତି ହୋଇଥିବାରୁ ପରାଶକ୍ତି ନାମରେ ବିଦିତ । ତଟସ୍ଥା ଶକ୍ତି ହେଉଛି ଜୀବଜଗତ୍ । ଏହା ଭଗବାନ୍‌ଙ୍କର ଚିତ୍ ଶକ୍ତିର ପ୍ରକାଶ । ଅପରାଶକ୍ତି ହେଉଛି ଧ୍ୱଂସଶୀଳ ଜଡ଼ ଜଗତ୍ । ଏହା ମାୟା ନାମରେ ବିଦିତ, ଯାହାର ଅନ୍ୟନାମ ହେଉଛି ପ୍ରକୃତି । ଏହା ମଧ୍ୟ ଭଗବାନ୍‌ଙ୍କର ଶକ୍ତି ବିଶେଷ । ଭଗବାନ୍ ସୃଷ୍ଟି କରିବା ଇଚ୍ଛାପୋଷଣ କରି ଜୀବ ଓ ଜଗତରେ ପରିଣତ ହୁଅନ୍ତି । ତାଙ୍କର ଏହି କାର୍ଯ୍ୟ ଯୋଗମାୟା ଶକ୍ତି ଦ୍ୱାରା ସାଧିତ ହୋଇଥାଏ। ଅପରାଶକ୍ତି ହେଉଛି ଭଗବାନ୍‌ଙ୍କର ଶକ୍ତିର ନ୍ୟୂନ ପ୍ରକାଶ । ଭଗବାନ୍‌ଙ୍କ ପରାଶକ୍ତି ବା ସ୍ୱରୂପଶକ୍ତିର ତିନୋଟି ବୃତ୍ତି ରହିଛି । ସେଗୁଡ଼ିକ ହେଉଛି ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ । ସନ୍ଧିନୀ ଶକ୍ତି ବଳରେ ଭଗବାନ୍ ନିଜେ ସତ୍ତା ଧାରଣ କରନ୍ତି ଓ ଅନ୍ୟର ସତ୍ତାକୁ ଧାରଣ କରନ୍ତି । ତାଙ୍କର ସମ୍ବିତ୍ ଶକ୍ତି ହେଉଛି ଜ୍ଞାନଶକ୍ତି । ଏହି ଶକ୍ତି ବଳରେ ସେ ନିଜର ସ୍ୱରୂପକୁ ଅନୁଭବ କରନ୍ତି, ଜାଣନ୍ତି ଏବଂ ଅନ୍ୟକୁ ଜ୍ଞାନ ପ୍ରଦାନ କରନ୍ତି । ହ୍ଲାଦିନୀଶକ୍ତି ବଳରେ ସେ ନିଜେ ଆନନ୍ଦ ଅନୁଭବ କରନ୍ତି ଏବଂ ଅନ୍ୟ ମଧ୍ୟରେ ଆନନ୍ଦ ସଞ୍ଚାର କରନ୍ତି । ଏହି ତିନି ବୃତ୍ତିର ମିଳନରେ ତାଙ୍କର ଯେଉଁ ସ୍ୱରୂପଶକ୍ତି ପ୍ରକାଶିତ ହୁଏ, ତାହା ହେଉଛି ଉତ୍କୃଷ୍ଟ ଭଗବତ୍ ଶକ୍ତି । ଭଗବାନ୍ ସୃଷ୍ଟିର ରକ୍ଷା ଓ ସଂହାର ପାଇଁ ବହୁରୂପରେ ଆତ୍ମପ୍ରକାଶ କରନ୍ତି । ଏହି ସମସ୍ତ ଅନେକରୂପ ମଧ୍ୟରେ ଭଗବାନ୍‌ଙ୍କ ରୂପ ଓ ଶକ୍ତି ସମାନ ଭାବରେ ପ୍ରକାଶିତ ହୁଏ । ତେଣୁ ଭଗବାନ୍‌ଙ୍କ ବିଭିନ୍ନ ରୂପରେ ଭେଦାଭେଦ ରହିବା ଅନୁଚିତ । କିନ୍ତୁ ଜୀବର ଆଧ୍ୟାତ୍ମିକ ଉନ୍ନୟନ ପାଇଁ ଭଗବାନ୍‌ଙ୍କର ମୂଳ ମାଧୁର୍ଯ୍ୟମୟ ଓ ଆନନ୍ଦମୟ ରୂପରେ ଚୈତନ୍ୟ ସମ୍ପ୍ରଦାୟରେ ପରିକଳ୍ପିତ ହୋଇଛି । ଗୋଟିଏ ଐଶ୍ୱର୍ଯ୍ୟମଣ୍ଡିତ ରୂପ ଓ ଅନ୍ୟଟି ମାଧୁର୍ଯ୍ୟ ମଣ୍ଡିତ ରୂପ ।

**ଜଗତ୍** . ଚୈତନ୍ୟ ସମ୍ପ୍ରଦାୟର ଧର୍ମ ଦର୍ଶନରେ ଜଗତ୍‌କୁ ଭଗବାନ୍‌ଙ୍କର ଅପରାଶକ୍ତି ବା ମାୟାଶକ୍ତି କୁହାଯାଇଛି । ଜଗତ୍ ହେଉଛି ନିତ୍ୟ । ଏହା

ବିନାଶ ଶୀଳ ନୁହେଁ ବା ଅସତ୍ୟ ନୁହେଁ । ପ୍ରଳୟ ସମୟରେ ମଧ୍ୟ ଜଗତର ବିନାଶ ହୁଏ ନାହିଁ । ଏହା ଅବ୍ୟକ୍ତ ଅବସ୍ଥାରେ ଭଗବାନ୍‌ଙ୍କ ଗର୍ଭରେ ଅବସ୍ଥାନ କରେ । ଏହାକୁ ଉଦାହରଣ ସ୍ଥଳରେ "ବର୍ଣ୍ଣ-ଲୀନ-ବିହଙ୍ଗମବତ୍" କୁହାଯାଇଛି । ଚୈତନ୍ୟ ସମ୍ପ୍ରଦାୟ ଅନ୍ୟାନ୍ୟ ବୈଷ୍ଣବ ସମ୍ପ୍ରଦାୟ ଭଳି ଜଗତ୍ ସୃଷ୍ଟି ପାଇଁ ପରିଣାମ ବାଦକୁ କାରଣ ରୂପେ ଗ୍ରହଣ କରିଛନ୍ତି । ଜଗତ୍ ହେଉଛି ବ୍ରହ୍ମଙ୍କର ପରିଣତି । ଅର୍ଥାତ୍ ବ୍ରହ୍ମ ନିଜେ ଇଚ୍ଛା କରି ଜଗତ୍‌ରେ ପରିଣତ ହୁଅନ୍ତି । ସୃଷ୍ଟି ପାଇଁ ଭଗବାନ୍ ହେଉଛନ୍ତି ନିମିତ୍ତ କାରଣ ଏବଂ ଭଗବାନ୍‌ଙ୍କର ଅପରାଶକ୍ତି ବା ମାୟା ହେଉଛି ଉପାଦାନ କାରଣ । ଏହାର ତାତ୍ପର୍ଯ୍ୟ ହେଉଛି ଯେପରି ମାଟି ପିଣ୍ଡୁଳା (କୁମ୍ଭକାର ଯୋଗେ) ଅନେକ ମୃତ୍ତିକା ପାତ୍ରରେ ପରିଣତ ହୁଏ ବା ସୁନା ବିଭିନ୍ନ ଅଳଙ୍କାରରେ ପରିଣତ ହୁଏ, ସେହିପରି ଭଗବାନ୍‌ଙ୍କର ଅପରାଶକ୍ତି ବା ପ୍ରକୃତି ବିଭିନ୍ନ ବସ୍ତୁରେ ପରିଣତ ହୁଏ । ଜଗତ୍ ମିଥ୍ୟା ନୁହେଁ, ଏହା ଭଗବାନ୍‌ଙ୍କର ଶକ୍ତି ବିଶେଷ ବା ଲୀଳା ବିଶେଷ ।

## ଅଚିନ୍ତ୍ୟ ଭେଦାଭେଦ ବାଦ :

ଚୈତନ୍ୟ ସମ୍ପ୍ରଦାୟର ଧର୍ମ ଦର୍ଶନକୁ ଅଚିନ୍ତ୍ୟ ଭେଦାଭେଦ ବାଦ କୁହାଯାଏ । ଜୀବ ଓ ଜଗତ୍ ସହିତ ବ୍ରହ୍ମଙ୍କର ସମ୍ପର୍କ ନେଇ ଅଦ୍ୱୈତବାଦ ଦ୍ୱୈତବାଦ ପ୍ରଭୃତିର ସୃଷ୍ଟି ହୋଇଛି । ଚୈତନ୍ୟ ସମ୍ପ୍ରଦାୟରେ ଜୀବ ଓ ଜଗତ୍ ଭଗବାନ୍‌ଙ୍କ ଶକ୍ତିର ପ୍ରକାଶ । ତେଣୁ ବ୍ରହ୍ମ ସହିତ ଜୀବ ଓ ଜଗତ୍‌ର ସମ୍ପର୍କ ଅଭିନ୍ନ । ଏହାକୁ ମଧ୍ୟ ଠିକ ଭାବରେ ଅଭିନ୍ନ କୁହାଯାଇପାରିବ ନାହିଁ । କାରଣ ଶକ୍ତି, ଗୁଣ, ପ୍ରଭୁତ୍ୱ ପ୍ରଭୃତି ବିଚାର ଦୃଷ୍ଟିରୁ ଜୀବ ଓ ଜଗତ୍ ବ୍ରହ୍ମ ସହିତ ସମାନ ନୁହନ୍ତି । ଜୀବ ଜଗତ୍ ସହିତ ବ୍ରହ୍ମଙ୍କର ଭେଦ ଅଛି ପୁଣି ଅଭେଦ ଅଛି । କିନ୍ତୁ ତାହା ସହଜରେ ଅବଧାରଣ କରିହୁଏ ନାହିଁ । ଏହା ଏକ ଅଚିନ୍ତ୍ୟମୟ ବ୍ୟାପାର । ଜୀବ ଓ ଜଗତ୍ ହେଉଛି ଭଗବାନ୍‌ଙ୍କ ଅରୂପ ଶକ୍ତିର ଅନ୍ୟରୂପ । ଏଥିପାଇଁ ଚୈତନ୍ୟ ମତରେ ଜୀବଜଗତ୍ ସହିତ ବ୍ରହ୍ମର ସମ୍ପର୍କ ଭେଦାଭେଦ ଦୃଷ୍ଟିରୁ ଅଚିନ୍ତ୍ୟମୟ । ଉପର୍ଯ୍ୟୁକ୍ତ ଦୃଷ୍ଟି କୋଣରୁ ବଳଦେବ ବିଦ୍ୟାଭୂଷଣ ଉପସ୍ଥାପିତ କରିଥିବା ଦାର୍ଶନିକ ମତକୁ ଅଚିନ୍ତ୍ୟ ଭେଦାଭେଦ ବାଦ କୁହାଯାଇଛି ।

**ସାଧନା ମାର୍ଗ :** ଚୈତନ୍ୟ ସମ୍ପ୍ରଦାୟର ସାଧନା ମାର୍ଗ ସାଯୁଜ୍ୟ ମୁକ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ବିଦେହ ମୁକ୍ତି ପାଇଁ ଉଦ୍ଦିଷ୍ଟ । ବିଦେହ ମୁକ୍ତିର ଅର୍ଥ ହେଉଛି ଜୀବ ସାଧନାବଳରେ ପ୍ରାକୃତ ଦେହ ତ୍ୟାଗ କରି ଅପ୍ରାକୃତ ଦେହ ଧାରଣ କରିବା ଓ ଭଗବାନଙ୍କ ସମୀପରେ ରହି ତାଙ୍କର ସେବା କରିବା ଓ ମାଧୁର୍ଯ୍ୟ ଆସ୍ୱାଦନ କରି ଆନନ୍ଦରେ ନିମଗ୍ନ ରହି ଆନନ୍ଦାବସ୍ଥା ଲାଭ କରିବା । କର୍ମମାର୍ଗ କିମ୍ବା ଜ୍ଞାନମାର୍ଗ ଦ୍ୱାରା ଏହି ଲକ୍ଷ୍ୟ ସିଦ୍ଧ ହୋଇପାରେ ନାହିଁ । କେବଳ ଭକ୍ତିମାର୍ଗ ଦ୍ୱାରା ଏହା ସିଦ୍ଧ ହୁଏ । ଭକ୍ତିମାର୍ଗ ପୁଣି ବୈଧୀ ଓ ରାଗାନୁଗା ଭେଦରେ ଦୁଇ ପ୍ରକାର । ବୈଧୀ ଭକ୍ତିଦ୍ୱାରା ଭଗବାନଙ୍କୁ ବଶୀଭୂତ କରାଯାଇ ପାରେ ନା । ଭଗବାନ୍ କେବଳ ରାଗାତ୍ମିକା ଭକ୍ତିରେ ବଶୀଭୂତ ହୁଅନ୍ତି । ଏହା ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ କାନ୍ତା ଭେଦରେ ଚତୁର୍ବିଧ । ରାଗାତ୍ମିକା କାନ୍ତା ଭକ୍ତିର ଅନ୍ୟ ନାମ ହେଉଛି ରାଗାତ୍ମିକା ପ୍ରେମ । ଏହାର ଅନୁସରଣ ହେଉଛି ରାଗାନୁଗା ପ୍ରେମ । ଗୋପାଙ୍ଗନା ଓ ଶ୍ରୀରାଧାଙ୍କର ପ୍ରେମ ରାଗାତ୍ମିକା ପ୍ରେମ ଶ୍ରେଣୀ ଭୁକ୍ତ । ଶରଣାଗତି ଦ୍ୱାରା ଭଗବାନଙ୍କୁ ଅହେତୁକୀ ପ୍ରେମ ଦେଇପାରିଲେ ତାଙ୍କର ଅନୁଗ୍ରହରୁ ତାଙ୍କର ସ୍ୱରୂପ ଉପଲବ୍ଧ ହୋଇଥାଏ ଓ ଜୀବ ବିଦେହମୁକ୍ତି ପାଇଥାଏ । ଏହା ହେଉଛି ଚୈତନ୍ୟ ସମ୍ପ୍ରଦାୟର ଧର୍ମ ଦର୍ଶନର ସାରାଂଶ । ବିଶ୍ୱନାଥ ଚକ୍ରବର୍ତ୍ତୀ ଗୋଟିଏ ମାତ୍ର ଶ୍ଳୋକରେ ଏହି ସାରାଂଶକୁ ସ୍ପଷ୍ଟ କରିଦେଇଛନ୍ତି । ଯଥା —

ଆରାଧ୍ୟ ଭଗବାନ୍ ବ୍ରଜେଶତନୟସ୍ତଦ୍ଧାମ ବୃନ୍ଦାବନଂ
ରମ୍ୟା କାଚିଦୁପାସନା ବ୍ରଜବଧୂବର୍ଗେଣ ବା କଳ୍ପିତା
ଶାସ୍ତ୍ରଂ ଭାଗବତଂ ପ୍ରମାଣମମଳଂ ପ୍ରେମାପୁମର୍ଥୋମହାନ୍
ଶ୍ରୀଚୈତନ୍ୟ ମହାପ୍ରଭୋର୍ମତମିଦଂ ତତ୍ରାଦରୋ ନ ପରଃ ।"



# ସଙ୍କେତ ସୂଚୀ

୧. ବିଷ୍ଣୁପୁରାଣ, ୩-୧-୪୫
୨. ଋଗ୍‌ବେଦ, ୧ ୧୫୪
୩. ତଦ୍ଦୈବ, ୧-୧୫୫-୪, ୬-୧୦୦-୧
୪. ତଦ୍ଦୈବ, ୬-୧୦୦-୩
୫. ତଦ୍ଦୈବ, ୧-୨୨-୧୮, ୧-୧୫୪-୧
୬. ମୈତ୍ରୀଉପନିଷଦ୍
୭. କଠୋପନିଷଦ୍ ୩-୯
୮. ଋଗ୍‌ବେଦ, ପୁରୁଷସୂକ୍ତ
୯. ତଦ୍ଦୈବ,
୧୦. ଶତପଥ ବ୍ରାହ୍ମଣ, ୧୨-୩-୪
୧୧. ପାଣିନି ସୂତ୍ର, ୪-୯-୧୧
୧୨. ମନୁସ୍ମୃତି, ୧-୧୦
୧୩. ସଂସ୍କୃତ ମହାଭାରତ, ବନପର୍ବ, ୧୧-୪୬ । ୪୭
୧୪. ଈଶ୍ବର ସଂହିତା, ୨୧-୫୬୦ । ୫୬୧
୧୫. ପଦ୍ମପୁରାଣ, ୧୯ ଅଧ୍ୟାୟ ।
୧୬. ଈଶ୍ବର ସଂହିତା, ୧-୫୪ । ୫୬
୧୭. ତଦ୍ଦୈବ, ୧-୬୪ । ୬୬
୧୮. Introduction to the Pancharatra and the Ahirbudenya Somhita, P-P-6-12.
୧୯. ସଂସ୍କୃତ ମହାଭାରତ, ଶାନ୍ତିପର୍ବ, ଶ୍ଳୋ-୬୨; ପୃ-୩୪୮
୨୦. ହରିବଂଶ, ୧-୪୩-୮୪
୨୧. Forward of Jayakhy Samhita, P-7.
୨୨. ଛାନ୍ଦୋଗ୍ୟ ଉପନିଷଦ୍ , ୭-୧-୨ ।
୨୩. କାଣ୍ୱଶାଖା ମହିମା ସଂଗ୍ରହ (ମାଡ୍ରାସ ହସ୍ତଲିଖିତ ପୁସ୍ତକସୂଚୀ, ଭାଗ-୩

୨୪. "× × × ଏକ ଭକ୍ତି ବଶିଷ୍ୟତେ ।" ଶ୍ରୀମଦ୍‌ଭଗବଦ୍‌ଗୀତା, ୭-୧୭ । ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ" ତତ୍ରୈବ, ୧୮-୬୬ ।
୨୫. ଈଶ୍ୱର ସଂହିତା, ପ୍ରଥମ ଅଧ୍ୟାୟ
୨୬. ସଂସ୍କୃତ ମହାଭାରତ, ଶାନ୍ତିପର୍ବ ନାରାୟଣୀୟଖଣ୍ଡ
୨୭. ବୈଷ୍ଣବ, ଶୈବ ଓର ଅନ୍ୟ ଧାର୍ମିକ ମତ, ପୃ-୧୦
ଅନୁବାଦକ ଆର୍ ଜି ଭଣ୍ଡାରକର
୨୮. ସନତ୍କୁମାର ସଂହିତା, ତୃତୀୟ ଅଧ୍ୟାୟ, ୬୬ ୮୩
୨୯. "ଏତସ୍ୟାଂ ଦକ୍ଷିଣ ସ୍ୟାଂ ଦିଶି ଯେ କେଚ ସାତ୍ୱତାଂ ରାଜାନୋ ।"
ଏତରେୟ ବ୍ରାହ୍ମଣ, ୮-୬-୨୪
୩୦. ପାଣିନଙ୍କ ଅଷ୍ଟାଧ୍ୟାୟୀ, ୪, ୬ ଏବଂ ୧୮ ସୂକ୍ତ
୩୧. J. R. S, ୧୦୧୯, ପୃ ୧୩୮ ।
୩୨. "ରାଜସ୍ଥାନର ଘୋଷୁଣ୍ଡିରୁ ପ୍ରାପ୍ତ ଅଭିଲେଖରେ ସଂକର୍ଷଣ ବାସୁଦେବ ଉପାସନା"—List of Indian Inscriptions, No 6, Luder
ଖ) ପରମାନନ୍ଦ ଆଚାର୍ଯ୍ୟ, ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ୨ୟ ଭାଗ, ପୃ-୩୪୮
ଗ ବେସ୍‌ନଗର ଶିଳାଲେଖରେ ବାସୁଦେବ ଉପାସନା ପ୍ରସଙ୍ଗ, List of Indian Inscriptions, No-661 Luder.
୩୩. J S. M. Hopper, The Heritage of Indian Series, Song No-18, Hymns of Alvars.
୩୪. Epigraphica Indica—Vol-11, P-482
୩୫. ବୈଷ୍ଣବ ଶୈବ ଓର ଅନ୍ୟ ଧାର୍ମିକ ମତ, ପୃ-୪୯
୩୫. (କ) ବଳଦେବ ଉପାଧ୍ୟାୟଙ୍କ 'ଭାରତୀୟ ଦର୍ଶନ' ଓ ରାଧାଗୋବିନ୍ଦ ନାଥଙ୍କ 'ଗୌଡ଼ୀୟ ବୈଷ୍ଣବ ଦର୍ଶନ' ଗ୍ରନ୍ଥ ଆଧାରରେ
୩୬. Baud plate of Tribhuban Mahadevi, Epigraphica Indica, Vol-XXIX, P.P-210-219

●

ଦ୍ୱିତୀୟ ପରିଚ୍ଛେଦ

# ଓଡ଼ିଶାରେ ବୈଷ୍ଣବ ଧର୍ମ : ପ୍ରବେଶ ଓ ପ୍ରସାର

**ପାଞ୍ଚରାତ୍ର ଧର୍ମର ଅଭ୍ୟୁଦୟ :—**

ଭାରତର ପ୍ରଖ୍ୟାତ ପଞ୍ଚରାତ୍ର ଧର୍ମ ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ପ୍ରବେଶ କରି ଏଠାରେ ସୁସମ୍ବର୍ଦ୍ଧନା ଲାଭ କରିଥିଲା । ଓଡ଼ିଶାରେ ଏହି ବୈଷ୍ଣବଧର୍ମର ପ୍ରବେଶକାଳକୁ ଖ୍ରୀଷ୍ଟପୂର୍ବ ଶତାବ୍ଦୀ ବୋଲି ଅନୁମାନ କରାଯାଇଥାଏ । ଖ୍ରୀଷ୍ଟପୂର୍ବ ବହୁ ଶତାବ୍ଦୀ ପୂର୍ବେ ଓଡ଼ିଶା ଶବର, ଆନ୍ଧ୍ର ଓ ଓଡ୍ର ମାନଙ୍କର ବାସସ୍ଥଳୀ ଥିଲା ଓ ଓଡ଼ିଶା ଅନାର୍ଯ୍ୟ ଭୂମି ରୂପେ ପରିଗଣିତ ହେଉଥିଲା । ଏହା ଆର୍ଯ୍ୟାବର୍ତ୍ତର ବାହାରେ ଥିଲା । ତେଣୁ ଏହି ସ୍ଥାନରେ ପ୍ରବେଶ କଲେ ଆର୍ଯ୍ୟମାନଙ୍କୁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ୁଥିଲା । ପୂର୍ବେ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ଯେ ସାତ୍ୱତବଂଶୀ କ୍ଷତ୍ରିୟମାନେ ଆର୍ଯ୍ୟାବର୍ତ୍ତରେ ନବସୃଷ୍ଟ ପାଞ୍ଚରାତ୍ରଧର୍ମ ବା ବାସୁଦେବ କୃଷ୍ଣ କେନ୍ଦ୍ରିକ ବୈଷ୍ଣବଧର୍ମକୁ ପ୍ରତିଷ୍ଠା କରିବା ପରେ ଆର୍ଯ୍ୟାବର୍ତ୍ତ ବାହାରେ ତାହାର ପ୍ରଚାର ଓ ପ୍ରସାର ନିମନ୍ତେ ପ୍ରଗାଢ଼ ପ୍ରଚେଷ୍ଟା ଚଳାଇଥିଲେ । ବର୍ତ୍ତମାନର ମଧ୍ୟ ପ୍ରଦେଶ ଅଞ୍ଚଳରେ ସେତେବେଳେ ପାଣ୍ଡୁବଂଶୀ ଓ ଭୋଜବଂଶୀ କ୍ଷତ୍ରିୟମାନେ ରାଜତ୍ୱ କରୁଥିଲେ । ସେମାନେ ସାତ୍ୱତ ବଂଶୀ କ୍ଷତ୍ରିୟମାନଙ୍କର ବଂଶଗତ ମିତ୍ର ଥିବାରୁ, ସାତ୍ୱତଧର୍ମ ବା ପାଞ୍ଚରାତ୍ର ଧର୍ମର ଉପାସକ ଥିଲେ । ତେଣୁ ସେହି ସ୍ଥାନର ପରବର୍ତ୍ତୀକାଳର ରାଜାମାନେ ଏହି ଧର୍ମର ଅନୁଗାମୀ ଥିଲେ । ଓଡ଼ିଶାରେ ପାଞ୍ଚରାତ୍ର ଧର୍ମର ପ୍ରାଚୀନତା ସମ୍ବନ୍ଧରେ କଳ୍ପନା କଲାବେଳେ ମଧ୍ୟପ୍ରଦେଶର ଏହି ପାଣ୍ଡୁବଂଶୀ ଓ ଭୋଜବଂଶୀ ରାଜାମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସ୍ୱୀକାର କରିବାକୁ ପଡ଼ିଥାଏ । ଏ କ୍ଷେତ୍ରରେ ଆମର ଦୃଷ୍ଟି ଆକର୍ଷଣ କରିଥାନ୍ତି ଓଡ଼ିଆ ଜନତାର ପରମ ଆରାଧ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥ ସ୍କନ୍ଦପୁରାଣର ଉତ୍କଳଖଣ୍ଡରୁ ଜଣାପଡ଼ିଥାଏ ଯେ ମାଳବ (ବର୍ତ୍ତମାନ ମଧ୍ୟ-ପ୍ରଦେଶ ଅନ୍ତର୍ଗତ)ର ରାଜା ଇନ୍ଦ୍ରଦ୍ୟୁମ୍ନ ତତ୍କାଳୀନ ଓଡ଼ିଶାର ଶବରରାଜା

ବିଶ୍ୱାବସୁଙ୍କ ସହିତ ପ୍ରଥମେ ଯୁଦ୍ଧ ଓ ପରେ ବନ୍ଧୁତାସ୍ଥାପନ କରି ତାଙ୍କ ସହାୟତାରେ ବିଶ୍ୱାବସୁ ପୂଜିତ ନୀଳମାଧବଙ୍କ ପୀଠରେ ଦାରୁ ନିର୍ମିତ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କର ବିଗ୍ରହ ସ୍ଥାପନ କରିଥିଲେ । ପୌରାଣିକ ବର୍ଣ୍ଣନାର କାବ୍ୟକଳା ମଧ୍ୟରେ ଗୋଟିଏ ସତ୍ୟ ଆମ ମନକୁ ସ୍ପର୍ଶ କରେ; ତାହା ହେଉଛି ଇନ୍ଦ୍ରଦ୍ୟୁମ୍ନ ପ୍ରଥମେ ଓଡ଼ିଶାରେ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ପୂଜାର ପ୍ରଚଳନ କରାଇ ଥିଲେ । କେହି କେହି ଏହି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବିଭିନ୍ନ ଧର୍ମର ଦେବତା ରୂପେ ଚିହ୍ନିତ କରିବାକୁ ଚେଷ୍ଟା କରିଥିଲେ ହେଁ ପ୍ରକୃତରେ ସେ ହେଉଛନ୍ତି ପାଞ୍ଚରାତ୍ର ଧର୍ମର ପ୍ରଧାନ ଉପାସ୍ୟ ଦେବତା । ଶ୍ରୀଜଗନ୍ନାଥ ହିଁ ନିଜେ ସଗୁଣ ବ୍ରହ୍ମ ବାସୁଦେବ । ଉପନିଷଦ୍‌ରେ ବ୍ରହ୍ମଙ୍କର ଜ୍ଞାନଶକ୍ତି, କ୍ରିୟାଶକ୍ତି ଓ ଇଚ୍ଛାଶକ୍ତି - ଏହିପରି ଯେଉଁ ତିନି ଶକ୍ତିର କଳ୍ପନା କରା-ଯାଇଛି, ପାଞ୍ଚରାତ୍ରଧର୍ମର ସଗୁଣ ବ୍ରହ୍ମ ବାସୁଦେବ ହେଉଛନ୍ତି ସେହି ତିଶକ୍ତିର ଆଧାର । ସୃଷ୍ଟି କରିବାର ଇଚ୍ଛାରେ ତାଙ୍କଠାରୁ ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିର କିପରି ବିକାଶ ଘଟେ, ତାହା ପୂର୍ବେ ଆଲୋଚିତ ହୋଇଛି । ଏହି ଶକ୍ତି ଦୁଇଟି ତାଙ୍କର ଅନ୍ତରଙ୍ଗା ଶକ୍ତି । ସେଥିପାଇଁ ବାସୁଦେବଙ୍କ ଅର୍ଚ୍ଚାବତାର (ପ୍ରତିମା) ପାଖରେ ଇଚ୍ଛାଶକ୍ତି ରୂପିଣୀ ଲକ୍ଷ୍ମୀ ଓ କ୍ରିୟାଶକ୍ତି ରୂପୀ ସୁଦର୍ଶନଙ୍କୁ ଉଭୟପାର୍ଶ୍ୱରେ ସ୍ଥାପନ କରି ପୂଜା କରିବାର ବିଧି ପାଞ୍ଚରାତ୍ର ଆଗମମାନଙ୍କରେ ବର୍ଣ୍ଣିତ ଅଛି । ଏ ସମ୍ପର୍କରେ ମହାସନତ୍କୁମାର ସଂହିତାର ବିଷ୍ଣୁପ୍ରତିମାସ୍ଥାପନ ଓ ପୂଜାବିଧି ପ୍ରସଙ୍ଗ ଅନୁଧ୍ୟାନ ଯୋଗ୍ୟ ।

ସେହି ପରମ୍ପରାରେ ବାସୁଦେବରୂପୀ ଶ୍ରୀଜଗନ୍ନାଥଙ୍କ ଏକ ପାର୍ଶ୍ୱରେ କ୍ରିୟାଶକ୍ତି ସୁଦର୍ଶନ ଏବଂ ଅପର ପାର୍ଶ୍ୱରେ ଇଚ୍ଛାଶକ୍ତି ମହାଲକ୍ଷ୍ମୀ ରୂପିଣୀ ସୁଭଦ୍ରାଙ୍କୁ ସ୍ଥାପନ କରାଯାଇଅଛି । ବାସୁଦେବଙ୍କ ଐଶ୍ୱର୍ଯ୍ୟ ପ୍ରକାଶକ ପ୍ରଥମ ବ୍ୟୂହ ହେଉଛନ୍ତି ସଙ୍କର୍ଷଣ । ବାସୁଦେବଙ୍କ ସହିତ ସଙ୍କର୍ଷଣଙ୍କର ସମ୍ପର୍କ ଅତି ଘନିଷ୍ଠ । ବାସୁଦେବଙ୍କର ସୃଷ୍ଟି ପ୍ରକ୍ରିୟା ତାଙ୍କରି ଠାରୁ ପ୍ରଥମେ ଆରମ୍ଭ ହୁଏ ଓ ପ୍ରଳୟ କ୍ରିୟା ମଧ୍ୟ ତାଙ୍କରିଠାରେ ସମାପ୍ତ ହୁଏ । ଏଥିପାଇଁ ସର୍ବଭାରତୀୟ କ୍ଷେତ୍ରରେ ସଙ୍କର୍ଷଣ ବାସୁଦେବ ଉପାସନାର ବିପୁଳ ପ୍ରଚଳନ ଘଟିଥିଲା, ତାହା ପୂର୍ବରୁ ସୂଚାଇ ଦିଆଯାଇଅଛି । ଏହି ପର-

ପ୍ରେକ୍ଷୀରେ ଇନ୍ଦ୍ରଦ୍ୟୁମ୍ନ ଓଡ଼ିଶାରେ ସଙ୍କର୍ଷଣ ରୂପୀ ଶ୍ରୀଜଗନ୍ନାଥ ଓ ସଙ୍କର୍ଷଣ ରୂପୀ ବଳଭଦ୍ରଙ୍କର ପ୍ରତିଷ୍ଠା କରିଛନ୍ତି । ଏଠାରେ ପ୍ରଶ୍ନ ଉଠେ ଯେ ଇନ୍ଦ୍ରଦ୍ୟୁମ୍ନ ଏ ପ୍ରକାର ପଦକ୍ଷେପ ନେଲେ କାହିଁକି ? ପୂର୍ବରୁ କୁହାଯାଇଛି ଯେ ମଧ୍ୟପ୍ରଦେଶର ବିଭିନ୍ନ ରାଜ୍ୟରେ ବାସକରୁଥିବା ପାଣ୍ଡୁବଂଶୀ କ୍ଷତ୍ରିୟଗଣ ପାଞ୍ଚରାତ୍ରଧର୍ମର ଉପାସକ ଥିଲେ ଓ ଏ ଧର୍ମର ଆରାଧ୍ୟ ଦେବତା ସଙ୍କର୍ଷଣ ଏବଂ ବାସୁଦେବଙ୍କର ଉପାସନା କରୁଥିଲେ । ମଧ୍ୟ ପ୍ରଦେଶରୁ ଶିରପୁର ଅଞ୍ଚଳରୁ ଆବିଷ୍କୃତ ଏକ ଶିଳାଲେଖରେ କୌରବ ବଂଶ ଧ୍ୱଂସକାରୀ ଓ କଂସନାଶ୍ୱ ଦନକାରୀ ଶ୍ରୀକୃଷ୍ଣ ଓ ହଳାୟୁଧଙ୍କର ଯେଉଁ ପ୍ରଶସ୍ତିମାନ ରହିଛି, ତାହା ଏହି ଉପାସନାର ସଙ୍କେତ ପ୍ରଦାନ କରିଥାଏ । ଏହି ଶିଳାଲେଖଟି ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ବାଳାର୍ଜୁନ ଗୁପ୍ତଙ୍କ ଦ୍ୱାରା ଖୋଦିତ ହୋଇଥିଲା । ଏଥିରୁ ଅନୁମେୟ ଯେ ଅନ୍ତତଃ ଏହି ସମୟ ପର୍ଯ୍ୟନ୍ତ ପାଣ୍ଡୁବଂଶୀ କ୍ଷତ୍ରିୟ-ମାନେ ସଙ୍କର୍ଷଣ ବାସୁଦେବ ଉପାସନାର ଧାରାଅକ୍ଷୁର୍ଣ୍ଣ ରଖିଥିଲେ । ମଧ୍ୟ ପ୍ରଦେଶାନ୍ତର୍ଗତ ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ସମ୍ଭବତଃ ଏହି ପାଣ୍ଡୁବଂଶୀ କ୍ଷତ୍ରୀୟ ଥିବାରୁ ପାଞ୍ଚରାତ୍ରଧର୍ମାନୁଗାମୀ ରୂପେ ମଧ୍ୟ ପ୍ରଦେଶ ନିକଟବର୍ତ୍ତୀ ଓଡ଼ିଶାରେ ସଙ୍କର୍ଷଣ ବାସୁଦେବଙ୍କର ଉପାସନାର ପ୍ରଚଳନ ଓ ପାଞ୍ଚରାତ୍ର ଧର୍ମର ପ୍ରସାର ନିମନ୍ତେ ଏ ପ୍ରକାର ପଦକ୍ଷେପ ନେଇଥିଲେ । ଅବଶ୍ୟ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତିଙ୍କର ବିଗ୍ରହ ଗୁଡ଼ିକ ଶବର ପୂଜିତ ବିଗ୍ରହ ରୂପେ ନିର୍ମିତ ହୋଇଥିଲେ । ଏ ପ୍ରକାର କାର୍ଯ୍ୟକୁ ଓଡ଼ିଶାରେ ପାଞ୍ଚରାତ୍ରଧର୍ମର ପ୍ରଚାର ପାଇଁ ଶବର ରାଜ ବିଶ୍ୱାବସୁଙ୍କ ସହିତ ମୈତ୍ରୀସ୍ଥାପନର ଏକ ପରିଣତି ରୂପେ ଗ୍ରହଣ କରାଯାଇପାରେ । ପାଞ୍ଚରାତ୍ର ଆଗମମାନଙ୍କର ବହୁସ୍ଥଳରେ ପାଞ୍ଚରାତ୍ର ଧର୍ମର ମୁଖ୍ୟ ଦେବତା ବାସୁଦେବଙ୍କୁ ଶ୍ରୀଜଗନ୍ନାଥ ଓ ପୁରୁଷୋତ୍ତମ ରୂପେ ଉଲ୍ଲେଖ କରାଯାଇଛି ।

"ଶରଣଂ ମେ ଜଗନ୍ନାଥଃ ଶ୍ରୀକୃଷ୍ଣପୁରୁଷୋତ୍ତମ
ତନ୍ନାମି ସ୍ୱଗୁରୌଚୈବ ବ୍ରହ୍ମାଦେବତ ସମାହିତଃ"
—"ଏତଚ୍ଚରଣ ପଦ୍ମନୈଭକ୍ତ୍ୟାନ୍ ପୁରୁଷୋତ୍ତମେ
ପୁନାତି ସର୍ବଭୁବନଂ ହୃଦସ୍ଥେନାଚ୍ୟୁ ତେ ନ ଚ" ସାତ୍ୱତ ତନ୍ତ୍ର

ସେଥିପାଇଁ ଶ୍ରୀଜଗନ୍ନାଥଙ୍କର ଅନ୍ୟନାମ ପୁରୁଷୋତ୍ତମ ଓ ତାଙ୍କର କ୍ଷେତ୍ର ହେଉଛି ପୁରୁଷୋତ୍ତମ କ୍ଷେତ୍ର । ଏହି ଶ୍ରୀଜଗନ୍ନାଥ ପୀଠ ମଥୁରା, ବୃନ୍ଦାବନ ଦ୍ୱାରକା ଭଳି ଏକଦା ପାଞ୍ଚରାତ୍ର ଧର୍ମର ପ୍ରଧାନ କେନ୍ଦ୍ରପୀଠ ଥିଲା । ମଧ୍ୟପ୍ରଦେଶର ମଇହାର ନାମକ ସ୍ଥାନରୁ ମିଳିଥିବା ଏକ ଶିଳାଲେଖ (ଦଶମ ଶତାବ୍ଦୀରେ ଖୋଦିତ) ରୁ ଏହା ଅନୁମାନ କରାଯାଇଥାଏ । ଏହି ଶିଳାଲେଖରେ ପୁରୁଷୋତ୍ତମଙ୍କର ମାହାତ୍ମ୍ୟ ବର୍ଣ୍ଣନା କରି କୁହାଯାଇଛି— ମହୋଦଧିରେ ସ୍ନାନକରି ପୁରୁଷୋତ୍ତମଙ୍କୁ ଦର୍ଶନ କଲେ ସ୍ୱର୍ଗଲାଭ ହୋଇଥାଏ । ଏହାଛଡ଼ା ସ୍କନ୍ଦପୁରାଣ, ବ୍ରହ୍ମପୁରାଣ, ନାରଦୀୟପୁରାଣ, ମତ୍ସ୍ୟପୁରାଣ, କାଳିକାପୁରାଣ, ତନ୍ତ୍ରଯାମଳ ଓ ବ୍ରହ୍ମଯାମଳ ପ୍ରଭୃତି ଗ୍ରନ୍ଥମାନଙ୍କରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ଭୂରି ଭୂରି ପ୍ରଶସ୍ତି ଗାନ କରାଯାଇଛି । ଓଡ଼ିଶାରେ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଓ ସଙ୍କର୍ଷଣ ବାସୁଦେବଙ୍କ ଉପାସନା କେବେଠାରୁ ଘଟିଲା, ତାହା ସଠିକ୍‌ଭାବେ ନିର୍ଣ୍ଣିତ ନହୋଇଥିଲେ ହେଁ, ଏହାର ପ୍ରତିଷ୍ଠା କାଳକୁ ଖ୍ରୀ: ପୂ ଶତାବ୍ଦୀରେ ଅବସ୍ଥାପିତ କରାଯାଇଥାଏ । ସେହିକାଳରୁ ଓଡ଼ିଶାରେ ଶ୍ରୀଜଗନ୍ନାଥ ଉପାସନାର ପ୍ରଚଳନ ହୋଇ ଆସିଛି ।

ଏହି ଶ୍ରୀଜଗନ୍ନାଥ ଉପାସନା କାଳରୁ ହିଁ ଓଡ଼ିଶାରେ ବୈଷ୍ଣବଧର୍ମର ଅନୁପ୍ରବେଶ ଘଟିଛି ଏବଂ କ୍ରମେ କ୍ରମେ ବିଷ୍ଣୁ ଉପାସନା ଯେପରି ଓଡ଼ିଶାରେ ବିସ୍ତୃତି ଲାଭ କରିଛି, ବୈଷ୍ଣବଧର୍ମ ସେହିପରି ଓଡ଼ିଶାର ଜନଜୀବନ ତଥା କଳାସ୍ଥାପତ୍ୟ ଓ ସାହିତ୍ୟକୁ ସବୁଦିଗରୁ ପ୍ରଭାବିତ କରି ଗୌରବମଣ୍ଡିତ କରିଛି । ଓଡ଼ିଶାରେ ବିଷ୍ଣୁପୀଠ ଓ ବିଷ୍ଣୁ ଉପାସନା କ୍ରମେ କ୍ରମେ କିପରି ବ୍ୟାପକ ହୋଇଥିଲା, ତାହାର ବିସ୍ତୃତ ବର୍ଣ୍ଣନା ଦେବା ସମ୍ଭବ ନ ହେଲେ ହେଁ ବୈଷ୍ଣବଧର୍ମ ସମ୍ପର୍କରେ ଆଲୋଚନା କଲାବେଳେ ଏହାର ସଂକ୍ଷିପ୍ତ ସୂଚନା ଦେବା ଆବଶ୍ୟକ ମନେହୁଏ ।

ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀ ହେଉଛି ବୈଷ୍ଣବଧର୍ମ ତଥା ହିନ୍ଦୁ ଧର୍ମର ନବଜାଗରଣ କାଳ । ଭାରତର ପ୍ରଭାବଶାଳୀ ଗୁପ୍ତ ରାଜବଂଶଙ୍କ ଆନ୍ତରିକ ଉଦ୍ୟମ ଫଳରେ ବୈଷ୍ଣବଧର୍ମ ଭାରତ ବର୍ଷରେ ଦ୍ରୁତ ପ୍ରସାରିତ ହୋଇଥିଲା । ଏମାନେ ଥିଲେ ବିଷ୍ଣୁଭକ୍ତ ! ବିଷ୍ଣୁଭକ୍ତ ଗୁପ୍ତବଂଶୀରାଜା ସମୁଦ୍ର ଗୁପ୍ତ କଳିଙ୍ଗ ଜୟକରି ତତ୍‌କାଳୀନ ଓଡ଼ିଶାର ମାଠରବଂଶୀ ରାଜାମାନଙ୍କୁ

ବୈଷ୍ଣବ ଧର୍ମରେ ଦୀକ୍ଷିତ କରିଥିବା କଥା ତାଙ୍କର ଏକ ଅଭିଲେଖରୁ ଜଣାଯାଏ । ଫଳରେ ଓଡ଼ିଶାର ମାଠରବଂଶୀ ରାଜାମାନେ ନିଜକୁ ଭାଗବତ ଧର୍ମରେ ପୃଷ୍ଠପୋଷକ ଓ ନାରାୟଣଙ୍କର ଉପାସକ ରୂପେ ପରିଚିତ କରାଇ ଥିଲେ । ଏହା ମାଠରବଂଶୀ ରାଜା ଶକ୍ତିବର୍ମନଙ୍କର ଏକ ତାମ୍ରଫଳକ (ଖ୍ରୀ ୩୫୦ ୩୭୫), ପ୍ରଭଞ୍ଜନ ବର୍ମା, ଚଣ୍ଡବର୍ମା, ଅନନ୍ତ ଶକ୍ତିବର୍ମାଙ୍କ ତାମ୍ର-ଫଳକମାନଙ୍କରୁ ଜଣାଯାଇଥାଏ । କଳିଙ୍ଗ ବା ଦକ୍ଷିଣ ଓଡ଼ିଶାର ରାଜବଂଶ ଯେ କେବଳ ବୈଷ୍ଣବ ଧର୍ମାନୁରାଗୀ ଥିଲେ ତା ନୁହେଁ ଓଡ଼ିଶାର ଦକ୍ଷିଣ-ପଶ୍ଚିମାଞ୍ଚଳର ତତ୍‌କାଳୀନ (ଖ୍ରୀ ୪ର୍ଥ-୫ମ ଶତାବ୍ଦୀ) ଦକ୍ଷିଣ କୋଶଳ (ବର୍ତ୍ତମାନର କୋରାପୁଟ ଜିଲ୍ଲା)ର ନଳବଂଶୀ ରାଜା, ପଶ୍ଚିମ କୋଶଳ ବା ପଶ୍ଚିମ ଓଡ଼ିଶାର ସରଭପୁରୀୟ ରାଜାମାନେ ମଧ୍ୟ ବୈଷ୍ଣବ ଧର୍ମପ୍ରତି ଦୃଢ଼ର ଆନୁଗତ୍ୟ ପ୍ରକାଶ କରିଥିବେ । ସେମାନଙ୍କର ଶିଳାଲେଖ, ତାମ୍ରଶାସନ ଓ ରୌପ୍ୟ ମୁଦ୍ରାମାନଙ୍କରୁ ଜଣାଯାଏ । ଏହି ରାଜବଂଶୀ ଏଭଳି ବୈଷ୍ଣବ ଧର୍ମାନୁରାଗୀଥିଲେ ଯେ ସେ ବଂଶର ଅଧିଷ୍ଠାର ଭଉଦ୍ୱାରଦେବ ଏବଂ ମହାନାନ୍ନ ରାଜ ନିଜ ନିଜକୁ "ପରମ ବୈଷ୍ଣବ" ଉପାଧିରେ ଭୂଷିତ କରିଥିଲେ ।

ଖ୍ରୀଷ୍ଟୀୟ ଚତୁର୍ଥ\ପଞ୍ଚମ ଶତାବ୍ଦୀ ପରେ ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଶାରେ ଶୈଳୋଦ୍ଭବ ବଂଶୀୟ ରାଜାମାନେ ଶୈବଧର୍ମର ପୃଷ୍ଠପୋଷକତା କରିଥିଲେ ହେଁ ବୈଷ୍ଣବ ଧର୍ମ ପ୍ରତି ସେମାନଙ୍କର ଆନୁଗତ୍ୟ ଊଣା ନଥିଲା । ଏହାର ପରବର୍ତ୍ତୀକାଳରେ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟମ\ନବମ ଶତାବ୍ଦୀରେ ଓଡ଼ିଶା ଭୌମକର ରାଜବଂଶର ଶାସନାଧୀନ ହୋଇଥିଲା । ଏ ସମୟରେ ଓଡ଼ିଶାରେ ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରଭାବ ବୃଦ୍ଧି ପାଇଥିବାରୁ, ଏହାର ପ୍ରଭାବ ଏହି ରାଜବଂଶ ଉପରେ ପଡ଼ିଥିଲେ ହେଁ ରାଜତ୍ୱର ଶେଷାର୍ଦ୍ଧ ଆଡ଼କୁ ପୁନର୍ବାର ହିନ୍ଦୁଧର୍ମ ଓ ଏହାର ପ୍ରଧାନଶାଖା ବୈଷ୍ଣବଧର୍ମ ପୁନଃ ପ୍ରତିଷ୍ଠା ଲାଭ କରିଥିଲା । ଶଙ୍କରାଚାର୍ଯ୍ୟଙ୍କ ବୌଦ୍ଧଧର୍ମ ବିଲୋପ ଚେଷ୍ଟା ଫଳରେ ଏହା ସମ୍ଭବ ହୋଇଥିଲା । ତେଣୁ ଭୌମକର ରାଜବଂଶୀ ରାଜାମାନେ ବୌଦ୍ଧଧର୍ମ ପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ । ଏ ବଂଶର ତ୍ରିଭୁବନଦେବୀ, ଧର୍ମ ମହାଦେବୀ, ଦଣ୍ଡୀ ମହାଦେବୀ ସେଥିପାଇଁ ଦାନ ପତ୍ରରେ ନିଜକୁ ପରମ ବୈଷ୍ଣବୀ ରୂପେ ଘୋଷଣା କରିଥିଲେ ।

**ମାଧବ ଉପାସନା :** ଏହିଭଳି ଭାବେ ପାଞ୍ଚରାତ୍ରଧର୍ମ ବା ବାସୁଦେବ କୈନ୍ଦ୍ରିକ ବୈଷ୍ଣବଧର୍ମ ଓଡ଼ିଶାରେ ଦୃଢ଼ ପ୍ରସାରିତ ହେବା ଫଳରେ ବାସୁଦେବଙ୍କର ବିଭିନ୍ନ ବ୍ୟୂହ, ବ୍ୟୂହାନ୍ତର, ବିଭବମାନଙ୍କର ମୂର୍ତ୍ତିମାନ ପ୍ରତିଷ୍ଠା କରାଯାଇ ତାଙ୍କର ପୂଜାର୍ଚ୍ଚନା କରାଯାଉଥିଲା । ଓଡ଼ିଶାର ବିଭିନ୍ନ ସ୍ଥାନର ନୃସିଂହ ଓ ବରାହ ମନ୍ଦିର ଏହାର ସାକ୍ଷୀରୂପେ ଦଣ୍ଡାୟମାନ । କେନ୍ଦ୍ରାପଡ଼ା ପ୍ରଭୃତି ଓଡ଼ିଶାର କେତେକ ସ୍ଥାନରେ ପ୍ରତିଷ୍ଠିତ ବଳଦେବଙ୍କର ମନ୍ଦିର ସଙ୍କର୍ଷଣ ଉପାସନାର ପ୍ରତୀକ ମାତ୍ର । ଖ୍ରୀଷ୍ଟୀୟ ନବମ ଶତାବ୍ଦୀ ବେଳକୁ ସଙ୍କର୍ଷଣଙ୍କୁ ବାଦଦେଲେ କେବଳ ଶଙ୍ଖ-ଚକ୍ର-ଗଦା ପଦ୍ମ ସୁଶୋଭିତ ଚତୁର୍ଭୁଜ ମୂର୍ତ୍ତି ବାସୁଦେବଙ୍କୁ ମାଧବ ନାମରେ ଉପାସନା କରିବାର ପରମ୍ପରା ପ୍ରଚଳିତ ହୋଇ କାଳକ୍ରମେ ସମଗ୍ର ଓଡ଼ିଶାରେ ଦୃଢ଼ ପ୍ରସାର ଓ ପ୍ରତିଷ୍ଠା ଲାଭ କରିଥିଲା । ନବମରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ମାଧବ ଉପାସନାର ଗୁରୁତ୍ୱ ଉପଲବ୍ଧ ହୋଇଥାଏ । ମାଧବ ଓଡ଼ିଆର ଜନଜୀବନ ସହିତ ଏପରି ସଂଶ୍ଳିଷ୍ଟ ହୋଇ ପଡ଼ିଥିଲେ ଯେ ଏବେ ମଧ୍ୟ ପ୍ରତ୍ୟେକ ଓଡ଼ିଆ ଶୁଭକାର୍ଯ୍ୟର ପ୍ରାରମ୍ଭରେ ମଙ୍ଗଳାଷ୍ଟକ ଶ୍ଳୋକ ମଧ୍ୟରେ ମାଧବଙ୍କୁ ସ୍ମରଣ କରିବା ଦେଖାଯାଇଥାଏ । ଏହାଛଡ଼ା ବାସୁଦେବଙ୍କ ବ୍ୟୂହାନ୍ତରରେ ଥିବା ଦ୍ୱାଦଶ ଦେବତା ଦ୍ୱାଦଶମାସର ଅଧିପତିରୂପେ ନିର୍ଦ୍ଦିଷ୍ଟମାସରେ ପୂଜାର୍ଚ୍ଚନା ଲାଭ କରିବା ଓଡ଼ିଶାରେ ପ୍ରଚଳନ ଥିଲା ।

ଏହି କ୍ରମରେ ମାଘ ମାସରେ ଏମାସର ଅଧିଷ୍ଠାତା ମାଧବ ଉପାସିତ ହୋଇଥାନ୍ତି । ପୁନଶ୍ଚ ଓଡ଼ିଶାର ପ୍ରସିଦ୍ଧ କବି ଜୟଦେବ ଗୀତଗୋବିନ୍ଦରେ ବାରମ୍ବାର ମାଧବ ଓ ରାଧାମାଧବ ଶବ୍ଦ ପ୍ରୟୋଗ କରିଛନ୍ତି । ଏଥିରୁ ମାଧବ ଉପାସନାର ପ୍ରାଚୀନତା ଓ ପରମ୍ପରା ସ୍ପଷ୍ଟ ସୂଚିତ ହୋଇଥାଏ ।

ମାଧବଙ୍କର ଉପାସନା ନିମିତ୍ତ ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରସିଦ୍ଧ ମାଧବ-ମନ୍ଦିରମାନ ଗଢ଼ିଉଠିଥିଲା । ଓଡ଼ିଶାର ସର୍ବପ୍ରାଚୀନ ମାଧବ ମନ୍ଦିର ହେଉଛି ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ପରମ ବୈଷ୍ଣବ ଶତ୍ରୁଭଞ୍ଜଙ୍କ ଦ୍ୱାରା ନିର୍ମିତ ବୌଦ୍ଧନିକଟବର୍ତ୍ତୀ ଗନ୍ଧାଟପାଟି ବା ଗନ୍ଧରାଡ଼ି ଗ୍ରାମର ନୀଳମାଧବ ମନ୍ଦିର । ସେହିଭଳି ଏହି ଶତାବ୍ଦୀର ଏକ ଦାନପତ୍ରରୁ ଜଣାଯାଇଥାଏ ଯେ ଶ୍ୱେତକ ରାଜ୍ୟ (ବର୍ତ୍ତମାନର ଚିକିଟି ଓ ଖେମଣ୍ଡି ଅଞ୍ଚଳ) ଗଙ୍ଗବଂଶୀୟ ରାଜା

ଇନ୍ଦ୍ରବର୍ମଦେବ ଲୋକମାଧବ ଓ ସ୍ୱୟମ୍ଭକେଶ୍ୱରଙ୍କ ପୂଜା ପାଇଁ ଏବଂ ବ୍ରାହ୍ମଣମାନଙ୍କ ନିମିତ୍ତ କେତେକ ଭୂମିଦାନ କରିଥିଲେ । ଗଙ୍ଗ ସାମ୍ରାଜ୍ୟର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବଙ୍କ ଗୋଟିଏ ସ୍ତମ୍ଭଲେଖ (ଖ୍ରୀ. ଅ. ୧୧୫୦-୧୧୮୩ ମଧ୍ୟରେ ଖୋଦିତ)ରୁ ଜଣାଯାଏ ଯେ ସେ ଚୋଡ଼ଗଙ୍ଗ ମାଧବ ନାମକ ଏକ ମାଧବ ବିଗ୍ରହ କଳିଙ୍ଗର ଦକ୍ଷିଣାଞ୍ଚଳର ଶ୍ରୀକାକୁଲମ୍‌ରେ ପ୍ରତିଷ୍ଠା କରିଥିଲେ ।

ପୁନଶ୍ଚ ଓଡ଼ିଶାର ସୋମବଂଶୀ ରାଜାଙ୍କ ଦ୍ୱାରା ମହାନଦୀ କୂଳରେ କଣ୍ଟିଲୋ ଗ୍ରାମରେ ଅବସ୍ଥିତ ନୀଳମାଧବ ମନ୍ଦିର ଏକ ପ୍ରାଚୀନ ମାଧବ ମନ୍ଦିର । ଏହାଛଡ଼ା 'ପ୍ରାଚୀ ମହାତ୍ମ୍ୟ'ରୁ ଜଣାଯାଏ ଯେ ପ୍ରାଚୀନଦୀର ଉଭୟକୂଳରେ ଦ୍ୱାଦଶ ମାଧବ ମନ୍ଦିର ରହିଥିଲା । ଏହି ଦ୍ୱାଦଶ ମାଧବ ମନ୍ଦିର ମଧ୍ୟରୁ ଖ୍ରୀ. ଅ. ୧୧୯୦-୯୮ ମଧ୍ୟରେ ପ୍ରତିଷ୍ଠିତ ନିଆଳିର ମାଧବ ମନ୍ଦିର ଅନ୍ୟତମ । 'ପ୍ରାଚୀମାହାତ୍ମ୍ୟ' ଭଳି 'ବିରଜା ମହାତ୍ମ୍ୟ'ରୁ ମଧ୍ୟ ବୈତରଣୀ ନଦୀ କୂଳରେ ଦ୍ୱାଦଶ ମାଧବ ମନ୍ଦିର ମଧ୍ୟରେ ପୂଜା ପାଉଥିବା କଥା ଜଣାଯାଇଥାଏ । ଏସବୁ ଓଡ଼ିଶାରେ ମାଧବ ଉପାସନା ତଥା ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାରର ପ୍ରାଚୀନତା ଓ ପରମ୍ପରା ସମ୍ପର୍କରେ ସ୍ପଷ୍ଟ ଧାରଣା ଦେଇଥାଏ ।

## ଗୋପୀନାଥ ଉପାସନା

ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀ ବେଳକୁ ମାଧବ ଉପାସନାର ଗୁରୁତ୍ୱ ହ୍ରାସ ପାଇଁ ଗୋପୀନାଥ ଉପାସନାର ମହତ୍ତ୍ୱ ପ୍ରତିଷ୍ଠିତ ହୋଇଥିଲା । ପୂର୍ବରୁ କୁହାଯାଇଛି ଯେ ପାଞ୍ଚରାତ୍ର ଧର୍ମର ମୁଖ୍ୟ ଉପାସ୍ୟ ଦେବତା ବାସୁଦେବକୃଷ୍ଣ ଆଲୱାରଙ୍କ ପ୍ରଭାବରେ ଗୋପାଳକୃଷ୍ଣରେ ପରିଣତ ହୋଇ-ଥିଲେ । ତେଣୁ ଏହି ଗୋପାଳକୃଷ୍ଣଙ୍କର ପ୍ରାଧାନ୍ୟ ମାଧବ ଉପାସନାର ପରବର୍ତ୍ତୀକାଳରେ ଗୋପୀନାଥ ଉପାସନାକୁ ଗୁରୁତ୍ୱ ଅର୍ପଣ କରିଥିଲା । ଚତୁର୍ଭୁଜଧାରୀ ମାଧବ ଏହି କାଳରେ ଦୁଇହସ୍ତ ଏବଂ ମୁରଲୀଧାରୀ ଭାବେ ବିଷ୍ଣୁ-କୃଷ୍ଣ ମିଳିତ ବିଗ୍ରହରେ ପରିଣତ ହୋଇ ଗୋପୀନାଥ ରୂପେ ଉପାସିତ ହେବାକୁ ଲାଗିଲେ । ମାଧୁର୍ଯ୍ୟ ଉଡ଼ପୀଠରେ

ଏଭଳି ଏକ ମୂର୍ତ୍ତିର ପ୍ରତିଷ୍ଠା କରାଇଥିବା ଜଣାଯାଏ । ଓଡ଼ିଶାରେ ଏହି ମୂର୍ତ୍ତିପୂଜାର ସଙ୍କେତ ପ୍ରଦାନ କରନ୍ତି ବର୍ତ୍ତମାନର ପୁରୀ ଜଗନ୍ନାଥ ବଲ୍ଲଭ ମଠରେ ପୂଜିତ ଗୋପୀନାଥ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଗୋପୀନାଥ ମୂର୍ତ୍ତି, ରେମୁଣା, ହୀରାପୁର ଓ ସରକଣାର ଗୋପୀନାଥ ମନ୍ଦିର, କଟକର ସାକ୍ଷୀଗୋପୀନାଥ ମନ୍ଦିର (ବର୍ତ୍ତମାନ ସାକ୍ଷୀଗୋପାଳରେ ଅଧିଷ୍ଠିତ ଦୟାନଦୀ ତୀରବର୍ତ୍ତୀ କାକୁଡ଼ିଆ ଗ୍ରାମର ଗୋପୀନାଥ ମନ୍ଦିର, ପିପିଲି ଓ ଦାଣ୍ଡମୁକୁନ୍ଦ ପୁରର ଗୋପୀନାଥ ମନ୍ଦିର, ଯାଜପୁର ନିକଟବର୍ତ୍ତୀ ଗୋପୀନାଥ ପୁରର ଗୋପୀନାଥ ମନ୍ଦିର ଓ ଭଦ୍ରକର ମାଳତୀପାଟରେ ପ୍ରତିଷ୍ଠିତ ଗୋପୀନାଥ ମନ୍ଦିର ପ୍ରଭୃତି ।

## ଓଡ଼ିଶାରେ ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବ ଧର୍ମ ଓ ତଦୀୟ ଗ୍ରନ୍ଥ ରଚନା

୧୫୦୯ ଖ୍ରୀଷ୍ଟାବ୍ଦରେ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ଆସିଥିଲେ । ସେତେବେଳକୁ ଓଡ଼ିଶାରେ କୃଷ୍ଣ ଉପାସନାର ପ୍ରଚଳନ ଘଟିସାରିଥିଲେ ହେଁ ପ୍ରେମ ଭକ୍ତି ଧର୍ମର ପ୍ରଚାର ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି ହୋଇନଥିଲା । ଶ୍ରୀକ୍ଷେତ୍ରରେ ୨୪ ବର୍ଷ ଅବସ୍ଥାନ କାଳ (୧୫୦୯-୧୫୩୩ ଖ୍ରୀ. ଅ.) ମଧ୍ୟରେ ଏହି ଧର୍ମର ସୃଷ୍ଟି ଓ ପ୍ରବାହ ଦ୍ରୁତ ଗତିରେ ହୋଇଥିଲେ ହେଁ ଶ୍ରୀଚୈତନ୍ୟଙ୍କ ଜୀବନକାଳ ମଧ୍ୟରେ ତାଙ୍କ ସମ୍ପ୍ରଦାୟର ନିର୍ଦ୍ଦିଷ୍ଟ ଧର୍ମ ଓ ଦର୍ଶନମୂଳକ କୌଣସି ଗ୍ରନ୍ଥ ରଚନା ହୋଇପାରିନଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଶ୍ରୀଚୈତନ୍ୟ ସମ୍ପ୍ରଦାୟର ଧର୍ମଦର୍ଶନ ଓଡ଼ିଶାରୁ ଆତ୍ମପ୍ରକାଶ କରିଛି ଏବଂ ଏହି ଓଡ଼ିଶା ଭୂଇଁର ଯୋଗଜନ୍ମା ପଣ୍ଡିତଗଣହିଁ ତାର ନିର୍ଦ୍ଦିଷ୍ଟ ରୂପରେଖ ପ୍ରତିପାଦନ କରିଛନ୍ତି । ଶ୍ରୀଚୈତନ୍ୟ ଯେଉଁ ପ୍ରେମମାର୍ଗର ଭିତ୍ତି ସ୍ଥାପନ କରିଥିଲେ ତାହା ରାଗାନୁଗା ଭକ୍ତି-ମାର୍ଗ ଭାବେ ଗୃହୀତ । ଏହି ରାଗାନୁଗା ଭକ୍ତିମାର୍ଗ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନର ବହୁ ପୂର୍ବରୁ ଓଡ଼ିଶାରେ ସୁପରିଚିତ ଥିଲା । ଏ ସମ୍ପର୍କରେ ଶକ୍ତିସଙ୍ଗମ ତନ୍ତ୍ରରେ ଉଲ୍ଲିଖିତ ଏକ ଉଦ୍ଧୃତିକୁ ଏଠାରେ ଉଲ୍ଲେଖ କରାଯାଇପାରେ—

"ଜଗନ୍ନାଥାତ୍ ପୂର୍ବଭାଗେନ କୃଷ୍ଣାତୀରାନ୍ତଗଃଶିବେ
କଳିଙ୍ଗଦେଶ ସମ୍ପ୍ରୋକ୍ତ ବାମମାର୍ଗ ପରାୟଣଃ
କଳିଙ୍ଗ ଦେଶମାରଭ୍ୟ ପଞ୍ଚାଷ୍ଟ ଯୋଜନଂ ଶିବେ
ଦକ୍ଷିଣସ୍ୟାଂ ମହେଶାନ କଳିଙ୍ଗ ପରିକୀର୍ତ୍ତିତ ।"

ଏହାକୁ ଅଲୱାର୍ ସମ୍ପ୍ରଦାୟର ପ୍ରଭାବ ବୋଲି ଅନୁମାନ କରାଯାଇପାରେ । ଓଡ଼ିଶା ଭୂଇଁରେ ଦକ୍ଷିଣ ଭାରତର ଏହି ଆଲୱାର୍ ସମ୍ପ୍ରଦାୟର ପ୍ରଭାବର ସଙ୍କେତ ଭାବେ ଚୋଳଗଙ୍ଗଙ୍କ ଦ୍ୱାରା (ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ) ନିର୍ମିତ ବ୍ରହ୍ମଗିରିର ଆଲ୍‌ନାଥ ବା ଆଲୱାରନାଥ ମନ୍ଦିରକୁ ଗ୍ରହଣ କରାଯାଇଥାଏ । ଦକ୍ଷିଣାଗତ ଚୋଳଗଙ୍ଗ ଦକ୍ଷିଣ ଭାରତୀୟ ତାମିଲ ଦେଶବାସୀ ଆଲୱାର୍‌ମାନଙ୍କୁ ସେମାନଙ୍କର ଧର୍ମପ୍ରଚାର ନିମନ୍ତେ ସାଦର ସମ୍ବର୍ଦ୍ଧନା ଜଣାଇଥିଲେ । ଫଳରେ ଓଡ଼ିଶାରେ ରାଗମାର୍ଗରେ ଭଗବତ୍ ଉପାସନାର ପରମ୍ପରା ସୃଷ୍ଟି ହୋଇଥିଲା । ରାଗାତ୍ମିକ ଭକ୍ତିମାର୍ଗର ଅଗ୍ରଦୂତ ନିମ୍ବାର୍କ-ସମ୍ପ୍ରଦାୟଭୁକ୍ତ ଶ୍ରୀ ଜୟଦେବଙ୍କର 'ଗୀତଗୋବିନ୍ଦ' ଏହି ପରମ୍ପରାର ଏକ ସୃଷ୍ଟି । ସେଥିପାଇଁ ଜୟଦେବ 'ଗୀତଗୋବିନ୍ଦ'ର ପ୍ରାରମ୍ଭରେ କହିଛନ୍ତି ଯେ ତାଙ୍କର ଏହି କୋମଳକାନ୍ତ ପଦାବଳୀ, ହରିଙ୍କର ସରସ କେଳିକଥା (ରାଗାତ୍ମିକା ପ୍ରେମ ସମ୍ବଳିତ) ସମନ୍ୱିତ । ଏହା ହେଉଛି ହରିସ୍ମରଣର ଶ୍ରେଷ୍ଠମାର୍ଗ । ଭଗବାନ୍‌ଙ୍କର ଅନୁଗ୍ରହ ଲାଭ କରିବା ସକାଶେ ଭାବୋଚ୍ଛ୍ୱାସ-ମଣ୍ଡିତ ଅନ୍ତରର ଆକୁଳ କାତର ଭାବ, ସର୍ବପ୍ରଥମେ ମାଧବେନ୍ଦ୍ର ପୁରୀଙ୍କ ମୁଖରୁ ନିଃସୃତ ହୋଇଥିଲା । ମାଧବେନ୍ଦ୍ର ପୁରୀଙ୍କ ଶିଷ୍ୟ ଈଶ୍ୱର ପୁରୀ ଥିଲେ ଶ୍ରୀଚୈତନ୍ୟଙ୍କ ଦୀକ୍ଷାଗୁରୁ । ଶ୍ରୀଚୈତନ୍ୟ ପିତାଙ୍କୁ ପିଣ୍ଡଦାନ ନିମନ୍ତେ ଗୟା ଯାଇଥିବା କାଳରେ ସେଠାରେ ଈଶ୍ୱରପୁରୀଙ୍କର ସାକ୍ଷାତ ଲାଭ କରି "କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ" ମନ୍ତ୍ର ମାଧ୍ୟମରେ ତାଙ୍କଠାରୁ ଦୀକ୍ଷା ନେଇଥିଲେ । ଏହି ପରମ୍ପରାରେ ଶ୍ରୀଚୈତନ୍ୟ ରାଗମାର୍ଗରେ ଅନୁପ୍ରାଣିତ ହୋଇଥିଲେ । ଈଶ୍ୱର ପୁରୀଙ୍କ ଗୁରୁ ମାଧବେନ୍ଦ୍ର ପୁରୀ ରାଗମାର୍ଗୀ ଓ 'ବାଳଗୋପାଳ' ମୂର୍ତ୍ତି ମଧ୍ୟରେ ଶ୍ରୀକୃଷ୍ଣାରାଧନାର ମୁଖ୍ୟ ଉପାସକ ଥିଲେ । ଏହି ମାଧବେନ୍ଦ୍ର ପୁରୀଙ୍କର ଜନ୍ମସ୍ଥାନ ବାଲେଶ୍ୱର ଥିଲା ବୋଲି ଜଣାଯାଇଛି । (୨) ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଇତିହାସରୁ ଜଣାଯାଇଛି

ଯେ ବାଲେଶ୍ୱରର ମହାଇ ଶାସନ ଅଞ୍ଚଳରେ ଅନେକ ଅଥର୍ବବେଦୀୟ ପୈପ୍ପଳାଦ ଶାଖାର ବ୍ରାହ୍ମଣ ବାସକରୁଅଛନ୍ତି । ଏବେ ସେଠାରୁ ଅଥର୍ବ ବେଦର ପୈପ୍ପଳାଦ ଶାଖା ଆବିଷ୍କୃତ ହୋଇଅଛି । (ଗ) ଅର୍ବାଚୀନ ବୈଷ୍ଣବ ଧର୍ମ (ଗୋପାଳକୃଷ୍ଣ କେନ୍ଦ୍ରିକ)ର ତାପିନୀ ଗ୍ରନ୍ଥଗୁଡ଼ିକ ଏହି ପୈପ୍ପଳାଦ ଶାଖାନ୍ତର୍ଭୁକ୍ତ । ଏଥିରେ ଶ୍ରୀ ଜଗନ୍ନାଥ କ୍ଷେତ୍ରର ପ୍ରଶସ୍ତି ଦେଖିବାକୁ ମିଳେ । ଶ୍ରୀମଦ୍ଭାଗବତ ଗ୍ରନ୍ଥର ଉତ୍କୃଷ୍ଟ ଟୀକାକାର ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ମଧ୍ୟ ଏହି ବାଲେଶ୍ୱରର ମହାଇ ଅଞ୍ଚଳ ଥିଲା । ତେଣୁ ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଶ୍ରୀଚୈତନ୍ୟଙ୍କ ଉତ୍କଳାଗମନର ବହୁପୂର୍ବରୁ ଓଡ଼ିଶାରେ ବୈଷ୍ଣବଧର୍ମ (ରାଗାନୁଗାଭକ୍ତି)ର ସ୍ଥିତି ସୁଦୃଢ଼ ଥିଲା । ତା ନହୋଇଥିଲେ ମାଧ୍ୱେନ୍ଦ୍ର ପୁରୀଙ୍କ ମୁଖରୁ ରାଗାନୁଗା ଭକ୍ତିମାର୍ଗ ପ୍ରକାଶ ଲାଭ କରିପାରିନଥାନ୍ତା ।

'ଶ୍ରୀଚୈତନ୍ୟ ଚରିତାମୃତ'ରେ ପ୍ରଦତ୍ତ ବିବରଣୀ ଅନୁଯାୟୀ ଶ୍ରୀଚୈତନ୍ୟ ପ୍ରଥମେ ଶ୍ରୀକ୍ଷେତ୍ରରେ ପହଞ୍ଚି ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ସହିତ ଯୁକ୍ତି କରି ତାଙ୍କର ଅଦ୍ୱୈତବେଦାନ୍ତବାଦକୁ ଖଣ୍ଡନ କରିଥିଲେ । କିନ୍ତୁ ସେ ସାର୍ବଭୌମଙ୍କ ନିର୍ଦ୍ଦେଶରେ ଗୋଦାବରୀ ତୀରବର୍ତ୍ତୀ ବିଦ୍ୟାନଗରର (ବର୍ତ୍ତମାନର ବିଜୟ ନଗର)ରେ ଅବସ୍ଥାନ କରୁଥିବା ଓଡ଼ିଆ ପୁଅ ରାୟ ରାମାନନ୍ଦ ପଟ୍ଟନାୟକଙ୍କ ସହିତ ସାକ୍ଷାତ କରି ତାଙ୍କଠାରୁ ରାଗାନୁଗା ଭକ୍ତିର ବିଭିନ୍ନ ଦାର୍ଶନିକ ଦିଗଗୁଡ଼ିକ ସମ୍ପର୍କରେ ଗୂଢ଼ ତାତ୍ତ୍ୱିକ ଜ୍ଞାନ ଆହରଣ କରିଥିଲେ, ସେଗୁଡ଼ିକ ମଧ୍ୟରେ କୃଷ୍ଣତତ୍ତ୍ୱ, ରାଧାତତ୍ତ୍ୱ, ପ୍ରେମତତ୍ତ୍ୱ, ସଖୀତତ୍ତ୍ୱ, ସାଧ୍ୟସାଧନା ତତ୍ତ୍ୱ ଇତ୍ୟାଦି ପ୍ରଧାନ ଥିଲା । ରାଗାନୁଗା ଭକ୍ତିର ଏହି ତତ୍ତ୍ୱ-ଗୁଡ଼ିକହିଁ ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଗୃହୀତ ଓ ପ୍ରଚାରିତ ହୋଇଥିଲା । ଶ୍ରୀଚୈତନ୍ୟ ରାମାନନ୍ଦଙ୍କଠାରୁ ଏହି ସମସ୍ତ ତତ୍ତ୍ୱର ସୁନ୍ଦର ବିଶ୍ଳେଷଣ ଶ୍ରବଣ କରି ଚମତ୍କୃତ ହୋଇଥିଲେ । (ଘ) ତେଣୁ ଓଡ଼ିଶା ମାଟିରେ ଏହି ସମସ୍ତ ତତ୍ତ୍ୱର ବୀଜ ପୂର୍ବରୁ ପ୍ରୋଥିତ ନଥିଲେ । ରାମାନନ୍ଦ ସେଗୁଡ଼ିକର ତାତ୍ତ୍ୱିକ ବ୍ୟାଖ୍ୟା ପ୍ରଦାନ କରିବା ସମ୍ଭବ ହୋଇନଥାନ୍ତା । ଅବଶ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ଯେ ରାୟ ରାମାନନ୍ଦ ଦାକ୍ଷିଣାତ୍ୟରେ ଅବସ୍ଥାନ କରୁ-ଥିବାରୁ ସେ ଦକ୍ଷିଣ ଭାରତୀୟମାନଙ୍କର ପ୍ରେମଧର୍ମ ତାଙ୍କୁ ଗଭୀରଭାବେ

ପ୍ରକାଶିତ କରିଥିଲେ । ପୁନଶ୍ଚ ରୂପ, ସନାତନ ଓ ଜୀବ ପ୍ରଭୃତି ଷଡ଼ ଗୋସ୍ୱାମୀମାନଙ୍କ ଦ୍ୱାରା ପ୍ରଚାରିତ ଭକ୍ତି ସମ୍ପର୍କୀୟ ଯେଉଁ ତତ୍ତ୍ୱମୂଳକ ଗ୍ରନ୍ଥମାନ ଆଜି ଲୋକଲୋଚନକୁ ଆସିଛି, ସେଗୁଡ଼ିକ ଶ୍ରୀ ଚୈତନ୍ୟଙ୍କ ଅନୁମୋଦନରେ ରାୟ ରାମାନନ୍ଦ ରୂପ ଓ ସନାତନଙ୍କ ନିଥାନରେ ବୃନ୍ଦାବନ ଓ ନୀଳାଚଳଠାରେ ପ୍ରେମ ଭକ୍ତିର ଯେଉଁ ତାତ୍ତ୍ୱିକ ବ୍ୟାଖ୍ୟା ଦେଇଥିଲେ, ତାହାର ସଙ୍କଳନ ମାତ୍ର । ରାୟ ରାମାନନ୍ଦ ସେମାନଙ୍କୁ ମଧ୍ୟ ଏହି ଗ୍ରନ୍ଥ ରଚନାର ସୂତ୍ର ଶିକ୍ଷା ଦେଇଥିଲେ । କେବଳ ସେତିକି ନୁହେଁ ଗ୍ରନ୍ଥର ଆବଶ୍ୟକୀୟ ସଂଶୋଧନ କାର୍ଯ୍ୟ ମଧ୍ୟ ରାମାନନ୍ଦଙ୍କ ଦ୍ୱାରା ସମାହିତ ହୋଇଥିଲା । ତେଣୁ ପ୍ରକାରାନ୍ତରେ ରାୟ ରାମାନନ୍ଦ ହିଁ ଥିଲେ ପ୍ରକୃତ ଗ୍ରନ୍ଥକର୍ତ୍ତା । ରାୟ ରାମାନନ୍ଦଙ୍କ ଦ୍ୱାରା ଗୋସ୍ୱାମୀମାନେ କିଭଳି ଅନୁପ୍ରାଣିତ ହୋଇଥିଲେ ତାହାର ଅନ୍ୟ ଦୃଷ୍ଟାନ୍ତ ହେଉଛି, ରାୟ ରାମାନନ୍ଦଙ୍କର 'ଜଗନ୍ନାଥ ବଲ୍ଲଭ' ନାଟକର ଅନୁକରଣରେ ରୂପ ଗୋସ୍ୱାମୀଙ୍କର 'ଲଳିତ ମାଧବ ନାଟକ' ଓ ରାମାନନ୍ଦଙ୍କ ପ୍ରତିପାଦିତ ସମସ୍ତ ତତ୍ତ୍ୱକୁ ପରିପୁଷ୍ଟକରି ଜୀବ ଗୋସ୍ୱାମୀଙ୍କର ପ୍ରାମାଣିକ ଷଟ୍‌ସନ୍ଦର୍ଭ ରଚନା । ପରବର୍ତ୍ତୀ କାଳରେ ଏହି ସବୁ ତତ୍ତ୍ୱର ଅନୁକରଣରେ ବହୁ ବୈଷ୍ଣବ ମଧ୍ୟ ଅନେକ ତତ୍ତ୍ୱ ମୂଳକ ଗ୍ରନ୍ଥ ରଚନା କରିଥିଲେ । ଏଠାରେ ସେହି ପ୍ରାଥମିକ ପର୍ଯ୍ୟାୟର ଗ୍ରନ୍ଥକର୍ତ୍ତା ଓ ଗ୍ରନ୍ଥ ସମୂହର ତାଲିକା ପ୍ରଦତ୍ତ ହେଲା ।

| ଗ୍ରନ୍ଥକର୍ତ୍ତା | ଗ୍ରନ୍ଥସମୂହ |
|---|---|
| ଶ୍ରୀ ସନାତନ ଗୋସ୍ୱାମୀ— (ଖ୍ରୀ ୧୪୮୮-୧୫୫୭) | ଭାଗବତାମୃତ, ଦଶମ ଚରିତ, ବୈଷ୍ଣବ ତୋଷଣୀର ଟୀକା, ହରିଭକ୍ତି ବିଳାସ, ରସମୟକଳିକା, ଦିକ୍ ପ୍ରଦର୍ଶିନୀ ଟୀକା । |
| କର୍ଣ୍ଣପୂର — (ଶ୍ରୀ ଚୈତନ୍ୟଙ୍କ ସମସାମୟିକ | ଚୈତନ୍ୟ ଚନ୍ଦ୍ରୋଦୟ ନାଟକ ଚୈତନ୍ୟ ଚରିତ କାବ୍ୟ ବୃନ୍ଦାବନ ଚମ୍ପୂ, କୃଷ୍ଣ-ଗଣୋଦ୍ଦେଶ ଦୀପିକା । |
| ଶ୍ରୀ ରୂପ ଗୋସ୍ୱାମୀ— (ଖ୍ରୀ ୧୪୯୮-୧୫୬୨) | ଭକ୍ତିରସାମୃତ ସାଗର, ଲଘୁଗଣୋଦ୍ଦେଶ ଦୀପିକା, ମଥୁରା ମାହାତ୍ମ୍ୟ, ବୃହତ୍ ଗଣୋଦ୍ଦେଶ ଦୀପିକା, ବୃନ୍ଦାବନ ଧାମ, |

ବୃନ୍ଦାଦେବ୍ୟାଷ୍ଟକ, ହଂସଦୂତ, ଉଦ୍ଧବଦୂତ, ବିଦଗ୍ଧ ମାଧବ, ଲଳିତ ମାଧବ, ଉଜ୍ଜ୍ୱଳ ନୀଳମଣି, କୃଷ୍ଣଜନ୍ମ ତିଥିବିଧି, ଦାନକେଳି କୌମୁଦୀ, ଭକ୍ତି ରସାମୃତ ସିନ୍ଧୁ, ଗୋବିନ୍ଦ ବୃନ୍ଦାବନୀ, ସ୍ତବମାଳା, ଶ୍ରୀ ରୂପ ଚିନ୍ତାମଣି, ପ୍ରେମେନ୍ଦୁ କଣିକା, ପ୍ରେମେନ୍ଦୁ ସାଗର, ଉଜ୍ଜ୍ୱଳକାବଳୀ, ଗୃହ୍ୟପୁଷ୍ପାଞ୍ଜଳି ନାଟକ ଚନ୍ଦ୍ରିକା, ଆଗମପୁରୀ ପ୍ରଯୁକ୍ତାଖ୍ୟା ଚନ୍ଦ୍ରିକା, ଛନ୍ଦୋଷ୍ଟାଦଶ, ସ୍ମରଣ ମଙ୍ଗଳ. (ଏହାମଧ୍ୟରୁ ତତ୍ତ୍ୱମୂଳକ ଗ୍ରନ୍ଥଭାବେ ଭକ୍ତି ରସାମୃତ ସିନ୍ଧୁ, ଉଜ୍ଜ୍ୱଳ ନୀଳମଣି ସ୍ମରଣ ମଙ୍ଗଳ ଓ ଲଘୁ ଭାଗବତାମୃତ ବିଶେଷ ଉଲ୍ଲେଖ ଯୋଗ୍ୟ ।)

ରଘୁନାଥ ଗୋସ୍ୱାମୀ— (ଖ୍ରୀ : ୧୪୯୮-୧୫୭୪)
ମନଃଶିକ୍ଷା, ସ୍ତବାବଳୀ, ଦାନଚରିତ

ଶ୍ରୀ ଜୀବ ଗୋସ୍ୱାମୀ — (ଖ୍ରୀ ୧୫୩୩ ୧୬୧୬)
ଭାଗବତ ସଂନ୍ଦର୍ଭ, କୃଷ୍ଣ ସଂନ୍ଦର୍ଭ, ଭକ୍ତି-ସଂନ୍ଦର୍ଭ, ପରମାତ୍ମା ସଂନ୍ଦର୍ଭ, ପ୍ରୀତି-ସଂନ୍ଦର୍ଭ ଆଦି ଷଟ୍ ସଂନ୍ଦର୍ଭ, ଶ୍ରୀ ରାଧିକା ପଦଚିହ୍ନ, ଗୋପାଳଚମ୍ପୂ, ଭାବାର୍ଥସୂଚକ ଚମ୍ପୂ, ଗାପୂର୍ବୀଭାଷା, କୃଷ୍ଣାର୍ଚ୍ଚନ ଦୀପିକା, ରସାମୃତ ଶେଷ, କୃପାସୁଧି, ସଂକଳ୍ପ କଳ୍ପବୃକ୍ଷ, ମାଧବମହୋତ୍ସବ, ଉଜ୍ଜ୍ୱଳନୀଳମଣି ଟୀକା, ଯୋଗସାରସ୍ତବ ଟୀକା ।

ଲୋଚନ ଦାସ— (ଖ୍ରୀ : ୧୫୨୩-୧୬୧୮)
ଚୈତନ୍ୟ ମଙ୍ଗଳ, ଚୈତନ୍ୟ ପ୍ରେମବିଳାସ

କୃଷ୍ଣଦାସ କବିରାଜ ଗୋସ୍ୱାମୀ —(ଖ୍ରୀ ୧୫୦୬-୧୫୮୬)
ଅଳଙ୍କାର କୌସ୍ତୁଭ, ଚୈତନ୍ୟ ଚରିତାମୃତ, ଗୋବିନ୍ଦ ଲୀଳାମୃତ, କୃଷ୍ଣକର୍ଣ୍ଣାମୃତ ବ୍ୟାଖ୍ୟା ।

| | |
|---|---|
| ଯଦୁନନ୍ଦନ ଦାସ— (ଜନ୍ମ ଖ୍ରୀ. ୧୫୬୮) | କର୍ଣ୍ଣାମୃତ, ଗୋବିନ୍ଦ ଲୀଳାମୃତ, ରସକଦମ୍ବ, କୃଷ୍ଣ କର୍ଣ୍ଣାମୃତ ଗ୍ରନ୍ଥର ପଦ୍ୟାନୁବାଦ । |
| ଦେବକୀ ନନ୍ଦନ ଦାସ— | ବୈଷ୍ଣବ ଅଭିଧାନ |
| ଯଦୁନନ୍ଦନ ଚକ୍ରବର୍ତ୍ତୀ— | ରାଧାକୃଷ୍ଣ ଲୀଳାକଦମ୍ବ |
| ରସିକାନନ୍ଦ ଗୋସ୍ୱାମୀ(ଓଡ଼ିଆ)- (ଜନ୍ମ ଖ୍ରୀ. ୧୫୯୦) | ରତିବିଳାସ, ଶାଖାବର୍ଣ୍ଣନ, ରସିକ ମଙ୍ଗଳ |
| ଶ୍ୟାମାନନ୍ଦ ଗୋସ୍ୱାମୀ(ଓଡ଼ିଆ)- (ଜନ୍ମ ଖ୍ରୀ. ୧୫୩୪) | ବୃନ୍ଦାବନ ତତ୍ତ୍ୱ, ଉପାସନାର ସାର ସଂଗ୍ରହ, ଅଦ୍ୱୈତ ତତ୍ତ୍ୱ । |
| ବିଶ୍ୱନାଥ ଚକ୍ରବର୍ତ୍ତୀ — (ଜନ୍ମ ଖ୍ରୀ. ୧୬୩୩) | ସ୍ତବନାମୃତ, ସ୍ୱପ୍ନ ବିଳାସାମୃତ, ସ୍ତବାମୃତ-ଲହରୀ, ଗୌରାଙ୍ଗ ଲୀଳାମୃତ, ଗୌର ଗଣ ଚନ୍ଦ୍ରିକା, ଚମତ୍କାର ଚନ୍ଦ୍ରିକା, ଐଶ୍ୱର୍ଯ୍ୟ କାଦମ୍ବିନୀ, ମାଧୁର୍ଯ୍ୟ କାଦମ୍ବିନୀ, ସୁବୋଧିନୀ ଆନନ୍ଦ ଚନ୍ଦ୍ରିକା, ସୁଖ ବର୍ତ୍ତିନୀ, ବିଦଗ୍ଧ ମାଧବ ଟୀକା, ଗୋପାଳ ତାପିନୀ ଟୀକା, ଚୈତନ୍ୟ ଚରିତାମୃତ ଟୀକା । |
| ନିତ୍ୟାନନ୍ଦ ଦାସ — (ଜାହ୍ନବୀଦେବୀଙ୍କ ଶିଷ୍ୟ) | ପ୍ରେମ ବିଳାସ |
| ବଳରାମ ଦାସ— | ଶ୍ରୀକୃଷ୍ଣ ଲୀଳାମୃତ କାବ୍ୟ, ସାରାବଳୀ, ଗୁରୁତତ୍ତ୍ୱ ସାର, ହରପାର୍ବତୀ ସମ୍ବାଦ, ଗୁରୁଭକ୍ତି କଳାଚନ୍ଦ୍ରିକା, ପାଷଣ୍ଡ ଦଳନ, ହାଟପତ୍ତନ, ଚୈତନ୍ୟ ଗଣୋଦ୍ଦେଶଦୀପିକା, ବୈଷ୍ଣବାଭିଧାନ । |

ଚୈତନ୍ୟ ସମ୍ପ୍ରଦାୟର ଦାର୍ଶନିକ ସିଦ୍ଧାନ୍ତମୂଳକ ତଥା ବ୍ରହ୍ମସୂତ୍ର ବ୍ୟାଖ୍ୟାମୂଳକ ନିର୍ଦ୍ଦିଷ୍ଟ ଦର୍ଶନ ଗ୍ରନ୍ଥ ନଥିବାରୁ ଭାରତର ଅନ୍ୟାନ୍ୟ ବୈଷ୍ଣବ ସମ୍ପ୍ରଦାୟ ଏହି ସମ୍ପ୍ରଦାୟକୁ ବୈଷ୍ଣବ ସମ୍ପ୍ରଦାୟ ରୂପେ ପ୍ରଥମେ ସ୍ୱୀକାର କରିନଥିଲେ ଓ ଏହା ବିରୋଧରେ ଘୋର ଆପତ୍ତି ଉତ୍ଥାପନ କରିଥିଲେ । ଫଳରେ ଏହାର ସମାଧାନ ନିମନ୍ତେ ଜୟପୁର

ରାଜାଙ୍କ ଦ୍ୱାରା ଖ୍ରୀ ୧୭୩୦-୪୦ ମଧ୍ୟରେ ଏକ ଧର୍ମସଭାର ଆହ୍ୱାନ କରା-ଯାଇଥିଲା । ଏହି ସଭାରେ ଶ୍ରୀଚୈତନ୍ୟ ସମ୍ପ୍ରଦାୟରୁ ପ୍ରତିନିଧି ରୂପେ ଯୋଗଦେଇଥିଲେ ଓଡ଼ିଆ ପୁଅ ବଳଦେବ ବିଦ୍ୟାଭୂଷଣ । ବିଦ୍ୟାଭୂଷଣ ବ୍ରହ୍ମସୂତ୍ରର ଏକ ଭିନ୍ନ ବ୍ୟାଖ୍ୟାମୂଳକ 'ଗୋବିନ୍ଦ ଭାଷ୍ୟ'କୁ ସ୍ୱ ସମ୍ପ୍ରଦାୟର ଦର୍ଶନ ଗ୍ରନ୍ଥ ରୂପେ ସଭାରେ ଉପସ୍ଥାପିତ କରି ଶ୍ରୀ ଚୈତନ୍ୟଙ୍କର ଦାର୍ଶନିକ ମତବାଦକୁ ଅଚିନ୍ତ୍ୟ ଭେଦାଭେଦ ନାମରେ ଦୃଢ଼ଯୁକ୍ତି ଦ୍ୱାରା ପ୍ରତିଷ୍ଠା କରିଥିଲେ । ତାଙ୍କର ଏହି ଯୁକ୍ତି ଓ ଦାର୍ଶନିକ ସିଦ୍ଧାନ୍ତ ଧର୍ମସଭା ଦ୍ୱାରା ଗୃହୀତ ହେବାରୁ ଚୈତନ୍ୟ ସମ୍ପ୍ରଦାୟ ଭାରତର ଏକ ବୈଷ୍ଣବ ସମ୍ପ୍ରଦାୟ ରୂପେ ଉଚ୍ଚ ସ୍ଥାନ ଲାଭ କରିଥିଲା । ଚୈତନ୍ୟ ସମ୍ପ୍ରଦାୟର ଧର୍ମ ଦର୍ଶନର ମୂଳ ପ୍ରବକ୍ତା ରାୟ ରାମାନନ୍ଦ ଓଡ଼ିଶାର ଥିଲେ ବୋଲି ପୂର୍ବେ କୁହାଯାଇଛି । ସେହିପରି ସର୍ବଭାରତୀୟ କ୍ଷେତ୍ରରେ ଶ୍ରୀଚୈତନ୍ୟ ସଂପ୍ରଦାୟକୁ ଏକ ବୈଷ୍ଣବ ସଂପ୍ରଦାୟ ଭାବେ ପ୍ରତିଷ୍ଠା ଦେଇଥିଲେ ମଧ୍ୟ ଓଡ଼ିଆ ପୁଅ ବଳଦେବ ବିଦ୍ୟାଭୂଷଣ । ତେଣୁ ନିର୍ବିବାଦରେ କୁହାଯାଇପାରେ ଯେ ଶ୍ରୀଚୈତନ୍ୟ ସଂପ୍ରଦାୟ-ବୈଷ୍ଣବ ଧର୍ମର ଭିତ୍ତିଭୂମି ଏଇ ଓଡ଼ିଶାର ଓ ପ୍ରଚାର ପ୍ରସାର ଓ ପ୍ରତିଷ୍ଠା ଏଇ ଓଡ଼ିଶାର ବ୍ୟକ୍ତିମାନଙ୍କ ଦ୍ୱାରା ସମ୍ଭବ ହୋଇଥିଲା ।

ଓଡ଼ିଆ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ଶ୍ରୀଚୈତନ୍ୟ ସଂପ୍ରଦାୟକୁ ସର୍ବଭାରତୀୟ କ୍ଷେତ୍ରରେ ପ୍ରଚାର ଓ ପ୍ରସାର କରିବା ନିମନ୍ତେ ଅନେକ ତତ୍ତ୍ୱ ସମ୍ବଳିତ ଦର୍ଶନ ଗ୍ରନ୍ଥମାନ ପ୍ରଣୟନ କରିଥିଲେ । ସେଗୁଡିକ ମଧ୍ୟରେ ସିଦ୍ଧାନ୍ତ ଦର୍ପଣ, ପ୍ରମେୟ ରତ୍ନାବଳୀ, ସିଦ୍ଧାନ୍ତ ରତ୍ନମ୍ ଭାଷ୍ୟ, ସାହିତ୍ୟ କୌମୁଦୀ, ବ୍ୟାକରଣ କୌମୁଦୀ, ତତ୍ତ୍ୱ ସଂଦର୍ଭ ଟୀକା, ସୂକ୍ଷ୍ମାଟୀକା, ଜୈଟୀକା ଈଶୋପନିଷଦ୍ ଭାଷ୍ୟ କାବ୍ୟ କୌସ୍ତୁଭ, ଗୋପାଳତାପିନୀ ଭାଷ୍ୟ, ସାହିତ୍ୟ କୌମୁଦୀ ଟୀକା, ଛନ୍ଦ କୌସ୍ତୁଭ ଭାଷ୍ୟ, ଲଘୁ ଭାଗବତାମୃତ ଟୀକା, ଚନ୍ଦ୍ରାଲୋକ ଗ୍ରନ୍ଥର ଟୀକା, ନାଟକ ଚନ୍ଦ୍ରିକା ଟୀକା, ଶ୍ରୀମଦ୍ଭାଗବତ ଟୀକା (ବୈଷ୍ଣବା ନନ୍ଦିନୀ), ବେଦାନ୍ତ ସ୍ୟମନ୍ତକ, ଗୀତାଭୂଷଣ ଭାଷ୍ୟ, ଶ୍ରୀବିଷ୍ଣୁସହସ୍ରନାମ ଭାଷ୍ୟ, ସଂକ୍ଷେପ ଭାଗବତାମୃତ ଟିପ୍ପଣୀ, ସ୍ତବମାଳା ବିଭୂଷଣ ଭାଷ୍ୟ, ପଦକୌସ୍ତୁଭ ଓ ଶ୍ରୀ ଶ୍ୟାମାନନ୍ଦ ଶତକ ଟୀକା ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଶ୍ରୀଚୈତନ୍ୟ ଶ୍ରୀକ୍ଷେତ୍ରରେ ଦୀର୍ଘ ଚତୁର୍ବିଂଶତି ବର୍ଷ ଅବସ୍ଥାନ କରି ସମଗ୍ର ଓଡ଼ିଶାରେ ତାଙ୍କ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ । ଅନୁମାନ ଯୋଗ୍ୟ ଯେ ତତ୍କାଳୀନ ମୁସଲମାନ ଶାସିତ ବଙ୍ଗଳାରେ ଜନ ଜୀବନ ବିଶୃଙ୍ଖଳତା ଓ ଆଧ୍ୟାତ୍ମିକ ଜୀବନର କଳୁଷିତା ତଥା ସାଧନାର ପ୍ରତିକୂଳ ପରିବେଶରେ ଅଣନିଃଶ୍ୱାସୀ ହୋଇ ଶ୍ରୀଚୈତନ୍ୟ ସ୍ୱାଧୀନ ଓଡ଼ିଶାର ସର୍ବଧର୍ମ ସମନ୍ୱୟ ପୀଠ ଶ୍ରୀଜଗନ୍ନାଥ ଧାମକୁ ନିଜର ସାଧନାକ୍ଷେତ୍ରରୂପେ ଗ୍ରହଣ କରିଥିଲେ । ସେତେବେଳେ ଓଡ଼ିଶାର ରାଜା ପ୍ରତାପରୁଦ୍ର ଶ୍ରୀଚୈତନ୍ୟଙ୍କ ଅଲୌକିକ ମହିମାରେ ଆକୃଷ୍ଟ ହୋଇ ତାଙ୍କର ପ୍ରେମଧର୍ମକୁ ଗ୍ରହଣ କରିଥିଲେ । (୪) ଗଜପତି ପ୍ରତାପରୁଦ୍ର ଦେବଙ୍କ ପୃଷ୍ଠପୋଷକତା ଓ ରାୟ ରାମାନନ୍ଦଙ୍କ ପ୍ରଚାର ପ୍ରଚେଷ୍ଟାରେ ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ପ୍ରେମଧର୍ମ ଷୋଡ଼ଶ ଶତାବ୍ଦୀରୁ ଓଡ଼ିଶାରେ ପ୍ରବାହିତ ହୋଇଥିଲା । ଓଡ଼ିଶାରେ ପ୍ରଚଳିତଥିବା ଯୋଗାଶ୍ରୟୀ ଜ୍ଞାନମିଶ୍ରା ଭକ୍ତିଧର୍ମ ଅବଶ୍ୟ କେତେକାଂଶରେ ଏହି ଧର୍ମର ପ୍ରଚାର ପଥରେ ବାଧାସୃଷ୍ଟି କରିଥିଲା । କିନ୍ତୁ ପରବର୍ତ୍ତୀକାଳରେ ଜ୍ଞାନମିଶ୍ରା ଭକ୍ତି ଧର୍ମର ଉପାସକ ପଞ୍ଚସଖା ଗୋଷ୍ଠୀ ଏହି ଧର୍ମଦ୍ୱାରା ସିକ୍ତ ହେବାକୁ ବାଧ୍ୟ ହୋଇଥିଲେ । ମାତ୍ର ଉଭୟ ସାଧନା ମାର୍ଗ ମଧ୍ୟରେ ପ୍ରଚ୍ଛନ୍ନ ବନ୍ଦ କଷାକଷି ଲାଗିରହିଥିଲା । (୫) ଶ୍ରୀଚୈତନ୍ୟ ଶ୍ରୀଜଗନ୍ନାଥଙ୍କଠାରେ କୃଷ୍ଣତ୍ତ୍ୱ ଆରୋପ କରିବାର କୌଶଳରେ ପଞ୍ଚସଖା-ମାନଙ୍କୁ ନିଜ ଧର୍ମଆଡ଼କୁ ଆକୃଷ୍ଟ କରିଥିଲେ । ଫଳରେ ଶ୍ରୀଚୈତନ୍ୟଙ୍କ ସହିତ ଉଦ୍ଦଣ୍ଡ ନୃତ୍ୟରେ ପଞ୍ଚସଖା ଗୋଷ୍ଠୀ ଯୋଗଦେଇ ପ୍ରେମଧର୍ମ ପ୍ରଚାରରେ ସହଯୋଗ କରିଥିବା ବିଭିନ୍ନ ରଚନାରୁ ଜଣାପଡ଼େ । ସଂକୀର୍ତ୍ତନ ଛଳରେ ଶ୍ରୀକ୍ଷେତ୍ରର ଚତୁପାର୍ଶ୍ୱରେ ଭକ୍ତମଣ୍ଡଳୀ ସହିତ ଭ୍ରମଣକରି ନିଜର ଭକ୍ତି ଧର୍ମକୁ ପ୍ରଚାର କରୁଥିଲେ ।

ଓଡ଼ିଶାରେ ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ ରାଗାନୁଗା ଭକ୍ତିଧର୍ମ ଯଥେଷ୍ଟ ଆଦରଲାଭ କରିଥିଲେ ହେଁ ଶ୍ରୀଚୈତନ୍ୟଙ୍କ ଜୀବଦ୍ଦଶା ମଧ୍ୟରେ ଏହାର ପ୍ରଚାର ଓ ପ୍ରସାର ନିମିତ୍ତ କୌଣସି ଆନୁଷ୍ଠାନିକ ପଦକ୍ଷେପ ନିଆଯାଇ ପାରି ନଥିଲା । ଶ୍ରୀଚୈତନ୍ୟଙ୍କ ତିରୋଧାନର ବହୁ ବର୍ଷ ପରେ ଏହି କାର୍ଯ୍ୟକ୍ରମ ଜୀବଗୋସ୍ୱାମୀଙ୍କ ପ୍ରଚେଷ୍ଟାରେ ଗ୍ରହଣ କରାଯାଇଥିଲା । ସେଥିପାଇଁ

ବୃନ୍ଦାବନରେ ଏହି ଭକ୍ତିମାର୍ଗର ଏକ ପ୍ରଚାର କେନ୍ଦ୍ର ପ୍ରତିଷ୍ଠା କରାଯାଇ ବିଭିନ୍ନ ଗୋସ୍ୱାମୀମାନଙ୍କୁ ଧର୍ମ ଦର୍ଶନ ସଂପର୍କୀୟ ତାଲିମ ପ୍ରଦାନ କରା-ଯାଉଥିଲା । ସମଗ୍ର ଭାରତରେ ଏହି ପ୍ରେମଧର୍ମକୁ ପରିବ୍ୟାପ୍ତ କରିବା ନିମନ୍ତେ ଏହି ତାଲିମ ପ୍ରାପ୍ତ ଗୋସ୍ୱାମୀମାନଙ୍କୁ ନିଯୁକ୍ତ କରାଯାଇଥିଲା । ଏହି ଗୋସ୍ୱାମୀମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ଶ୍ରୀନିବାସ ଆଚାର୍ଯ୍ୟ, ଶ୍ରୀ ନରୋତ୍ତମ ଦାସ ଓ ଶ୍ୟାମାନନ୍ଦ ଦାସ । ଶ୍ୟାମାନନ୍ଦ ଉତ୍କଳରେ ଓ ଅନ୍ୟ ଦୁଇଜଣ ବଙ୍ଗଳାରେ ଧର୍ମପ୍ରଚାର କରିବାର ଦାୟିତ୍ୱ ନେଇଥିଲେ । [୬] ଏମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମର ପ୍ରସାର ଓ ପ୍ରାଦେଶିକ ଭାଷାରେ ତଦ୍‌ସଂପର୍କୀୟ ପ୍ରାମାଣିକ ଗ୍ରନ୍ଥ ରଚନା । ଫଳରେ ଜନସାଧାରଣ ଏହି ସଂପ୍ରଦାୟର ଧର୍ମତତ୍ତ୍ୱ ଓ ସାଧନାମାର୍ଗ ସହିତ ଉତ୍ତମ ରୂପେ ପରିଚିତ ହୋଇ ତତ୍ତ୍ୱକୁ ହୃଦୟଙ୍ଗମ କରିପାରିବେ ଓ ଧର୍ମରେ ଦୀକ୍ଷିତ ହୋଇ ସାଧକ ଜୀବନରେ ତାହାର ଯଥାର୍ଥତା ଅନୁସରଣ କରିପାରିବେ ।

ଓଡ଼ିଶାରେ ଏହି ବୈଷ୍ଣବ ଧର୍ମର ପ୍ରଚାର ଓ ଓଡ଼ିଆ ଭାଷାରେ ଉକ୍ତ ଧର୍ମର ତତ୍ତ୍ୱମୂଳକ ଗ୍ରନ୍ଥର ଅନୁବାଦ କରିବାର ଲକ୍ଷ୍ୟ ନେଇ ଅନେକ ପ୍ରାମାଣିକ ଗ୍ରନ୍ଥ ସହିତ ଓଡ଼ିଆ ପୁଅ ଶ୍ୟାମାନନ୍ଦ ୧୭୧୦ ଖ୍ରୀ. ଅରେ ଓଡ଼ିଶାରେ ପ୍ରବେଶ କରି ବାଲେଶ୍ୱର [ମରାଇ ଶାସନ ଅଞ୍ଚଳୀ]ର ମୁରାରି [ପରେ ରସିକାନନ୍ଦ ଗୋସ୍ୱାମୀ ରୂପେ ଖ୍ୟାତ] ନାମକ ଜନୈକ ବ୍ୟକ୍ତିଙ୍କୁ ଶିଷ୍ୟ ରୂପେ ଗ୍ରହଣ କରି ତାଙ୍କ ସାହାଯ୍ୟରେ ଓଡ଼ିଶାର ଉତ୍ତର ପଶ୍ଚିମାଞ୍ଚଳରେ ଧର୍ମ ପ୍ରଚାର କରିଥିଲେ । ମୁରାରି (ରସିକାନନ୍ଦ) ଧର୍ମ ପ୍ରଚାର ନିମନ୍ତେ ପୁରୀ ପର୍ଯ୍ୟନ୍ତ ଯାତ୍ରା କରିଥିବା ଜଣାଯାଏ । (୭) ରସିକାନନ୍ଦ ଧର୍ମ ପ୍ରଚାର କାଳରେ ବହୁ ରାଜା ମହାରାଜାଙ୍କୁ ଏହି ଧର୍ମରେ ଦୀକ୍ଷିତ କରିଥିଲେ । ତାଙ୍କ ଧର୍ମ ପ୍ରଚାର ଜୀବନର ଏକ ସ୍ମରଣଯୋଗ୍ୟ ଘଟଣା ହେଉଛି ମୟୂରଭଞ୍ଜର ରାଜା ବୈଦ୍ୟନାଥ ଭଞ୍ଜଙ୍କ ପୃଷ୍ଠ-ପୋଷକତାରେ ଏକ ରାଧାମୂର୍ତ୍ତି ନିର୍ମାଣ କରି ଗୋପୀନାଥଙ୍କ ସହିତ ବିବାହ

କରାଇବା । (୮) ଶ୍ୟାମାନନ୍ଦ ଓ ରସିକାନଂକ ଉଭୟ ଓଡ଼ିଆ ଥିବାରୁ ତାଙ୍କ ବ୍ୟକ୍ତିତ୍ୱରେ ଓଡ଼ିଶାବାସୀ ବହୁଧା ପ୍ରଭାବିତ ହୋଇଥିଲେ ଓ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହି ଦୁଇ ଗୋସ୍ୱାମୀ ଓଡ଼ିଶାରେ ଚୈତନ୍ୟ ସମ୍ପ୍ରଦାୟର ବୈଷ୍ଣବ ଧର୍ମ ପ୍ରଚାର କରିବା ଦିଗରେ ଯେଉଁ ଉଦ୍ୟମ କରିଥିଲେ ତାହା 'ଭକ୍ତିରତ୍ନାକର', 'ରସିକ ମଙ୍ଗଳ' ଓ 'ଶ୍ୟାମାନନ୍ଦ ପ୍ରକାଶ' ଗ୍ରନ୍ଥମାନଙ୍କରେ ସବିଶେଷ ବର୍ଣ୍ଣିତ ହୋଇଛି ।

ପ୍ରାୟ ୧୬୫୦ ଖ୍ରୀଷ୍ଟାବ୍ଦବେଳକୁ ରସିକାନନ୍ଦଙ୍କର ଧର୍ମ ପ୍ରଚାର କାର୍ଯ୍ୟ ପୂର୍ଣ୍ଣତା ଲାଭ କରିଥିଲା । ଏ ସମୟକୁ ସମଗ୍ର ଉତ୍କଳର ଅର୍ଦ୍ଧାଧିକ ଅଞ୍ଚଳ ଶ୍ରୀ ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମ ସ୍ରୋତରେ ସିକ୍ତ ହୋଇସାରିଥିଲା ଓ ଧର୍ମର କ୍ରମ ପ୍ରସାର ସହିତ ଓଡ଼ିଶାରେ ଉକ୍ତ ଧର୍ମର ତତ୍ତ୍ୱମୂଳକ ଗ୍ରନ୍ଥରଚନା ଏକ ଅନିବାର୍ଯ୍ୟ ପରିଣତି ହୋଇପଡ଼ିଥିଲା । ଏହି ପରିଣତିର ପ୍ରଥମ ଅଗ୍ରଦୂତ ହେଉଛନ୍ତି ଭୂପତି ପଣ୍ଡିତଙ୍କ 'ପ୍ରେମପଞ୍ଚାମୃତ' ଏବଂ ବୃନ୍ଦାବତୀ ଦାସୀଙ୍କର 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ଗ୍ରନ୍ଥ । ବୃନ୍ଦାବତୀ ଦାସୀଙ୍କର ଏହି ଗ୍ରନ୍ଥଟିରେ କୃଷ୍ଣତତ୍ତ୍ୱ, ରାଧାତତ୍ତ୍ୱ, ପ୍ରେମ ତତ୍ତ୍ୱ, ଧାମ ତତ୍ତ୍ୱ, ସଖୀତତ୍ତ୍ୱ ଆଦି ଚୈତନ୍ୟ ପନ୍ଥୀ ବୈଷ୍ଣବ ଧର୍ମର ବହୁ ତତ୍ତ୍ୱ ବର୍ଣ୍ଣିତ । ଅନୁରୂପ ଭାବେ 'ପ୍ରେମ ପଞ୍ଚାମୃତ' ପ୍ରେମ ତତ୍ତ୍ୱ, ଗୋପୀତତ୍ତ୍ୱ, ରାଧାତତ୍ତ୍ୱାଦି ବର୍ଣ୍ଣନାରେ ରସୋଜ୍ଜ୍ୱଳ ହୋଇଉଠିଛି ।

ଶ୍ରୀଚୈତନ୍ୟ ସମ୍ପ୍ରଦାୟର ତତ୍ତ୍ୱମୂଳକ ଗ୍ରନ୍ଥରଚନା ଦିଗରେ ପ୍ରଥମ ଓ ସ୍ମରଣୀୟ ପଦକ୍ଷେପ ନେଇଥିଲେ ନାରୀକବି ବୃନ୍ଦାବତୀ ଦାସୀଙ୍କ ପରିବାର । ନାରୀ କବି ଥିଲେ ଖୋରଧା ମଲପଡ଼ାର ଜମିଦାର ବଂଶର କୁଳବଧୂ । ଏହି ଜମିଦାର ବଂଶ ଶ୍ୟାମାନନ୍ଦ ଗୋସ୍ୱାମୀଙ୍କର ଗୁରୁ ହୃଦୟ ଚୈତନ୍ୟଙ୍କ ପରିବାରଭୁକ୍ତ ଥିଲେ । ତେଣୁ ବୃନ୍ଦାବତୀଙ୍କ ସମଗ୍ର ପରିବାର ଏହି ଧର୍ମର ତତ୍ତ୍ୱମୂଳକ ଗ୍ରନ୍ଥରଚନାରେ ହାତଦେଇ ଶୁଦ୍ଧାଭକ୍ତି ମାର୍ଗକୁ ସୁସମୃଦ୍ଧ ଓ ବ୍ୟାପକ କରିଥିଲେ । ବୃନ୍ଦାବତୀଙ୍କ ସ୍ୱାମୀ ଚନ୍ଦ୍ରଶେଖର ଦାସଙ୍କ "ଶ୍ରୀକୃଷ୍ଣ ତତ୍ତ୍ୱ ଚନ୍ଦ୍ରୋଦୟ ପୁତ୍ର ରାମଦାସଙ୍କ "ହରିଭକ୍ତି ଚଂଦ୍ରୋଦୟ' ଓ 'ଭକ୍ତି ରତ୍ନାବଳୀ' ଏବଂ ନାତି କୃପାସିନ୍ଧୁ ଦାସଙ୍କର 'ଉପାସନା ଦୀପିକା',

ଉପାସନା ଚଂଦ୍ରୋଦୟ 'ଗ୍ରନ୍ଥଗୁଡ଼ିକ ସମ୍ପୂର୍ଣ୍ଣ ତତ୍ତ୍ୱମୂଳକ । ଏହି ଗ୍ରନ୍ଥଗୁଡ଼ିକ ମଧ୍ୟରୁ କୃପାସିନ୍ଧୁ ଦାସଙ୍କ ଉପାସନା ଦୀପିକା' ଗ୍ରନ୍ଥଟି ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମତତ୍ତ୍ୱ ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହା ରୂପ ଗୋସ୍ୱାମୀଙ୍କ 'ଭକ୍ତି ରସାମୃତ ସିନ୍ଧୁ ଓ ଉଜ୍ଜ୍ୱଳ ନୀଳମଣି ଗ୍ରନ୍ଥ ଆଧାରରେ ପରିପୁଷ୍ଟ ।

ତତ୍ତ୍ୱମୂଳକ ଗ୍ରନ୍ଥ ରଚନା କରିବାର ଏହି ପରମ୍ପରାକୁ ଅନୁସରଣ କରି ପରବର୍ତ୍ତୀକାଳରେ ବହୁ ଓଡ଼ିଆ ବୈଷ୍ଣବ କବି ତତ୍ତ୍ୱମୂଳକ ତଥା ରାଧାକୃଷ୍ଣ ଲୀଳାମୂଳକ ଗ୍ରନ୍ଥମାନ ରଚନା କରିଥିଲେ । ତତ୍ତ୍ୱମୂଳକ ଗ୍ରନ୍ଥ ହିସାବରେ ହରପ୍ରକଣ୍ଠ ଦାସଙ୍କ ରାଧାକୃଷ୍ଣ ଅଷ୍ଟକାଳ ଲୀଳାମୂଳକ 'ସ୍ମରଣ ମଙ୍ଗଳ' ତାଙ୍କର ଶିଷ୍ୟ ଦାଶରଥି ଦାସଙ୍କ 'ସାଧନ ସୁଧାକର' ନାରାୟଣ ଦାସଙ୍କ 'ରାଗାଧି ଅମୃତ' ଓ 'ପଞ୍ଚାମୃତ ସିନ୍ଧୁବିଂଦୁ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏହି ପ୍ରଥମ ତିନିକବି ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟରୁ ଚତୁର୍ଥ ଦଶକ ମଧ୍ୟରେ ଓ ନାରାୟଣ ଦାସ ଅଷ୍ଟାଦଶ ଶତାବ୍ଦୀରେ ଏହି ଗ୍ରନ୍ଥଗୁଡ଼ିକୁ ରଚନା କରିଥିଲେ । ଏହି ଗ୍ରନ୍ଥମାନଙ୍କରେ ରାଧାତତ୍ତ୍ୱ, କୃଷ୍ଣତତ୍ତ୍ୱ, ପ୍ରେମ ତତ୍ତ୍ୱ, ଅଷ୍ଟକାଳ ଲୀଳାତତ୍ତ୍ୱ ପ୍ରଭୃତି ଶୁଦ୍ଧରାଗାନୁଗା ଭକ୍ତିର ବିଭିନ୍ନ ତତ୍ତ୍ୱ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି । ଏହି ତତ୍ତ୍ୱମୂଳକ ଗ୍ରନ୍ଥ ରଚନା କ୍ଷେତ୍ରରେ ସଦାନଂଦ କବିସୂର୍ଯ୍ୟ ବ୍ରହ୍ମା ଓ ଅଭିମନ୍ୟୁ ଚିରସ୍ମରଣୀୟ । ସଦାନନ୍ଦଙ୍କ ସମଗ୍ର ଗ୍ରନ୍ଥଗୁଡ଼ିକରେ ଊଣାଅଧିକେ ରାଗାନୁଗା ଭକ୍ତିତତ୍ତ୍ୱ ବର୍ଣ୍ଣିତ ଥିଲେ ହେଁ ତାଙ୍କର 'ପ୍ରେମତରଙ୍ଗିଣୀ', 'ନାମ ଚିନ୍ତାମଣି', 'ନିଷ୍ଠା ନୀଳମଣି' ଓ 'ବ୍ରଜଲୀଳାମୃତ' ଗ୍ରନ୍ଥଗୁଡ଼ିକ ସମ୍ପୂର୍ଣ୍ଣ ବୈଷ୍ଣବୀୟ ତତ୍ତ୍ୱଗର୍ଭିତ । ବୈଷ୍ଣବ ଧର୍ମ ଦର୍ଶନର ଚମତ୍କାର ଉପସ୍ଥାପନ କରିବାରେ କବି ଅଭିମନ୍ୟୁ ମଧ୍ୟ 'ବିଦଗ୍ଧ ଚିନ୍ତାମଣି' ଓ ପ୍ରେମ ଚିନ୍ତାମଣି ଗ୍ରନ୍ଥଦ୍ୱୟରେ ତାଙ୍କର ସିଦ୍ଧହସ୍ତତା ପ୍ରତିପାଦନ କରିଛନ୍ତି ।

କେବଳ ତତ୍ତ୍ୱମୂଳକ ଗ୍ରନ୍ଥ ରଚନା ନୁହେଁ ରାଧାକୃଷ୍ଣ ଭକ୍ତିମୂଳକ ଗ୍ରନ୍ଥ ରଚନା କରିବା ମଧ୍ୟ ଓଡ଼ିଆ କବିମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା । ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ଶୁଦ୍ଧାଭକ୍ତି ଧର୍ମ ଓଡ଼ିଶାରେ ଏଭଳି ପରିବ୍ୟାପ୍ତ

ହୋଇଥିଲା ଯେ ତାହା ସମଗ୍ର ଜନଜୀବନକୁ ବିଭିନ୍ନ ଦିଗରୁ ଗଭୀର ଭାବେ ପ୍ରଭାବିତ କରିଥିଲା । ଫଳରେ ଓଡ଼ିଆ କବିମାନେ ରାଧାକୃଷ୍ଣଙ୍କୁ ଉପଜୀବ୍ୟ କରି ଯେଉଁଭଳି ସଂଖ୍ୟାଧିକ କାବ୍ୟ ରଚନା କରିଥିଲେ, ଗୀତିକବିମାନେ ମଧ୍ୟ ସେହିଭଳି 'ଭକ୍ତିରସାତ୍ମକ ଗୀତିକବିତା ରଚନା କରି ଉତ୍କଳର ଆଧ୍ୟାତ୍ମିକ ତଥା ସାଂସ୍କୃତିକ ଜୀବନରେ ଭକ୍ତିର ଉତ୍ତାଳ ତରଙ୍ଗ ଖେଳାଇ ଦେଇଥିଲେ । ବିଭିନ୍ନ ଯାତ୍ରାକର୍ତ୍ତାମାନେ ମଧ୍ୟ ରାସଲୀଳା, କୃଷ୍ଣଲୀଳା ପ୍ରଭୃତି ରଚନା ଓ ତାହାର ଅଭିନୟ ମାଧ୍ୟମରେ ସମଗ୍ର ଜନଜୀବନକୁ ପ୍ରଭାବିତ କରି ବୈଷ୍ଣବ ଧର୍ମକୁ ଏକ ଗଣଧର୍ମରେ ପରିଣତ କରିଥିଲେ । ଓଡ଼ିଶାର ବିଭିନ୍ନ ଲୋକନାଟକ ମାଧ୍ୟମରେ ମଧ୍ୟ ରାଧାକୃଷ୍ଣ ଲୀଳାର ପ୍ରଚାର ଓ ପ୍ରସାର କାର୍ଯ୍ୟ ତ୍ୱରାନ୍ୱିତ ହୋଇଥିଲା ।

## ସଙ୍କେତ ସୂଚୀ


୧- Sri Sukumar Sen, A History of Brajabuli Literature, P.-13

୨- Paramananda Acharya, Studies in Orissan, History, Archeology and Archieve, P.-449.

୩- ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ଅଷ୍ଟମ ପରିଚ୍ଛେଦ ।

୪- ମାଦଳାପାଞ୍ଜି (ରାଜଭୋଗ ଇତିହାସ), ପୃ-୫୪

୫- ଅଧ୍ୟାପକ ଆଶୁତୋଷ ପଟ୍ଟନାୟକଙ୍କ ପିଏଚ୍. ଡି. ଗବେଷଣାତ୍ମକ ନିବନ୍ଧ 'ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀରାଧା', ପୃ-୩୦୦

୬- ବୈଷ୍ଣବ ସମ୍ପ୍ରଦାୟଂକା ସାହିତ୍ୟ ଔର ସିଦ୍ଧାନ୍ତ, ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ, ପୃ-୪୩୩

୭- ନରହରି ଚକ୍ରବର୍ତ୍ତୀଙ୍କ 'ଭକ୍ତି ରତ୍ନାକର', ଓ ଗୋପୀଜନ ବଲ୍ଲଭ ଦାସଙ୍କ 'ରସିକ ମଙ୍ଗଳ'ରେ ପ୍ରଦତ୍ତ ବିବରଣୀ ଅନୁଯାୟୀ ।

୮- ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ପରିଚ୍ଛେଦ ୧୯ ଓ ଅନ୍ତ୍ୟଲୀଳା ପରିଚ୍ଛେଦ ୪ ।




## ତୃତୀୟ ପରିଚ୍ଛେଦ

# ଓଡ଼ିଆ କୃଷ୍ଣକାବ୍ୟରେ ପ୍ରତିଫଳିତ ଦାର୍ଶନିକ ତତ୍ତ୍ୱ

ସାହିତ୍ୟ ଧର୍ମପ୍ରଚାରର ଏକ ଗଣମାଧ୍ୟମ । ସେଥିପାଇଁ ସମଗ୍ର ଭାରତୀୟ ସାହିତ୍ୟରେ ଧର୍ମର ଅନ୍ତଃଶୀଳ ପ୍ରଭାବ ପରିଲକ୍ଷିତ ହୁଏ । ସମୟାନୁକ୍ରମେ ଭିନ୍ନ ଭିନ୍ନ ଧର୍ମ ଭାରତୀୟ ସାହିତ୍ୟ ମଧ୍ୟରେ ପ୍ରଚାରିତ ଓ ପ୍ରସାରିତ ହୋଇଛି, ଦର୍ଶନ ଓ ତତ୍ତ୍ୱଭିତ୍ତିକ ଗ୍ରନ୍ଥମାନ ରଚିତ ହୋଇଛି । ସାହିତ୍ୟ କେବଳ ଧର୍ମପ୍ରଚାର କରିନାହିଁ ବରଂ ଧର୍ମକୁ ନେଇ ପ୍ରତ୍ୟେକ ଦେଶର ସାହିତ୍ୟର ଉନ୍ମେଷ ଓ ଉତ୍ତରଣ ଘଟିଛି । କେବଳ ଭାରତୀୟ ସାହିତ୍ୟ ନୁହେଁ ସମଗ୍ର ପୃଥିବୀର ସାହିତ୍ୟକୁ ଅନୁଧ୍ୟାନ କଲେ ଏହାର ସତ୍ୟତା ଉପଲବ୍ଧ ହୁଏ । ତେଣୁ ଓଡ଼ିଆ ସାହିତ୍ୟ ଏଥିରୁ ବାଦ୍ ପଡ଼ନ୍ତା କପରି ? ବିଭିନ୍ନ ଧର୍ମ ଦେଶରେ ଆତ୍ମପ୍ରକାଶ କରି ସେ ଯୁଗର ସାହିତ୍ୟକୁ ପରିପୁଷ୍ଟ କରିଛି । ବୈଷ୍ଣବଧର୍ମ ଓଡ଼ିଆ ସାହିତ୍ୟକୁ ଯେଉଁଭଳି ପରିପୁଷ୍ଟ ଓ ସମୃଦ୍ଧ କରିଛି । ବୋଧହୁଏ ଅନ୍ୟ କୌଣସି ଧର୍ମ ତାହା କରିବାରେ ସେପରି ସକ୍ଷମ ହୋଇପାରିନାହିଁ । ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ କେବଳ ବୈଷ୍ଣବଧର୍ମ ଓ ଦର୍ଶନକୁ ନେଇ ସୁସମୃଦ୍ଧ । ତେଣୁ ଓଡ଼ିଆ ସାହିତ୍ୟ ଜଗତରେ ବୈଷ୍ଣବ-ସାହିତ୍ୟର ସୀମା ସରହଦ ଖୁବ୍ ବିସ୍ତୃତ । ବିପୁଳାୟତନ ଓଡ଼ିଆ ବୈଷ୍ଣବ ସାହିତ୍ୟ ମଧ୍ୟରୁ ଅନେକ ଗ୍ରନ୍ଥ ବୈଷ୍ଣବ ଦର୍ଶନ ଓ ତତ୍ତ୍ୱଗର୍ଭିତ । ଦାର୍ଶନିକ ତତ୍ତ୍ୱଗୁଡ଼ିକର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ନିମନ୍ତେ ବୈଷ୍ଣବ ଗ୍ରନ୍ଥଗୁଡ଼ିକ ରଚିତ ହୋଇ ଥିଲେହେଁ ସେମାନଙ୍କ ସାହିତ୍ୟିକ ମୂଲ୍ୟ କୌଣସି ଗୁଣରେ ନ୍ୟୂନ ନୁହେଁ । ଅବଶ୍ୟ ଅନେକ ଗ୍ରନ୍ଥରେ ବୈଷ୍ଣବ ଧର୍ମର ବିଭିନ୍ନ ତତ୍ତ୍ୱଗୁଡ଼ିକୁ ମଧ୍ୟ ଉପସ୍ଥାପନା କରାଯାଇଛି । ଉଦାହରଣ ସ୍ୱରୂପ ବୃନ୍ଦାବନ ଦାସଙ୍କ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ଓ କୃପାସିନ୍ଧୁ ଦାସଙ୍କର ଉପାସନା ଦୀପିକା, ବିପ୍ରକଣ୍ଠ ଦାସଙ୍କର ସ୍ମରଣ ମଙ୍ଗଳ, ଦାଶରଥି ଦାସଙ୍କ 'ସାଧନ ସୁଧାକର' ନାରାୟଣ ଦାସଙ୍କ

'ପଞ୍ଚାମୃତ ସିନ୍ଧୁ ବିନ୍ଦୁ' ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ କୃଷ୍ଣ 'ନୀଳମଣି', ପ୍ରେମ ତରଙ୍ଗିଣୀ ଓ ଭକ୍ତ ଚରଣ ଦାସଙ୍କ 'ମନଃଶିକ୍ଷା' ପ୍ରଭୃତି ଗ୍ରନ୍ଥକୁ ଗ୍ରହଣ କରାଯାଇପାରେ । ଏହି ପୁସ୍ତକ ରଚନାର ଅଭିପ୍ରାୟ ହେଉଛି ଚୈତନ୍ୟ ସମ୍ପ୍ରଦାୟର ଧର୍ମ ଦର୍ଶନକୁ ପ୍ରଚାର କରି ଜନସମାଜରେ ବଳିଷ୍ଠ ଆତ୍ମବିଶ୍ୱାସ ପ୍ରତିଷ୍ଠା, ସଙ୍ଗେ ସଙ୍ଗେ ସମଗ୍ର ଭାରତରେ ତାହାକୁ ପରିବ୍ୟାପ୍ତ କରି ବୈଷ୍ଣବ ଧର୍ମକୁ ଏକ ଗଣଧର୍ମରେ ପରିଣତ କରିବା । ଏହାର ଅନ୍ୟ ଏକ କାରଣ ହେଉଛି ନବୋତ୍ଥିତ ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ନିମନ୍ତେ ଦର୍ଶନଗର୍ଭିତ ପ୍ରାମାଣିକ ଗ୍ରନ୍ଥ ରଚନା କରିବା ଓ ତାହାକୁ ସମଗ୍ର ଭାରତର ପ୍ରାଦେଶିକ ଭାଷାରେ ଅନୁବାଦ କରି ପ୍ରଚାର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା । ଏହି ଲକ୍ଷ୍ୟରେ ସେତେବେଳେ ଚୈତନ୍ୟ ସମ୍ପ୍ରଦାୟର ବିଭିନ୍ନ ଗୋସ୍ୱାମୀମାନଙ୍କ ଦ୍ୱାରା ଭିନ୍ନ ଭିନ୍ନ ଗ୍ରନ୍ଥ ରଚନା କରାଯାଇଥିଲା । ସେହି ଗ୍ରନ୍ଥଗୁଡ଼ିକୁ ପୂର୍ବ ଅଧ୍ୟାୟରେ ଉଲ୍ଲେଖ କରାଯାଇଛି । ଏହିକ୍ରମରେ ଓଡ଼ିଶାରେ ତଦ୍ ସମ୍ପର୍କୀୟ ଧର୍ମ ଦର୍ଶନ ଗର୍ଭିତ ତତ୍ତ୍ୱମୂଳକ ଗ୍ରନ୍ଥ ରଚନା କରିବା ସ୍ୱାଭାବିକ ହୋଇପଡ଼ିଥିଲା ଓ ସେ ଦିଗରେ ବୃନ୍ଦାବନ ଦାସଙ୍କ ପରିବାର ମୁଖ୍ୟ ଭୂମିକା ନେଇଥିଲେ ।

ଓଡ଼ିଆରେ ରଚିତ ବୈଷ୍ଣବ ସାହିତ୍ୟରେ ଚୈତନ୍ୟ ସମ୍ପ୍ରଦାୟର ବିଭିନ୍ନ ଦାର୍ଶନିକ ତତ୍ତ୍ୱଗୁଡ଼ିକ ଅତି ସ୍ପଷ୍ଟଭାବରେ ବର୍ଣ୍ଣନା କରାଯାଇଛି । ସେହି ତତ୍ତ୍ୱଗୁଡ଼ିକ ଚୈତନ୍ୟ ସମ୍ପ୍ରଦାୟର ପ୍ରାମାଣିକଗ୍ରନ୍ଥ 'ଶ୍ରୀଚୈତନ୍ୟ ଚରିତାମୃତ', ଲଘୁ ଭାଗବତାମୃତ ଷଟ୍ ସନ୍ଦର୍ଭ, 'ଗୋବିନ୍ଦଭାଷ୍ୟ' ଓ ମୁଖ୍ୟତଃ ଉଜ୍ଜ୍ୱଳ ନୀଳମଣି' ଓ 'ଭକ୍ତି ରସାମୃତ ସିନ୍ଧୁଃ' ଗ୍ରନ୍ଥର ଆଧାରରେ ରଚିତ । ତେଣୁ ଓଡ଼ିଆରେ ରଚିତ ଚୈତନ୍ୟ ପନ୍ଥୀ ବୈଷ୍ଣବ ଧର୍ମମୂଳକ ଗ୍ରନ୍ଥଗୁଡ଼ିକର ମୁଖ୍ୟ ସୌନ୍ଦର୍ଯ୍ୟ ହେଉଛି ତାହାର ଦାର୍ଶନିକ ଦିଗ ଉପସ୍ଥାପନା । ଏହି ଦାର୍ଶନିକ ତଥା ତାତ୍ତ୍ୱିକ ଦିଗଗୁଡ଼ିକୁ ନଜାଣିଲେ ସେହି ସଂପ୍ରଦାୟର ସାହିତ୍ୟିକ ସୌନ୍ଦର୍ଯ୍ୟକୁ ଉପଲବ୍ଧ କରିହେବ ନାହିଁ । ଏପରିକି ସେହି ଗ୍ରନ୍ଥଗୁଡ଼ିକୁ ଅନୁଶୀଳନ କରିବା ମଧ୍ୟ ସମ୍ଭବ ହେବ ନାହିଁ । ଚୈତନ୍ୟ ସଂପ୍ରଦାୟର ସେହିସବୁ ତତ୍ତ୍ୱ ଯଥା-ଭଗବତ୍ତତ୍ତ୍ୱ, ଶ୍ରୀରାଧାତତ୍ତ୍ୱ, ଗୋପୀତତ୍ତ୍ୱ, ରାସଲୀଳାତତ୍ତ୍ୱ, ଗୁରୁବାଦ,

ଅନ୍ତର ସାଧନା, ଅଷ୍ଟକାଳଲୀଳା, ଓ ସଖୀତତ୍ତ୍ୱ, ଧାମତତ୍ତ୍ୱ, ନାମତତ୍ତ୍ୱ, ଭକ୍ତି ଓ ପ୍ରେମ ତତ୍ତ୍ୱ, ରସତତ୍ତ୍ୱ, ଦୂଷ୍ଟ ପ୍ରକରଣ, ସୃଷ୍ଟି ତତ୍ତ୍ୱ ପ୍ରଭୃତି ବିଭିନ୍ନ ତତ୍ତ୍ୱଗୁଡ଼ିକୁ ବର୍ଣ୍ଣନା କରିବା ଏହି ପରିଚ୍ଛେଦର ଆଭିମୁଖ୍ୟ । ଯେଉଁ ଓଡ଼ିଆ କୃଷ୍ଣକାବ୍ୟମାନଙ୍କରେ ବିଶେଷଭାବେ ଏହି ତତ୍ତ୍ୱଗୁଡ଼ିକ ପ୍ରତିଫଳିତ ହୋଇଛି, ସେଗୁଡ଼ିକ ମଧ୍ୟରେ ଭୂପତି ପଣ୍ଡିତଙ୍କର 'ପ୍ରେମପଞ୍ଚାମୃତ', ଧନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ', ଦାଶରଥି ଦାସଙ୍କ 'ବ୍ରଜବିହାର', ଧନଞ୍ଜୟ ଭଞ୍ଜ ହରିଚନ୍ଦନଙ୍କର 'ନବବୃନ୍ଦାବନ ବିହାର' ଓ ରାଧାକୃଷ୍ଣ ଲୀଳାମୃତ ସାଗର', ରଘୁନାଥ ଦାସଙ୍କ 'ବୃନ୍ଦାବନ ମାହାତ୍ମ୍ୟ' ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମାଙ୍କ 'ଯୁଗଳ ରସାମୃତ ଲହରୀ', 'ଯୁଗଳରସାମୃତ ଭଞ୍ଜୀ', 'ପ୍ରେମ ତରଙ୍ଗିଣୀ', ବିଶ୍ୱବାକ୍ ଚନ୍ଦ୍ରପାଣି ପଟ୍ଟନାୟକଙ୍କ 'କୃଷ୍ଣବିଳାସ', ଅଭିମନ୍ୟୁଙ୍କ 'ବିଦଗ୍ଧ-ଚିନ୍ତାମଣି', ପ୍ରେମ ଚିନ୍ତାମଣି', ଭକ୍ତଚରଣଙ୍କ 'ମଥୁରାମଙ୍ଗଳ', ଓ ଶ୍ୟାମସୁନ୍ଦର ଦେବଙ୍କର 'ଅନୁରାଗକଳ୍ପଲତା' ପ୍ରଭୃତି ପ୍ରଣିଧାନ ଯୋଗ୍ୟ । ଏହା ମଧ୍ୟରୁ ଶେଷୋକ୍ତ ତିନି କବିଙ୍କର କାବ୍ୟରେ ବୈଷ୍ଣବୀୟ ତତ୍ତ୍ୱଗୁଡ଼ିକ ଅତି ବିସ୍ତୃତ ଓ ହୃଦୟଗ୍ରାହୀ ଭାବରେ ଦୃଷ୍ଟାନ୍ତସହ ଉପସ୍ଥାପନ କରାଯାଇଛି । ସେ ସମସ୍ତ ଗ୍ରନ୍ଥମାନଙ୍କରୁ ପ୍ରାମାଣିକ ଉଦ୍ଧୃତି ପ୍ରଦାନକରି ଆଲୋଚନା କରିବା ସମ୍ଭବପର ନୁହେଁ । କାରଣ ଏହି ପୁସ୍ତକର ପ୍ରୟୋଗ ହେଉଛି ସୀମିତ । ଏଥିରେ ଯେଉଁ ତତ୍ତ୍ୱଗୁଡ଼ିକର ଅବତାରଣା କରାଯାଉଛି, ସେଗୁଡ଼ିକ ଉପର୍ଯୁକ୍ତ ଗ୍ରନ୍ଥମାନଙ୍କରୁ ସହଜରେ ଅନୁସନ୍ଧାନ କରାଯାଇପାରେ । ଅଭିମନ୍ୟୁ ସାହିତ୍ୟରେ ବୈଷ୍ଣବ-ଧର୍ମ-ଦର୍ଶନ' ଶୀର୍ଷକ ଗବେଷଣା ନିବନ୍ଧରେ ମୁଁ ଏହି ଗୂଢତତ୍ତ୍ୱଗୁଡ଼ିକୁ ଦୃଷ୍ଟାନ୍ତସହ ଉପସ୍ଥାପନା କରିଛି । କେବଳ ବିପ୍ରଲମ୍ଭ ଶୃଙ୍ଗାର ରସର କେତେକ ଉଦାହରଣ ସେଥିରେ ଦିଆଯାଇ ପାରିନାହିଁ । କାରଣ ଅଭିମନ୍ୟୁ ତାହା ପରିବେଷଣ କରିନାହାନ୍ତି । ତେବେ ଧନକୃଷ୍ଣଙ୍କ 'ରସକଲ୍ଲୋଳ', ମାଗୁଣୀ ପଟ୍ଟନାୟକଙ୍କ 'ଗୋପୀ ଚରିତ' ଭକ୍ତଚରଣଙ୍କ 'ମଥୁରାମଙ୍ଗଳ' ଓ ଶ୍ୟାମସୁନ୍ଦର ଦେବଙ୍କର 'ଅନୁରାଗ କଳ୍ପଲତା'ରେ ଏହାକୁ ଅନୁସନ୍ଧାନ କରାଯାଇପାରେ । ଅନୁସନ୍ଧାନ କାର୍ଯ୍ୟ ଅନୁସନ୍ଧିତ୍ସୁଙ୍କ ପାଖରେ ଦୁରୂହ ହେବନାହିଁ ଭାବି ସେଗୁଡ଼ିକର ଉଦାହରଣ ମୂଳକ ଅବତାରଣାରୁ ମୁଁ ନିବୃତ୍ତ ରହିଛି ।

(କ) **ଭଗବତ୍ ତତ୍ତ୍ୱ** —ରାଧା ଓ କୃଷ୍ଣ ଶ୍ରୀଚୈତନ୍ୟ ସମ୍ପ୍ରଦାୟର ଉପାସ୍ୟ । ଏହି ସମ୍ପ୍ରଦାୟରେ ଶ୍ରୀକୃଷ୍ଣ ଈଶ୍ୱର ପରଂବ୍ରହ୍ମଙ୍କ ସ୍ୱୟଂରୂପ, ଭଗବାନ୍, ସ୍ୱତନ୍ତ୍ର, ଇଚ୍ଛାମୟ, ସର୍ବଶକ୍ତିବନ୍ତ, ନିତ୍ୟ, ସନାତନ ଓ ବ୍ୟକ୍ତା-ବ୍ୟକ୍ତ ଭାବରେ ଗୃହୀତ । ପୁନଶ୍ଚ ସେ ଆଦି ଓ ଅନାଦି, ନିର୍ଗୁଣ ଓ ସଗୁଣ । ଚୈତନ୍ୟପନ୍ଥୀ ବୈଷ୍ଣବମାନେ ତାଙ୍କୁ ବ୍ରହ୍ମରୂପେ ନିରୂପଣ କରିଥାନ୍ତି । ତେଣୁ ସେ ସେବକ ଓ ସେବ୍ୟ । ସେ ସୃଷ୍ଟି, ପାଳନ ଓ ସଂହାରର କର୍ତ୍ତା । ଏହା ତାଙ୍କର ଲୀଳାମାତ୍ର । ଏଥିପାଇଁ ଶ୍ରୀକୃଷ୍ଣଙ୍କୁ ଅବ୍ୟକ୍ତ ପ୍ରକୃତିରେ ନିଜର ସତ୍‌ଚିତ୍‌ଶକ୍ତିର ସଞ୍ଚାରକରି ସୃଷ୍ଟି କରିବାକୁ ପଡ଼ିଥାଏ । ତାଙ୍କର ସତ୍‌ଶକ୍ତି ଓ ଚିତ୍‌ଶକ୍ତି ପ୍ରକୃତି ମଧ୍ୟରେ ପ୍ରବେଶ କରିବା ଫଳରେ ଯଥାକ୍ରମେ ଜଡ଼ ଜଗତ୍ ଓ ଜୀବ ଜଗତର ସୃଷ୍ଟି ସମ୍ଭବ ହୋଇଥାଏ । ଏହି ସୃଷ୍ଟିରେ ଯେତେବେଳେ ଅଧର୍ମର ପ୍ରାବଲ୍ୟ ପରିଲକ୍ଷିତ ହୁଏ, ସେତେବେଳେ ସେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ସୃଷ୍ଟିର ଭାରସାମ୍ୟ ରକ୍ଷାକରିଥାନ୍ତି ।

ପାଞ୍ଚରାତ୍ର ଧର୍ମର ମହାବିଷ୍ଣୁ ବା ଅବ୍ୟକ୍ତ ବାସୁଦେବ ଚୈତନ୍ୟ ସମ୍ପ୍ରଦାୟର ଆନନ୍ଦ, ଚିନ୍ମୟ ଓ ରସଘନ ଗୋପାଳକୃଷ୍ଣଭାବେ ଗୃହୀତ ହୋଇଥିବା କଥା ପୂର୍ବେ କୁହାଯାଇଛି । ସେହି ବାସୁଦେବଙ୍କ ସମସ୍ତ ଗୁଣ ବିଭୂଷିତ ଶ୍ରୀକୃଷ୍ଣଙ୍କୁ ଚୈତନ୍ୟ ସମ୍ପ୍ରଦାୟରେ ପରଂବ୍ରହ୍ମଭାବେ ଗ୍ରହଣ କରାଯାଇଛି । ଶ୍ରୀକୃଷ୍ଣଙ୍କର ଏହି ପରଂବ୍ରହ୍ମତ୍ୱ ପ୍ରତିପାଦନ ନିମନ୍ତେ ଚୈତନ୍ୟ ସମ୍ପ୍ରଦାୟରେ 'ବ୍ରହ୍ମ ସଂହିତା'ର ପ୍ରଥମ ଶ୍ଳୋକ—

"ଈଶ୍ୱରଃ ପରମକୃଷ୍ଣଃ ସଚ୍ଚିଦାନଂଦ ବିଗ୍ରହଃ
ଅନାଦିରାଦି ଗୋବିଂଦ ସର୍ବକାରଣ କାରଣମ୍ ।" (୧\୧)କୁ

ଉଦ୍ଧାର କରାଯାଇଥାଏ । ଏହାର ଅର୍ଥ ହେଉଛି ଶ୍ରୀକୃଷ୍ଣ ପରବ୍ରହ୍ମ ହେତୁ ତାଙ୍କର ବିଗ୍ରହ ସତ୍, ଚିତ୍ ଓ ଆନନ୍ଦର ଆଧାର । ସେ ଈଶ୍ୱର ତାଙ୍କ ପୂର୍ବରୁ କେହି ନାହାଁନ୍ତି । ତାଙ୍କର ରୂପ କାହାରିଠାରୁ ବିକଶିତ ନୁହେଁ । ସେ ସ୍ୱୟଂ ପ୍ରକାଶିତ । ତେଣୁ ସେ ଅନାଦି । ପୁନଶ୍ଚ ସେ ସୃଷ୍ଟିର କାରଣ ହୋଇଥିବାରୁ ସେ ଆଦିପୁରୁଷ । ସେ ଗୋବିଂଦ (ସମଗ୍ର ଗୋକୁଳଧାମର ଗାଭିମାନଙ୍କର ପାଳକ ବା ଇନ୍ଦ୍ରିୟମାନଙ୍କର ନିୟନ୍ତା ('ଗୋ'ର ଅର୍ଥ ଇନ୍ଦ୍ରିୟ)

ସେହି ଅନାଦି ଆଦି ପୁରୁଷ ପରମେଶ୍ୱର ଶ୍ରୀକୃଷ୍ଣଙ୍କର ବିଭିନ୍ନ ରୂପ ଚୈତନ୍ୟ ସମ୍ପ୍ରଦାୟରେ ଅବତାରିତ ହୋଇଛି । ଶ୍ରୀ ରୂପ ଗୋସ୍ୱାମୀ ତାଙ୍କର 'ଲଘୁଭାଗବତାମୃତ' ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କର ସ୍ୱୟଂରୂପ, ତଦେକାତ୍ମକ ରୂପ ଓ ଆବେଶ ରୂପର ପରିଚୟ ପ୍ରଦାନ କରି ସେଗୁଡ଼ିକୁ ପୁନଶ୍ଚ ବିଭିନ୍ନ ଢଙ୍ଗରେ ବିଭକ୍ତ କରିଛନ୍ତି । ତେବେ ବର୍ତ୍ତମାନ ଶ୍ରୀକୃଷ୍ଣଙ୍କର ସେହି ରୂପଗୁଡ଼ିକ କ'ଣ ତାହା ଦେଖାଯାଉ ।

**ସ୍ୱୟଂରୂପ**—ପରମେଶ୍ୱର ଶ୍ରୀକୃଷ୍ଣଙ୍କର ସ୍ୱୟଂ ଭଗବତ୍ ମହିମା ବ୍ୟଞ୍ଜିତ ରୂପ ହେଉଛି ସ୍ୱୟଂ ରୂପ । ଶ୍ରୀକୃଷ୍ଣ ହେଉଛନ୍ତି ଏହି ସ୍ୱୟଂ ରୂପ । ତେଣୁ ବୈଷ୍ଣବ କବିମାନେ ତାଙ୍କୁ 'ସ୍ୱୟଂ ଭଗବାନ୍' ବୋଲି ତାଙ୍କୁ ଆଖ୍ୟାୟିତ କରିଥାନ୍ତି । ୧)

**ତଦେକାତ୍ମ ରୂପ** – ସ୍ୱୟଂରୂପଠାରୁ ଅଭିନ୍ନ ହେଲେ ହେଁ ଶ୍ରୀକୃଷ୍ଣଙ୍କର ଅନ୍ୟାକୃତି ବିଶିଷ୍ଟ ରୂପ ହେଉଛି ତଦେକାତ୍ମ ରୂପ । ଏହା ବିଳାସ ଓ ସ୍ୱାଂଶ ଭେଦରେ ଦ୍ୱିବିଧ ।

୧ । **ବିଳାସ ରୂପ**—ଶ୍ରୀକୃଷ୍ଣଙ୍କର ଯେଉଁ ତଦେକାତ୍ମକ ରୂପରେ ବିଳାସ ଓ ଶକ୍ତି ଶ୍ରୀକୃଷ୍ଣଙ୍କ ସ୍ୱୟଂରୂପର ବିଳାସ ଓ ଶକ୍ତିତୁଲ୍ୟ ପ୍ରକାଶିତ ହେଲେହେଁ ଗୁଣରେ ନ୍ୟୁନଥାଏ, ତାହାକୁ ବିଳାସ ରୂପ କୁହାଯାଏ । ଗୋବିନ୍ଦ (ଶ୍ରୀକୃଷ୍ଣ)ଙ୍କର ବିଳାସ ରୂପ ହେଉଛନ୍ତି ପରମ ବ୍ୟୋମନାଥ ନାରାୟଣ ଏବଂ ନାରାୟଣଙ୍କର ବିଳାସ ରୂପ ହେଉଛନ୍ତି ଆଦିବ୍ୟୂହ ଏହି ବାସୁଦେବ ରୂପରେ ଶ୍ରୀକୃଷ୍ଣଙ୍କର ସ୍ୱୟଂରୂପରେ ପ୍ରକାଶିତ ପ୍ରେମଲୀଳାର ମାଧୁର୍ଯ୍ୟ ଭାବ ଓ ବେଣୁନାଦର ମଧୁରତା ନଥାଏ । ଏହିଠାରେ ହିଁ ବିଳାସ ରୂପ ନାରାୟଣଙ୍କଠାରୁ ଶ୍ରୀକୃଷ୍ଣଙ୍କର ଆଧିକ୍ୟ ପ୍ରତିପାଦିତ ହୋଇଛି ।

୨ । **ସ୍ୱାଂଶ ରୂପ**—ଯେଉଁ ରୂପ ସ୍ୱୟଂରୂପଠାରୁ ଅଭିନ୍ନ ଓ ବିଳାସ ରୂପ ତୁଲ୍ୟ ପ୍ରକାଶିତ ହେଲେ ମଧ୍ୟ ଶକ୍ତିରେ ବିଳାସରୂପଙ୍କ ଠାରୁ କମ୍ ତାହାକୁ ସ୍ୱାଂଶ ରୂପ କୁହାଯାଏ । ଭଗବାନଙ୍କର ମତ୍ସ୍ୟାଦି ଲୀଳା ଅବତାରଗୁଡ଼ିକ ଏହି ରୂପର ଅନ୍ତର୍ଭୁକ୍ତ ।

**ଆବେଶ ରୂପ**—ଅନେକାନ୍ତ ଶକ୍ତି ଦ୍ୱାରା ଜନାର୍ଦ୍ଦନ ମହତ୍ତମ ଜୀବରେ ଆବିଷ୍ଟ ହେଲେ ତାଙ୍କୁ ଆବେଶ ରୂପ କୁହାଯାଇଥାଏ । ଶାସ୍ତ୍ରରେ ଆଧିକ୍ୟ ଓ ନ୍ୟୂନ ଭେଦରେ ଏହି ଆବେଶ ରୂପ ଦୁଇପ୍ରକାରର । ଅଳ୍ପ ଶକ୍ତିର ଆବେଶ ରୂପ ହେଉଛନ୍ତି ନାରଦ ଓ ଚତୁଃସନ ପ୍ରଭୃତି ଋଷି ଓ ଅଧିକ ଶକ୍ତିର ଆବେଶ ରୂପ ହେଉଛନ୍ତି ଋଷଭ ଦେବ ।

## ଚୈତନ୍ୟ ସମ୍ପ୍ରଦାୟରେ ଗୃହୀତ ବିଭିନ୍ନ ଅବତାର

ଭଗବାନ୍‌ଙ୍କର ବିଭିନ୍ନ ରୂପ ପରିକଳ୍ପନା ସହିତ ଚୈତନ୍ୟ ସମ୍ପ୍ରଦାୟରେ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇ ବିଭିନ୍ନ ଅବତାରମାନଙ୍କର ଅବତାରଣା କରାଯାଇଛି । ନିମ୍ନରେ ସେହି ଅବତାର-ମାନଙ୍କର ଶ୍ରେଣୀ ବିଭାଗକୁ ନିର୍ଦ୍ଦେଶ କରାଗଲା ।

**୧ । ସ୍ୱୟଂରୂପ ଅବତାର** – ସ୍ୱୟଂରୂପ ଶ୍ରୀକୃଷ୍ଣ ମଧ୍ୟ ଅନ୍ୟ ଅବତାରଙ୍କ ଭଳି ପ୍ରପଞ୍ଚରେ ଅବତୀର୍ଣ୍ଣ ହୋଇଥାଆନ୍ତି । ଶ୍ୱେତବରାହ କଳ୍ପର ବୈବସ୍ୱତ ମନ୍ୱନ୍ତରରେ ୨୮ଟି ଚତୁର୍ଯୁଗ ମଧ୍ୟରେ ଯେତେବେଳେ ସୁବାହୁ ନାମକୁ ଦ୍ୱାପର ଯୁଗ ହୁଏ, ସେକାଳରେ ସ୍ୱୟଂରୂପ ଶ୍ରୀକୃଷ୍ଣ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥାନ୍ତି । ବିଦଗ୍ଧ କବି ଅଭିମନ୍ୟୁ ତାଙ୍କର 'ପ୍ରେମଚିନ୍ତାମଣି' ଗ୍ରନ୍ଥରେ ଏହାର ଉଲ୍ଲେଖ କରିଛନ୍ତି । ଯଥା —

"ଏହିପରି ଅନେକ କାଳଗଲା
ଆସି ସୁବାହୁ ଦ୍ୱାପରେ ହୋଇଲା ।
× × ×
ଯେଉଁ ବ୍ରହ୍ମାଣ୍ଡମାନଙ୍କ ଭିତରେ
ହୋଏ ସୁବାହୁ ଦ୍ୱାପର ଯୁଗରେ
× × ×
ଇଚ୍ଛାମୟୀ ଶକ୍ତି ଯେଣୁ ତାଙ୍କର
ସେହି କାଳରେ କରଣ ବିହର ।

ବାସୁଦେବାନୁ ସଙ୍ଗୀ ହୋଇକରି
ଜନ୍ମ ଆଦି ଲୀଳା ଗତ ପ୍ରଗଟରି । (୨)

୨ । ପୁରୁଷାବତାର—ସାତ୍ତ୍ୱତ ତନ୍ତ୍ର ମତରେ ବିଷ୍ଣୁଙ୍କର ଯେଉଁ ତ୍ରିବିଧ ରୂପ ଶାସ୍ତ୍ରରେ ବର୍ଣ୍ଣିତ ଅଛି, ତନ୍ମଧ୍ୟରୁ ଏକ ରୂପ ହେଉଛି ମହତ୍ ତତ୍ତ୍ୱର ସୃଷ୍ଟିକର୍ତ୍ତା ପ୍ରଥମ ପୁରୁଷ, ଦ୍ୱିତୀୟ ରୂପଟି ବ୍ରହ୍ମାଣ୍ଡ ମଧ୍ୟସ୍ଥ ଅନ୍ତର୍ଯ୍ୟାମୀ ରୂପ ଦ୍ୱିତୀୟ ପୁରୁଷ ଓ ସର୍ବଭୂତାବସ୍ଥିତ ଅନ୍ତର୍ଯ୍ୟାମୀ ତୃତୀୟ ପୁରୁଷ ।' ପରମେଶ୍ୱରଙ୍କର ଅପ୍ରାକୃତ ଷଡଗୁଣ (ଷଡୈଶ୍ୱର୍ଯ୍ୟ)ରୁ ଆବିର୍ଭୂତ ଏହି ତିନଟି ଅବତାର ପୁରୁଷାବତାର ନାମରେ କଥିତ । ସୃଷ୍ଟି ସହିତ ଏମାନଙ୍କର ସମ୍ପର୍କ ଅତି ନିବିଡ ।

**ପ୍ରଥମ ପୁରୁଷ**—ସଙ୍କର୍ଷଣ ହେଉଛନ୍ତି ପ୍ରଥମ ପୁରୁଷାବତାର । ଏହାଙ୍କୁ ମହାବିଷ୍ଣୁ କୁହାଯାଇଥାଏ । ପ୍ରଳୟକାଳରେ ସମସ୍ତ ଜୀବ ଜଗତ ଏହି ସଙ୍କର୍ଷଣଙ୍କ ଶରୀରରେ ଲୀନ ହୋଇଥାନ୍ତି । ବାସୁଦେବଙ୍କର ପ୍ରଥମ ବ୍ୟୂହ ଜ୍ଞାନ ଓ ବଳ ଏହି ଦୁଇ ଐଶ୍ୱର୍ଯ୍ୟରୁ ସଙ୍କର୍ଷଣଙ୍କର ଆବିର୍ଭାବ ଘଟେ । ନିଜଠାରେ ଲୀନ ସମସ୍ତ ଜୀବମାନଙ୍କର ଉପାଧି ସୃଷ୍ଟି କରିବା ସକାଶେ ପ୍ରକୃତି ପ୍ରତି ଦୃଷ୍ଟିପାତ କରିବା ଫଳରେ ଶାନ୍ତ ଅବ୍ୟକ୍ତ ପ୍ରକୃତିରେ କ୍ଷୋଭ ଜାତ ହୁଏ । ଫଳରେ ସେଥିରୁ ମହତ୍ ତତ୍ତ୍ୱ (ଜଗତର ସମସ୍ତ ତତ୍ତ୍ୱର ମୂଳରୂପ)ର ଉତ୍ପତ୍ତି ହୁଏ । ଏହା ବୃକ୍ଷର ଅଙ୍କୁରୋଦ୍‌ଗମ ଅବସ୍ଥା । ଏହି କାର୍ଯ୍ୟ ସଙ୍କର୍ଷଣଙ୍କ ଦ୍ୱାରା ହେଉଥିବାରୁ ତାଙ୍କୁ ମହତ୍ତତ୍ତ୍ୱର ସୃଷ୍ଟିକର୍ତ୍ତା ପ୍ରଥମ ପୁରୁଷ ଆଖ୍ୟା ଦିଆଯାଇଛି । ଏହି ସଙ୍କର୍ଷଣ ପ୍ରକୃତି ବା ମହତ୍ ତତ୍ତ୍ୱ ମହାସମଷ୍ଟି ବା ବ୍ରହ୍ମାଣ୍ଡ ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପେ ଅବସ୍ଥାନ କରୁଥିବା ହେତୁ ସେ ମହାସମଷ୍ଟିର ଅନ୍ତର୍ଯ୍ୟାମୀ ବା କାରଣାର୍ଣ୍ଣବଶାୟୀ ଭାବେ ମଧ୍ୟ କଥିତ ।

**ଦ୍ୱିତୀୟ ପୁରୁଷ** ପ୍ରଦ୍ୟୁମ୍ନ ହେଉଛନ୍ତି ଦ୍ୱିତୀୟ ପୁରୁଷାବତାର । ଜୀବସମଷ୍ଟି ବା ହିରଣ୍ୟଗର୍ଭ ମଧ୍ୟରେ ସେ ଅନ୍ତର୍ଯ୍ୟାମୀ ରୂପେ ଅବସ୍ଥାନ କରୁଥିବାରୁ ତାଙ୍କୁ ଗର୍ଭୋଦକଶାୟୀ କୁହାଯାଇଥାଏ । ବାସୁଦେବଙ୍କର ଦ୍ୱିତୀୟ ବ୍ୟୂହ ଐଶ୍ୱର୍ଯ୍ୟ ଓ ବୀର୍ଯ୍ୟର ପ୍ରକାଶ କାଳରେ ପ୍ରଦ୍ୟୁମ୍ନଙ୍କର

ଆବିର୍ଭାବ ହେଉଥିବାରୁ ତାଙ୍କୁ ଦ୍ୱିତୀୟ ପୁରୁଷ କୁହାଯାଇଥାଏ । ପ୍ରଦ୍ୟୁମ୍ନଙ୍କଠାରେ ନାଭିକମଳରୁ ବ୍ରହ୍ମାଙ୍କର ଜନ୍ମ ହେବାରୁ ସୃଷ୍ଟି କାର୍ଯ୍ୟ ଆରମ୍ଭ ହୁଏ । ଏଥିପାଇଁ ପ୍ରଦ୍ୟୁମ୍ନଙ୍କୁ ଅଣୁଷ୍ଠିତ ଜୀବ ସମଷ୍ଟିର ସ୍ରଷ୍ଟା ଅନ୍ତର୍ଯ୍ୟାମୀ ଦ୍ୱିତୀୟ ପୁରୁଷ କୁହାଯାଇଥାଏ ।

**ତୃତୀୟ ପୁରୁଷ**— ଅନିରୁଦ୍ଧ ହେଉଛନ୍ତି ତୃତୀୟ ପୁରୁଷାବତାର । ବାସୁଦେବଙ୍କର ତୃତୀୟ ବ୍ୟୂହ ଶକ୍ତି ତେଜରୁ ଏହାଙ୍କର ସୃଷ୍ଟି ହୁଏ । ସେଥିପାଇଁ ସେ ତୃତୀୟ ପୁରୁଷ । ଦେହ ଓ ପୃଥକ୍ ପୃଥକ୍ ଜୀବର ସୃଷ୍ଟି ଦାୟିତ୍ୱ ।

ପ୍ରତ୍ୟେକ ଦେହ ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପେ ଅବସ୍ଥାନ କରୁଥିବାରୁ ଅନିରୁଦ୍ଧ ବିହାନ କରି ତାଙ୍କୁ ବ୍ୟଷ୍ଟି ଜୀବ ବା ପୃଥକ୍ ପୃଥକ୍ ଜୀବର ସ୍ରଷ୍ଟା ଅନ୍ତର୍ଯ୍ୟାମୀ ତୃତୀୟ ପୁରୁଷ କୁହାଯାଇଥାଏ । ସେ କ୍ଷୀରୋଦକଶାୟୀ ରୂପେ ମଧ୍ୟ କଥିତ ହୋଇଥାନ୍ତି । 'ପୁର' ଅର୍ଥ ଶରୀର । ଅନିରୁଦ୍ଧ ଶରୀରମାନଙ୍କର ଈଶ୍ୱର ବା ନିୟାମକ ହୋଇଥିବାରୁ ତାଙ୍କୁ ମଧ୍ୟ 'ପୁରୁଷ' କୁହାଯାଇଥାଏ ।

'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଏହି ପୁରୁଷାବତାର ପ୍ରସଙ୍ଗ ଭିନ୍ନ ପ୍ରକାରରେ ଉପସ୍ଥାପିତ ହୋଇଥିବାର ଦେଖାଯାଏ । ଏଥିରେ ପ୍ରାକୃତ ଓ ଅପ୍ରାକୃତ ଜଗତ ସମ୍ପର୍କରେ କୁହାଯାଇ ଅପ୍ରାକୃତ ଜଗତକୁ ତିନୋଟି ଧାମରେ ବିଭକ୍ତ କରାଯାଇଛି । ସେହି ତିନିଧାମ ମଧ୍ୟରୁ ଗୋଲୋକ ଧାମ ହେଉଛି ଶ୍ରେଷ୍ଠ । ସେଠାରେ ଶ୍ରୀକୃଷ୍ଣ ନିତ୍ୟ ବିରାଜିତ ଥାଆନ୍ତି । କାରଣାବ୍ଧିରେ ଶ୍ରୀକୃଷ୍ଣଙ୍କର ବିଳାସ ରୂପ ନାରାୟଣ ଅବସ୍ଥାନ କରି ଜଗତ୍ ସୃଷ୍ଟି କରୁଥିବାରୁ ସେ ହେଉଛନ୍ତି ଜଗତର କାରଣ ଅନ୍ୟାର୍ଥରେ ଶ୍ରୀକୃଷ୍ଣ ବିଳାସ ରୂପରେ ନାରାୟଣ ଆଖ୍ୟା ଧାରଣ ପୂର୍ବକ ଜଗତ୍ ସୃଷ୍ଟି କରିଥାଆନ୍ତି । ପ୍ରଳୟାବସ୍ଥା ପରେ ଅବ୍ୟକ୍ତ ଓ ଶାନ୍ତ ପ୍ରକୃତିରେ କାଳ ବଶରୁ ଗୁଣ କ୍ଷୋଭ ( ଗୁଣତ୍ରୟର ସାମ୍ୟବସ୍ଥାନ ତରଙ୍ଗାୟିତ ଅବସ୍ଥା ) ଜାତ ହେଲେ ପରମ ପୁରୁଷ ( ଶ୍ରୀକୃଷ୍ଣଙ୍କର ବିଳାସ ରୂପ ନାରାୟଣ ) ସେଥିରେ ନିଜର ଚିତ୍‌ଶକ୍ତି ରୂପକ ବୀର୍ଯ୍ୟକୁ ଆଧାନ କରିବା ଫଳରେ ପ୍ରକୃତି ଚୈତନ୍ୟମୟ ମହତ୍ ତତ୍ତ୍ୱର ବିକାଶ ଘଟେ । ଏହି ମହତ୍‌ରୁ ତ୍ରିବିଧ ଅହଙ୍କାର, ଅହଙ୍କାରରୁ ପଞ୍ଚଭୂତ ଓ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟାଦି

ସୃଷ୍ଟି ହୁଅନ୍ତି । ଏହି ସମସ୍ତ ତତ୍ତ୍ୱର ମିଶ୍ରଣରେ ବ୍ରହ୍ମାଣ୍ଡର ସୃଷ୍ଟି ହୁଏ । ସେହି ବ୍ରହ୍ମାଣ୍ଡ ମଧ୍ୟରେ ସ୍ୱାଂଶ ରୂପ ପ୍ରଥମ ପୁରୁଷ ସଙ୍କର୍ଷଣ ଅନ୍ତର୍ଯ୍ୟାମୀ ରୂପେ ଅବସ୍ଥାନ କରିଥାଆନ୍ତି । ଏହାପରେ ଦ୍ୱିତୀୟ ପୁରୁଷ ପ୍ରଦ୍ୟୁମ୍ନ ଆବିର୍ଭୂତ ହୋଇ ଅନନ୍ତ କୋଟି ବ୍ରହ୍ମାଣ୍ଡ ରଚନା କରନ୍ତି ଓ ପ୍ରତ୍ୟେକ ବ୍ରହ୍ମାଣ୍ଡ ମଧ୍ୟରେ ନିଜ ଅଙ୍ଗରୁ ଜଳ ଜାତ କରି ତଦୁପରେ ଶୟନ କରନ୍ତି । ତାଙ୍କ ନାଭି ମଧ୍ୟରୁ ବ୍ରହ୍ମାଜାତ ହୋଇ ଚତୁର୍ଦ୍ଦଶ ଭୁବନ ସର୍ଜ୍ଜନା କରନ୍ତି । ଏହି ଦ୍ୱିତୀୟ ପୁରୁଷଙ୍କୁ ସହସ୍ରଶୀର୍ଷା କୁହାଯାଇଛି । ତୃତୀୟ ପୁରୁଷ ଅନିରୁଦ୍ଧଙ୍କର ସମସ୍ତ ତତ୍ତ୍ୱ ଉଭୟ ଗ୍ରନ୍ଥରେ ସମାନ ଭାବେ ବର୍ଣ୍ଣିତ ଅଛି ।

**୩ । ଗୁଣାବତାର**—ଭଗବାନ୍‌ଙ୍କର ଯେଉଁ ଅବତାର ତାଙ୍କର ସତ୍ତ୍ୱ, ରଜ, ତମ ଆଦି ତ୍ରିଗୁଣାତ୍ମକ ଲୀଳା ପ୍ରକାଶ କରିଥାନ୍ତି, ତାଙ୍କୁ ଗୁଣାବତାର କୁହାଯାଇଥାଏ । ଏହି ଅବତାରମାନେ ଦ୍ୱିତୀୟ ପୁରୁଷାବତାର ପ୍ରଦ୍ୟୁମ୍ନଙ୍କଠାରୁ ସୃଷ୍ଟି ହୋଇଥାନ୍ତି ଓ ଏମାନେ ଗର୍ଭୋଦକଶାୟୀ । ରଜୋଗୁଣର ଅବତାର ରଜୋଗୁଣର ସହାୟତାରେ ସୃଷ୍ଟି କରନ୍ତି । ସତ୍ତ୍ୱଗୁଣର ଅବତାର ବିଷ୍ଣୁ ସତ୍ତ୍ୱଗୁଣ ସାହାଯ୍ୟରେ ସୃଷ୍ଟି ପାଳନ କରନ୍ତି । ଓ ତମୋଗୁଣର ଅବତାର ଶିବ ତମୋଗୁଣ ଦ୍ୱାରା ସୃଷ୍ଟି ସଂହାର କରନ୍ତି ।

**୪ । ଲୀଳାବତାର**—ସୃଷ୍ଟିର ମଙ୍ଗଳ ନିମନ୍ତେ ଭଗବାନ୍ ନିଜ ଇଚ୍ଛାରେ ବିଭିନ୍ନ ତନୁ ଧାରଣ କରି ସଂସାର ମଧ୍ୟକୁ ଆସିଥାନ୍ତି । ଭଗବାନ୍‌ଙ୍କର ସେହିସବୁ ରୂପ ହିଁ ତାଙ୍କର ଲୀଳାବତାର । ସନକାଦି ଋଷି ନାରଦ, ବରାହ, ମତ୍ସ୍ୟ, ଶ୍ରୀଯଜ୍ଞ, ନାରାୟଣ, କପିଳ, ଦତ୍ତାତ୍ରେୟ, ହୟଗ୍ରୀବ, ହଂସ, ଧ୍ରୁବପ୍ରିୟ, ଋଷଭ ଦେବ, ପୃଥୁ, ଶ୍ରୀନୃସିଂହ, କୂର୍ମ, ଧନ୍ୱନ୍ତରୀ, ମୋହିନୀ, ବାମନ, ପରଶୁରାମ, ଶ୍ରୀରାମ, ବ୍ୟାସଦେବ, ବଳରାମ, ଶ୍ରୀକୃଷ୍ଣ, ବୁଦ୍ଧ ଏବଂ କଳ୍କୀ ପ୍ରଭୃତି ଲୀଳାବତାର ରୂପେ ପରିଚିତ ।

**୫ । ମନ୍ୱନ୍ତରାବତାର**—ଇନ୍ଦ୍ର ଶତ୍ରୁ ବିନାଶ ପାଇଁ ଦେବଗଣଙ୍କ ମଧ୍ୟରେ ଭଗବାନ୍‌ଙ୍କର ଆବିର୍ଭାବ ହେଲେ ତାଙ୍କୁ ମନ୍ୱନ୍ତରାବତାର କୁହାଯାଇଥାଏ । ମନ୍ୱନ୍ତରାବତାରମାନେ ସ୍ୱକାର୍ଯ୍ୟ ସମାପନାନ୍ତେ ମନ୍ୱନ୍ତର ଶେଷରେ ସ୍ୱଲୋକକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଯଜ୍ଞ, ବିଭୁ, ସତ୍ୟସେନ,

ହରି, ବୈକୁଣ୍ଠ, ଅଜିତ, ସାର୍ବଭୌମ, ଋଷଭ, ବିଷ୍ୱକସେନ, ଧର୍ମସେତୁ, ସୁଧାମା, ଯୋଗେଶ୍ୱର ଓ ବୃହଦ୍ଭାନୁ ଆଦି ହେଉଛନ୍ତି ମନ୍ୱନ୍ତରାବତାର ।

ରୂପଗୋସ୍ୱାମୀ ତାଙ୍କର 'ଲଘୁଭାଗବତାମୃତ ଗ୍ରନ୍ଥରେ ଭଗବାନଙ୍କର ପ୍ରାଭବ, ବୈଭବ ଓ ପରାବସ୍ଥା ଅବତାରର ଉଲ୍ଲେଖ କରିଛନ୍ତି । ପ୍ରାଭବ ଅବତାରକୁ ସେ ଅଳ୍ପକାଳ ସ୍ଥାୟୀ ଓ ଦୀର୍ଘକାଳ ସ୍ଥାୟୀ ଭେଦରେ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ମୋହିନୀ ହଂସ, ଏବଂ ଶୁକ୍ଳ ଆଦି ଯୁଗାବତାର-ମାନେ ଅଳ୍ପକାଳ ସ୍ଥାୟୀ ପ୍ରାଭବ ଅବତାର ଓ ଧନ୍ୱନ୍ତରୀ, ଋଷଭ, ବ୍ୟାସ, ଦତ୍ତାତ୍ରେୟ ଏବଂ କପିଳ ହେଉଛନ୍ତି ଦୀର୍ଘକାଳ ସ୍ଥାୟୀ ପ୍ରାଭବ ଅବତାର ।

୬ । **ବୈଭବ ଅବତାର**—କୂର୍ମ, ମତ୍ସ୍ୟ, ନରନାରାୟଣ, ବରାହ, ହୟଗ୍ରୀବ, ପୃଶ୍ନିଗର୍ଭ, ପ୍ରଳମ୍ବନିହନ୍ତା ବଳଦେବ ଏବଂ ଯଜ୍ଞାଦି ଚତୁର୍ଦ୍ଦଶ ମନ୍ୱନ୍ତରାବତାର ପ୍ରଭୃତି ଏକବିଂଶ ଅବତାରଙ୍କୁ ବୈଭବାବତାର କୁହାଯାଇଥାଏ । ଶ୍ରୀନୃସିଂହ, ଶ୍ରୀରାମ ଓ ଶ୍ରୀକୃଷ୍ଣ ଷଡ଼ୈଶ୍ୱର୍ଯ୍ୟଯୁକ୍ତ ଓ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥିବାରୁ ଏମାନଙ୍କୁ ପରାବସ୍ଥାବତାର ଭାବେ ଗ୍ରହଣ କରାଯାଇଛି । ପୁନଶ୍ଚ ନୃସିଂହଙ୍କଠାରେ ଐଶ୍ୱର୍ଯ୍ୟ, ଶ୍ରୀରାମଙ୍କଠାରେ ମାଧୁର୍ଯ୍ୟର ଆଧିକ୍ୟ ପ୍ରକାଶିତ ହୋଇଥିବା ବେଳେ ଶ୍ରୀକୃଷ୍ଣଙ୍କଠାରେ ଉଭୟ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ସମଭାବରେ ପ୍ରକାଶିତ ହୋଇଥିଲା । ତେଣୁ ଶ୍ରୀକୃଷ୍ଣଙ୍କଠାରେ ପୂର୍ଣ୍ଣ ଭଗବତ୍ତା ପ୍ରକଟିତ ହୋଇଥିବାରୁ ତାଙ୍କୁ ପରାବସ୍ଥାବ-ତାରଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଦିଆଯାଇଥାଏ ।

୭ । **ଯୁଗାବତାର**—ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରିଯୁଗରେ ଯେଉଁ ଚତୁର୍ମୂର୍ତ୍ତି ଯଥାକ୍ରମେ, ଶୁକ୍ଳ, ରକ୍ତ, ଶ୍ୟାମ ଓ କୃଷ୍ଣବର୍ଣ୍ଣ ଧାରଣ କରି ଧରାବତୀର୍ଣ୍ଣ ହୁଅନ୍ତି ତାଙ୍କୁ ଯୁଗାବତାର କହନ୍ତି ବୋଲି ରୂପଗୋସ୍ୱାମୀ 'ଲଘୁଭାଗବତାମୃତ' ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି । କିନ୍ତୁ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗରେ ଅବତୀର୍ଣ୍ଣ ଯୁଗାବତାରମାନେ ଯଥାକ୍ରମେ ଶୁକ୍ଳ, ରକ୍ତ, ପୀତ ଓ କୃଷ୍ଣବର୍ଣ୍ଣ ଧାରଣ କରନ୍ତି ବୋଲି କୁହାଯାଇଛି । (୩) ମନ୍ୱନ୍ତରାବତାରହିଁ ଯୁଗାବତାର ହୋଇଥାନ୍ତି ।

ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଭଗବାନ୍‌ଙ୍କର ଏହି ସାତଟି ଅବତାର ଉପରେ ପ୍ରାଧାନ୍ୟ ଆରୋପ କରାଯାଇଥିଲେହେଁ ଭଗବାନ୍‌ଙ୍କର ସଂଖ୍ୟାଧିକ ଅବତାର ରହିଛି । ଶାସ୍ତ୍ର ବର୍ଣ୍ଣିତ ଅବତାରମାନଙ୍କ ମଧ୍ୟରୁ ଏକ ଚତୁର୍ବିଂଶତି ଅବତାର ଯଥା—ପଞ୍ଚବିଂଶତି କଳ୍ପାବତାର, ଦ୍ୱାଦଶ ମନ୍ୱନ୍ତରାବତାର ଓ ଚାରିଟି ଯୁଗାବତାରଙ୍କ କଥା 'ଲଘୁଭାଗବତାମୃତ' ଗ୍ରନ୍ଥରେ ଉଲ୍ଲେଖ ଅଛି । ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥର ମଧ୍ୟଲୀଳାରେ ଶ୍ରୀଚୈତନ୍ୟ ସନାତନଙ୍କୁ ଅବତାରବାଦର ଯେଉଁ ବ୍ୟାଖ୍ୟା କରିଛନ୍ତି, ରୂପ ଗୋସ୍ୱାମୀଙ୍କର ଏହି ବ୍ୟାଖ୍ୟା ତଦନୁରୂପ । ମାତ୍ର ରୂପଗୋସ୍ୱାମୀ ଶାସ୍ତ୍ରରୁ ପ୍ରାମାଣିକ ଉଦ୍ଧୃତି ସଂଗ୍ରହ କରି ତନ୍ମଧ୍ୟରେ ସଂଯୋଗ କରିଛନ୍ତି । ଭଗବାନ୍‌ଙ୍କର ଏହି ଅବତାରବାଦ ଚୈତନ୍ୟପନ୍ଥୀ ବୈଷ୍ଣବମାନଙ୍କ ଦ୍ୱାରା ଗୃହୀତ ଓ ତାଙ୍କର ପ୍ରାମାଣିକ ଗ୍ରନ୍ଥ ମଧ୍ୟରେ ବର୍ଣ୍ଣିତ । ଓଡ଼ିଶାର ବୈଷ୍ଣବ କବିମାନେ ମଧ୍ୟ ଏହି ଅବତାର ପ୍ରସଙ୍ଗକୁ ସ୍ୱୀକୃତି ମଧ୍ୟରେ ଗ୍ରହଣ କରିଅଛନ୍ତି । ଏ ସମ୍ପର୍କରେ ଅଭିମନ୍ୟୁଙ୍କର ବିଦଗ୍ଧ ଚିନ୍ତାମଣିରୁ ଗୋଟିଏ ମାତ୍ର ଉଦାହରଣ ଦିଆଯାଇପାରେ ।

"ଗୋବ ଅନନ୍ତ କୋଟି ବ୍ରହ୍ମାଣ୍ଡ ତଳେ
ଗତାଗତ ତହୁଁ ଅବତାର ବଳୀ ।" (୪)

ଚୈତନ୍ୟ ସମ୍ପ୍ରଦାୟରେ ଶ୍ରୀକୃଷ୍ଣ ପରଂବ୍ରହ୍ମ, ଷଡ଼ୈଶ୍ୱର୍ଯ୍ୟଯୁକ୍ତ, ଶକ୍ତିବନ୍ତ ଓ ଅସମୋର୍ଦ୍ଧ୍ୱ ରୂପଲାବଣ୍ୟମୟ ପୁରୁଷୋତ୍ତମ ରୂପେ ଗୃହୀତ । ଶ୍ରୀଚୈତନ୍ୟ ସମ୍ପ୍ରଦାୟରୀ ଦାର୍ଶନିକ ଦିଗରୁ ଏହି ଶ୍ରୀକୃଷ୍ଣ ହେଉଛନ୍ତି ନନ୍ଦନନ୍ଦନ ଗୋପାଳକୃଷ୍ଣ । ବାସୁଦେବ ପୁଅ କ୍ଷତ୍ରିୟ କୃଷ୍ଣଙ୍କୁ ଚୈତନ୍ୟ ସମ୍ପ୍ରଦାୟରେ ସଚ୍ଚିଦାନନ୍ଦ ବିଗ୍ରହ ଭଗବାନ ବୋଲି ଗ୍ରହଣ କରାଯାଇ ନାହିଁ । ସେଥିପାଇଁ ବୋଧହୁଏ 'ଶ୍ରୀଚୈତନ୍ୟ ଚରିତାମୃତ'ରେ ଶ୍ରୀଚୈତନ୍ୟ ସନାତନଙ୍କୁ ଭଗବତ୍ ତତ୍ତ୍ୱ ଶୁଣାଇବାକୁ ଯାଇ ମହାଭାରତର ମୌଷଳ ଲୀଳା, କୃଷ୍ଣାନ୍ତର୍ଦ୍ଧାନ, କୃଷ୍ଣ ମହିଷୀ ହରଣ ଓ କେଶାବତାର ଆଖ୍ୟାନକୁ ବିରୁଦ୍ଧ ବ୍ୟାଖ୍ୟାନ ଓ ମିଥ୍ୟା କହି କ୍ଷତ୍ରିୟ କୃଷ୍ଣଙ୍କ ନ୍ୟୁନତା ପ୍ରତିପାଦନ କରିଛନ୍ତି । (୫) ଶ୍ରୀମଦ୍ଭାଗବତର ଦ୍ୱିତୀୟ ସ୍କନ୍ଧରେ ବଳରାମ ଓ କୃଷ୍ଣଙ୍କର ଯେଉଁ ଅବତାର ପ୍ରସଙ୍ଗ ଉତ୍ଥାପିତ ହୋଇଛି, ସେଥିରେ ଭଗବାନ୍ ନିଜେ

ସିତ ଏବଂ କୃଷ୍ଣକେଶ ଅଂଶ ରୂପେ ଆବିର୍ଭୂତ ହେବାର ଉଲ୍ଲେଖ ଅଛି । (୭) ସେହିଭଳି ଅନ୍ୟାନ୍ୟ ମଧ୍ୟ କୁହାଯାଇଛି ଯେ ପରମ ପୁରୁଷ ସାକ୍ଷାତ୍ ଭଗବାନ୍ ବସୁଦେବ ଗୃହରେ ଆବିର୍ଭୂତ ହେବେ ଏବଂ ତାଙ୍କର ପ୍ରିୟକାର୍ଯ୍ୟ ସାଧନ ପାଇଁ ଦେବ ସ୍ତ୍ରୀ ସକଳ ଜନ୍ମଗ୍ରହଣ କରନ୍ତୁ । (୭) ଏହିସବୁ ପ୍ରମାଣରୁ ସ୍ପଷ୍ଟ ହୁଏ ଯେ ଶ୍ରୀକୃଷ୍ଣ ହେଉଛନ୍ତି କ୍ଷୀରାବ୍ଧିଶାୟୀ ନାରାୟଣଙ୍କର କୃଷ୍ଣକେଶ ରୂପକ ଏକ ଅଂଶ । ପୃଥିବୀକୁ ଭାରରୁ ଉଦ୍ଧାର କରିବା ନିମନ୍ତେ ଶ୍ରୀକୃଷ୍ଣ କାରୁଣ ପୁରୀକୁ ଗଲେବେଳେ, ମର୍ତ୍ତ୍ୟଲୀଳା ଶେଷ କରି ସ୍ୱସ୍ଥାନକୁ ଫେରିଆସିବା ନିମନ୍ତେ ନାରାୟଣ ଶ୍ରୀକୃଷ୍ଣଙ୍କୁ ଉପଦେଶ ଦେଇଛନ୍ତି । ଏହି ଉକ୍ତି ଉପର୍ଯ୍ୟୁକ୍ତ ମତକୁ ଆହୁରି ସ୍ପଷ୍ଟ କରୁଥିଲେହେଁ ଚୈତନ୍ୟ ସମ୍ପ୍ରଦାୟରେ ସ୍ୱୀକୃତ ଶ୍ରୀକୃଷ୍ଣଙ୍କର ଭଗବାନତ୍ୱ ଏଠାରେ ଅସ୍ପଷ୍ଟ ହୋଇ-ପଡୁଛି । କିନ୍ତୁ ଏହିସବୁ ସନ୍ଦେହର ଦୂରୀକରଣ ନିମନ୍ତେ ଶ୍ରୀରୂପ ଗୋସ୍ୱାମୀ ତାଙ୍କର 'ଲଘୁଭାଗବତାମୃତ' ଗ୍ରନ୍ଥରେ ବିସ୍ତୃତ ଆଲୋଚନା କରି କହିଛନ୍ତି ଯେ—ଏସବୁ ବିବରଣୀ ଦ୍ୱାରା ଶ୍ରୀକୃଷ୍ଣଙ୍କର ଭଗବାନତ୍ୱ ମ୍ଳାନ ହୁଏନାହିଁ ।

ତାଙ୍କ ମତରେ ମହାଲକ୍ଷ୍ମୀ ପତି ନାରାୟଣ ହେଉଛନ୍ତି ଲୀଳା ପୁରୁଷୋତ୍ତମ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କର ବିଳାସ ରୂପ । ଏହି ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ମଥୁରାରେ ଆବିର୍ଭାବ ହେବା ନିମନ୍ତେ ପ୍ରଥମେ ସଙ୍କର୍ଷଣ ବ୍ୟୂହର ଆବିର୍ଭାବ ଘଟାନ୍ତି । ତାପରେ ଯଥା ସମୟରେ ସ୍ୱୀୟ ଅନ୍ତରଙ୍ଗିତ ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ବ୍ୟୂହର ପ୍ରକାଶ କରିବା ଲକ୍ଷ୍ୟ ରଖି ଆନକ ଦୁନ୍ଦୁଭି (ବାସୁଦେବଙ୍କର ମୂଳରୂପ) ହୃଦୟରେ ପ୍ରକଟ ହୁଅନ୍ତି । ଶ୍ୱେତ ବରାହ କଳ୍ପସ୍ଥ ବୈବସ୍ୱତ ମନ୍ୱନ୍ତରୀୟ ଅଷ୍ଟାବିଂଶ ଚତୁର୍ଯୁଗର ଦ୍ୱାପରଯୁଗ ଶେଷବେଳକୁ ପୃଥିବୀ ଯେତେବେଳେ ଦୈତ୍ୟ ଉତ୍ପୀଡନରେ ଅସ୍ଥିର ହୁଏ, ସେତେବେଳେ ଆନକ ଦୁନ୍ଦୁଭି ମର୍ତ୍ତ୍ୟରେ ବସୁଦେବ ରୂପେ ଜନ୍ମ ହୋଇଥାନ୍ତି । କ୍ଷୀରୋଦ୍ଶାୟୀ ନାରାୟଣ (ଅନିରୁଦ୍ଧ ବ୍ୟୂହ) ପୂର୍ବରୁ ବସୁଦେବଙ୍କ ହୃଦୟରେ ଅବସ୍ଥାନ କରୁଥିବା ଶ୍ରୀକୃଷ୍ଣଙ୍କ ସହିତ ବସୁଦେବଙ୍କ ହୃଦୟରୁ ଆସି ଦେବକୀଙ୍କ ହୃଦୟରେ ପ୍ରକଟ ହୁଅନ୍ତି ଏବଂ ତାପରେ କାରାଗାରରେ ଦେବକୀଙ୍କଠାରୁ ଜନ୍ମଲାଭ କରନ୍ତି । ବସୁଦେବ ତାଙ୍କୁ ନନ୍ଦପୁରରେ ଯଶୋଦାଙ୍କ ପାଖରେ ରଖି ଆସନ୍ତି ।'

(୮) ଏହି ପ୍ରସଙ୍ଗରେ କେତେକ ଭାଗବତଗଣ କହନ୍ତି ଯେ ବସୁଦେବଙ୍କ ଗୃହରେ ଆଦିବ୍ୟୂହ ବାସୁଦେବ ଓ ଗୋକୁଳରେ ନନ୍ଦପୁରରେ ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ ପ୍ରକଟ ହୋଇଥିଲେ । କାରାଗୃହରେ ଜନ୍ମକାଳରେ ଶ୍ରୀକୃଷ୍ଣ ଦେବକୀଙ୍କୁ ଯେଉଁ ଚତୁର୍ଭୁଜ (ବାସୁଦେବଙ୍କ ରୂପ) ଦେଖାଇଥିଲେ, ତାହା ଦେବକୀଙ୍କ ଅନୁରୋଧରେ ଯଶୋଦାଙ୍କ ପ୍ରିୟ ଦ୍ୱିଭୁଜ ରୂପ (ଲୀଳା ପୁରୁଷୋତ୍ତମ ରୂପ)ରେ ପ୍ରକାଶିତ ହୋଇଥିଲା । ଏହିପରି ଭାବେ ରୂପଗୋସ୍ୱାମୀ ଦେବକୀସୁତ କୃଷ୍ଣ (ଆଦି ବ୍ୟୂହ ବାସୁଦେବଙ୍କ ଅବତାର) ବା କ୍ଷତ୍ରିୟ କୃଷ୍ଣଙ୍କୁ ନନ୍ଦନନ୍ଦନ ଶ୍ରୀକୃଷ୍ଣ ( ଲୀଳା ପୁରୁଷୋତ୍ତମ ସ୍ୱୟଂ ଭଗବାନଙ୍କଠାରୁ ଭିନ୍ନ ବୋଲି ପ୍ରତିପାଦିତ କରିଛନ୍ତି । ତାଂକ ମତରେ ଦେବକୀ ସୁତ କୃଷ୍ଣ ବା କ୍ଷତ୍ରିୟକୃଷ ହେଉଛନ୍ତି ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣଂକର ବିଳାସ ରୂପ ବାସୁଦେବ ।

'ଲଘୁଭାଗବତାମୃତ' ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ— ଶ୍ରୀକୃଷ୍ଣ ଅଂଶୀ ହୋଇଥିବାରୁ ତାଙ୍କ ସହିତ ବିଭିନ୍ନ ଅଂଶର ସଂଯୋଗ ଶାସ୍ତ୍ରସିଦ୍ଧଅଟେ । ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହେବାକ୍ଷଣି କ୍ଷୀରାବ୍ଧିନାଥ ନାରାୟଣ (ଅନିରୁଦ୍ଧ) ତାଙ୍କଠାରେ ଏବଂ ଦେବତାଙ୍କର ଅଂଶ ଯଦୁଗଣଙ୍କ ମଧ୍ୟରେ ପ୍ରକଟ ହୁଅନ୍ତି । (୯) ସେହିପରି ଦ୍ୱାରକାରୁ ଶ୍ରୀକୃଷ୍ଣ ଅପ୍ରକଟ ହେଲେ ଶ୍ରୀକୃଷ୍ଣଙ୍କଠାରୁ ଓ ଯଦୁଗଣଙ୍କଠାରୁ ସେହି ଅଂଶ ସ୍ୱସ୍ୱ ପଦରେ ଅଧିଷ୍ଠିତ ହୁଅନ୍ତି । କ୍ଷୀରୋଦ-ଶାୟୀ ନାରାୟଣ ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରବେଶକରି ଦୁଷ୍ଟ ସଂହାର ଓ ମହିମା ପ୍ରଦର୍ଶନ ଆଦି ଐଶ୍ୱର୍ଯ୍ୟଲୀଳା ପ୍ରକାଶ କରନ୍ତି । (୧୦)

ଚୈତନ୍ୟ ସମ୍ପ୍ରଦାୟର ଦର୍ଶନ ଶାସ୍ତ୍ରରେ ଶ୍ରୀକୃଷ୍ଣଂକର ଲୀଳାକୁ ତ୍ରିଧା ବିଭକ୍ତ କରାଯାଇଛି । ଶ୍ରୀକୃଷ୍ଣ ଦ୍ୱାରକାରେ ପୂର୍ଣ୍ଣଲୀଳା, ମଥୁରାରେ ପୂର୍ଣ୍ଣତର ଓ ଗୋକୁଳରେ ପୂର୍ଣ୍ଣତମ ଲୀଳା ପ୍ରକାଶ କରିଥାନ୍ତି । (୧୧) ଗୋକୁଳସ୍ଥ ବୃନ୍ଦାବନ ନିତ୍ୟ ଗୋଲକ ଧାମର ବିଭୂତି ହେତୁ ସେଠାରେ ଶ୍ରୀକୃଷ୍ଣ ନିତ୍ୟ ଅବସ୍ଥାନ କରନ୍ତି । ଏହିଠାରେ ଶ୍ରୀକୃଷ୍ଣଂକର ପୂର୍ଣ୍ଣତମତ୍ତ୍ୱ ପ୍ରକାଶିତ ହୋଇଥାଏ । ଓଡ଼ିଆ ସାହିତ୍ୟରେ ନାୟିକବି ବୃନ୍ଦାବନ ଦାସୀ ଶ୍ରୀକୃଷ୍ଣଙ୍କର ସେହି ଲୀଳାକୁ ତାଙ୍କର 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' ଗ୍ରନ୍ଥରେ ପ୍ରକାଶିତ କରିଛନ୍ତି ।

କେବଳ ରୂପ ଗୋସ୍ୱାମୀ ନୁହନ୍ତି ଶ୍ରୀ ବଳଦେବ ବିଦ୍ୟାଭୂଷଣ ମଧ୍ୟ 'ଗୋବିନ୍ଦଭାଷ୍ୟ' ଗ୍ରନ୍ଥର ଟୀକା 'ସିଦ୍ଧାନ୍ତରତ୍ନମ୍'ରେ ଶ୍ରୀକୃଷ୍ଣଙ୍କର ଅବତାରିତ୍ୱକୁ ଠିକ୍ ଏହିଭଳି ବର୍ଣ୍ଣନା କରିଛନ୍ତି । (ତୃତୀୟ ପାଦ) ଶ୍ରୀକୃଷ୍ଣଙ୍କର ଅବତାରିତ୍ୱକୁ ପ୍ରତିପାଦନ ନିମନ୍ତେ ଏହି ସଂପ୍ରଦାୟର ସମସ୍ତ ଗୋସ୍ୱାମୀ ଶ୍ରୀମଦ୍ଭାଗବତର 'ଏତେଚାଂଶକଳା ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' (୧୨)କୁ ଉଦ୍ଧାର କରିଥାନ୍ତି । ପରମ ବୈଷ୍ଣବ କବି ଅଭିମନ୍ୟୁ ତାଙ୍କର ଗ୍ରନ୍ଥ ମଧ୍ୟରେ ଶ୍ରୀକୃଷ୍ଣଙ୍କର ଏହି ସମସ୍ତ ଅବତାର ସମ୍ପର୍କୀୟ ତତ୍ତ୍ୱକୁ ସୁନ୍ଦରଭାବେ ପରିବେଷଣ କରିଛନ୍ତି । ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବୈଷ୍ଣବ କବିମାନେ ମଧ୍ୟ କେତେକ ସ୍ଥଳରେ ଏହିସବୁ ତତ୍ତ୍ୱକୁ ଅଳ୍ପ ବହୁତେ ଉଲ୍ଲେଖ କରିଅଛନ୍ତି । ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମଦର୍ଶନର ପ୍ରାମାଣିକ ଗ୍ରନ୍ଥ 'ବ୍ରହ୍ମ ସଂହିତା'ରେ ଶ୍ରୀକୃଷ୍ଣଙ୍କର ଭଗବାନତ୍ୱ ଓ ବ୍ରହ୍ମତ୍ୱର ମହତ୍ତ୍ୱ ପ୍ରତିଷ୍ଠିତ ହୋଇଥିବାର ଦେଖାଯାଏ । ଏଥିରେ କୁହାଯାଇଛି—'ଯେଉଁ ଗୋବିନ୍ଦ ଅନନ୍ତ ଅଶେଷଭୂତ ନିଷ୍କଳ ବ୍ରହ୍ମ, ମୁଁ ତାଙ୍କୁ ଭଜନ କରୁଛି ।' (୧୩) ଯେଉଁ ମହାବିଷ୍ଣୁଙ୍କର ଏକ ନିଃଶ୍ୱାସକାଳ (ସୃଷ୍ଟିରୁ ପ୍ରଳୟ ପର୍ଯ୍ୟନ୍ତ ସମୟ)କୁ ଅବଲମ୍ବନ କରି ତାଙ୍କର (ସେହି ମହାବିଷ୍ଣୁଙ୍କର) ଲୋମ ବିବରରେ ସ୍ଥିତ ସମସ୍ତ ବ୍ରହ୍ମାଣ୍ଡର ସୃଷ୍ଟି, ପାଳନ ଓ ସଂହାରକର୍ତ୍ତା ବ୍ରହ୍ମା, ବିଷ୍ଣୁ; ଶିବ ନିଜ ନିଜ ଅଧିକାରରେ ଅବସ୍ଥାପିତ ହୋଇଛନ୍ତି, ସେହି ମହାବିଷ୍ଣୁ ଯେଉଁ ଆଦି ଗୋବିନ୍ଦଙ୍କର ଅଂଶ ସ୍ୱରୂପ ଅଟନ୍ତି, ମୁଁ ତାଙ୍କୁ ଭଜନ କରୁଛି । (୧୪)

## ଶ୍ରୀକୃଷ୍ଣଙ୍କ ଚତୁଃଷଷ୍ଠୀଗୁଣ—

ଚୈତନ୍ୟପନ୍ଥୀ ବୈଷ୍ଣବ ପରମ୍ପରାରେ ଶ୍ରୀକୃଷ୍ଣ ହେଉଛନ୍ତି ଚିର-କିଶୋର, ରସଘନ ବିଗ୍ରହ, ଆନନ୍ଦ ଚିନ୍ମୟ ତନୁ ଓ ଚତୁଷଃଷଷ୍ଠୀଗୁଣଯୁକ୍ତ । ଶ୍ରୀଚୈତନ୍ୟ ଚରିତାମୃତରେ ଶ୍ରୀକୃଷ୍ଣଙ୍କର ଚତୁଃଷଷ୍ଠୀଗୁଣର ଉଲ୍ଲେଖ ରହିଛି ।

"ଅନନ୍ତ କୃଷ୍ଣେର ଗୁଣ ଚୌଷଠି ପ୍ରଧାନ
ଏକ ଏକ ଗୁଣଗୁଣି ଜୁଡ଼ାୟ ଭକ୍ତଗଣ ।" (୧୫)

ଶ୍ରୀକୃଷ୍ଣଙ୍କର ଏହି ଚୌଷଠିଗୁଣ ମଧ୍ୟରୁ ପଚାଶଟି ଗୁଣ ମନୁଷ୍ୟମାନଙ୍କଠାରେ ଅଳ୍ପ ବହୁତେ ପ୍ରକାଶିତ ହୋଇଥାଏ । ପଞ୍ଚାଶଟିଗୁଣ ଶିବଙ୍କଠାରେ, ପାଞ୍ଚଟିଗୁଣ ନାରାୟଣଙ୍କଠାରେ ଓ ଅବଶିଷ୍ଟ ଚାରିଟିଗୁଣ କେବଳ ଶ୍ରୀକୃଷ୍ଣଙ୍କଠାରେ ପ୍ରକାଶିତ ହୋଇଥାଏ । ସେହିଗୁଡ଼ିକ ହେଉଛି ମନୁଷ୍ୟମାନଙ୍କଠାରେ ପ୍ରକାଶିତ ପଚାଶ ଗୁଣ ଯଥା – ନାୟକ, ମନୋହରାଙ୍ଗ, ସୁଲକ୍ଷଣଯୁକ୍ତ, ରୁଚିର, ତେଜସ୍ୱୀ, ବଳିଷ୍ଠ, କିଶୋର ବୟସ, ନାନା ଭାଷାବିତ୍, ସତ୍ୟଭାଷୀ, ପ୍ରିୟବାଦ, ବାଗ୍ମୀ, ପଣ୍ଡିତ, ବୁଦ୍ଧିମାନ, ପ୍ରତିଭାଶାଳୀ, ରସିକ, ଚତୁର, ଦକ୍ଷ, କୃତଜ୍ଞ, ଦୃଢ଼ବ୍ରତ, ଦେଶକାଳପାତ୍ରଜ୍ଞ, ଶାସ୍ତ୍ରଦୃଷ୍ଟି, ପବିତ୍ର, ଜିତେନ୍ଦ୍ରିୟ, ସ୍ଥିର, ଦାନ୍ତ, କ୍ଷମାଶୀଳ, ଗମ୍ଭୀର, ଧୃତିଶୀଳ, ସାମ୍ୟପରାୟଣ, ବଦାନ୍ୟ, ଧର୍ମଶୀଳ, ଶୂର, ଦୟାଳୁ, ମାନଦାୟକ, ସୁଶୀଳ, ବିନୟୀ, ଲଜ୍ଜାଶୀଳ, ଶରଣାରକ୍ଷକ, ସୁଖୀ, ଭକ୍ତ, ସୁହୃଦ, ପ୍ରେମବଶ, ସର୍ବଜନମଙ୍ଗଳକାରୀ, ମହାପ୍ରତାପବାନ, କୀର୍ତ୍ତିଶାଳୀ, ଲୋକାନୁରଞ୍ଜକ, ସାଧୁମାନଙ୍କର ଆଶ୍ରୟ, ରମଣୀରଞ୍ଜକ, ମହାସମୃଦ୍ଧିମାନ, ସର୍ବଶ୍ରେଷ୍ଠ ବା ସ୍ୱତନ୍ତ୍ର ଈଶ୍ୱର ।

**ମହେଶଙ୍କଠାରେ ପ୍ରକାଶିତ ପାଞ୍ଚଗୁଣ—**

୧ । ନିରନ୍ତର ମାୟାଜୟକର ସ୍ୱରୂପାବସ୍ଥାରେ ଅବସ୍ଥାନ କରିବା ।

୨ । ସର୍ବାନ୍ତର୍ଯ୍ୟାମୀ । ୩ । ସର୍ବଜ୍ଞ, ୪ । ନିରନ୍ତର ଘନୀଭୂତ ସଚ୍ଚିଦାନନ୍ଦ ମୂର୍ତ୍ତି, ୫ । ଅଣିମାଦି ଅଷ୍ଟସିଦ୍ଧିର ଅଧିକାରୀ ।

**ନାରାୟଣଙ୍କଠାରେ ପ୍ରକାଶିତ ପାଞ୍ଚଗୁଣ—**

୧ । ଅଚିନ୍ତ୍ୟ ମହାଶକ୍ତିମାନ୍ ।

୨ । ଅନନ୍ତ କୋଟିବ୍ରହ୍ମାଣ୍ଡର ଆଧାର ।

୩ । ସମସ୍ତ ଅବତାର ଉତ୍ପତ୍ତିର ସ୍ଥାନ ।

୪ । ଶତ୍ରୁମାନଙ୍କର ସଦ୍‌ଗତି ଦାତା ।

୫ । ଆତ୍ମାରାମ ।

**କେବଳ ଶ୍ରୀକୃଷ୍ଣଙ୍କଠାରେ ପ୍ରକାଶିତ ସ୍ୱତନ୍ତ୍ର ଚାରିଗୁଣ—**

୧ । ଅଦ୍ଭୁତ ଚମତ୍କାର ଲୀଳା ତରଙ୍ଗର ମହାସାଗର ।

୨ । ଭକ୍ତମାନଙ୍କୁ ଅନୁପମ ମଧୁର ପ୍ରେମରେ ଭୂଷିତ କରନ୍ତି ।

୩ । ମନୋହର ବଂଶୀନାଦରେ ତ୍ରିଭୁବନର ଚିତ୍ତାକର୍ଷଣ କରିବା ।

୪ । ଅସାଧାରଣ ନାଟ୍ୟଛଟାରେ ଜଗତର ବିଶ୍ୱ ବିମୋହିତ କରିବା ।

ଶ୍ରୀକୃଷ୍ଣ ପୁରୁଷୋତ୍ତମ ହୋଇଥିବାରୁ ତାଙ୍କଠାରେ ଏହି ଚତୁଃଷଷ୍ଠୀ-ଗୁଣ ପ୍ରକାଶିତ ହୋଇଥାଏ । ଶ୍ରୀକୃଷ୍ଣଙ୍କର ଏହି ଚତୁଃଷଷ୍ଠୀ ଗୁଣକୁ କବି ଅଭିମନ୍ୟୁ ତାଙ୍କର ବିଦଗ୍ଧ ଚିନ୍ତାମଣି ଓ ପ୍ରେମ ଚିନ୍ତାମଣି କାବ୍ୟରେ ବିସ୍ତୃତଭାବେ ବର୍ଣ୍ଣନା କରିଛନ୍ତି ।

**ଶ୍ରୀକୃଷ୍ଣ ପରମବ୍ରହ୍ମ**—'ବ୍ରହ୍ମ' ଶବ୍ଦଟିର ମୂଳଧାତୁ ହେଉଛି 'ବୃହଂ', ଯାହାର ଅର୍ଥ ହେଉଛି ବୃହତ୍ । ଉପନିଷଦ୍‌ମାନଙ୍କରେ ବ୍ରହ୍ମଙ୍କର ବିସ୍ତୃତ ବର୍ଣ୍ଣନା ରହିଅଛି । ଉପନିଷଦ୍‌ର ଏହି ବ୍ରହ୍ମତତ୍ତ୍ୱ ଆଚାର୍ଯ୍ୟ ଓ ଦାର୍ଶନିକମାନଙ୍କ ଦ୍ୱାରା ଦୁଇ । ବିରୋଧୀ ଚିନ୍ତାଧାରା ଉପରେ ପ୍ରତିଷ୍ଠିତ । ଗୋଟିଏ ଚିନ୍ତାଧାରାରେ ବ୍ରହ୍ମ ନିର୍ବିଶେଷ, ନିର୍ଗୁଣ, ନିଃଶକ୍ତିକ, ନିରାକାର, ଜ୍ଞାନସ୍ୱରୂପ ଓ ଆନନ୍ଦ ସ୍ୱରୂପ ରୂପେ ବର୍ଣ୍ଣିତ ହୋଇଥିବାବେଳେ, ଅନ୍ୟ ଚିନ୍ତାଧାରାରେ ସେ ହେଉଛନ୍ତି ସବିଶେଷ, ସଗୁଣ, ଶକ୍ତିଯୁକ୍ତ, ସାକାର, ଜ୍ଞାନମୟ ଓ ଆନନ୍ଦମୟ ରୂପେ ବର୍ଣ୍ଣିତ । ଏହି ଦୁଇ ମତବାଦର ପ୍ରତିଷ୍ଠା ନିମନ୍ତେ ସେହି ଗୋଷ୍ଠୀର ଆଚାର୍ଯ୍ୟମାନେ ବିଭିନ୍ନ ବେଦାନ୍ତ ସୂତ୍ର ରଚନା କରିଥିଲେ । କିନ୍ତୁ ଆମେ ଦେଖିବାର କଥା ଯେ ଚୈତନ୍ୟ ସମ୍ପ୍ରଦାୟରେ ବ୍ରହ୍ମ କେଉଁ ଶ୍ରେଣୀଭୁକ୍ତ ନିର୍ଗୁଣ କି ସଗୁଣ । ଏ ସମ୍ପର୍କରେ 'ଶ୍ରୀଚୈତନ୍ୟ ଚରିତାମୃତ'ରେ ବିଶଦ୍ ବ୍ୟାଖ୍ୟା କରାଯାଇ କୁହାଯାଇଛି—'ବ୍ରହ୍ମ ବୃହତ୍; ଈଶ୍ୱର ଲକ୍ଷଣ ମଣ୍ଡିତ, ଷଡୈଶ୍ୱର୍ଯ୍ୟଯୁକ୍ତ, ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା, ତ୍ରିଶକ୍ତି ଯୁକ୍ତ ଏବଂ ପୂର୍ଣ୍ଣାନନ୍ଦ । ଉପନିଷଦ୍‌ର ନିର୍ଗୁଣ ବ୍ରହ୍ମଙ୍କୁ ପ୍ରାକୃତ ଗୁଣ (ମାୟିକଗୁଣ ବା ଜାଗତିକ ଗୁଣ ବା ସତ୍ତ୍ୱ, ରଜ, ତମୋଗୁଣ) ଶୂନ୍ୟ ବୋଲି ବୁଝିବାକୁ ହେବ । ସେ ଜ୍ଞାନ, ବଳ, ଶକ୍ତି, ଐଶ୍ୱର୍ଯ୍ୟ, ତେଜ ଓ ବୀର୍ଯ୍ୟ ଆଦି ଅପ୍ରାକୃତ ଷଡଗୁଣ ଯୁକ୍ତ ହେତୁ ସଗୁଣ ଅଟନ୍ତି । ବ୍ରହ୍ମଙ୍କର ନେତ୍ର ଓ ମନ ଅପ୍ରାକୃତ । ଶ୍ରୀକୃଷ୍ଣ ହେଉଛନ୍ତି ସେହି ବ୍ରହ୍ମ ବା ଭଗବାନ୍ । ବ୍ରହ୍ମ ସଚ୍ଚିଦାନନ୍ଦ ମୟ ଅର୍ଥାତ୍ ସତ୍, ଚିତ ଓ ଆନନ୍ଦମୟ । ତାଙ୍କର ସତ୍ ଅଂଶରେ ସନ୍ଧିନୀଶକ୍ତି, ଚିତ୍ ଅଂଶରେ ସମ୍ବିତ୍‌ଶକ୍ତି ଓ ଆନନ୍ଦାଂଶରେ ହ୍ଲାଦିନୀ ଶକ୍ତି—ଏହିପରି ତିନୋଟି ସ୍ୱରୂପ ଶକ୍ତି ରହିଛନ୍ତି । ତାଙ୍କର ଚିତ୍‌ଶକ୍ତି

ହେଉଛି ଅନ୍ତରଙ୍ଗା ଶକ୍ତି, ମାୟାଶକ୍ତି ହେଉଛି ବହିରଙ୍ଗା ଶକ୍ତି ଏବଂ ଜୀବଶକ୍ତି ହେଉଛି ତଟସ୍ଥା ଶକ୍ତି । ଷଡ଼ୈଶ୍ୱର୍ଯ୍ୟ ହେଉଛି ଚିତ୍‌ଶକ୍ତିର ବିଳାସ । ସେ ମାୟାର ଅଧୀଶ୍ୱର । ଜୀବ ବ୍ରହ୍ମଙ୍କର ଚିତ୍ ଶକ୍ତିର ଅଂଶ ହେଲେ ମଧ୍ୟ ମାୟାଦ୍ୱାରା ଆଚ୍ଛନ୍ନ ହେବା ଫଳରେ ବ୍ରହ୍ମଙ୍କଠାରୁ ତାହାର ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଜୀବ ଓ ଈଶ୍ୱର ଏକ ଏବଂ ଅଭିନ୍ନ ନୁହନ୍ତି । ବ୍ରହ୍ମ ବା ଈଶ୍ୱରଙ୍କ ବିଗ୍ରହ ସତ୍ତ୍ୱଗୁଣର ବିକାର ଓ ସଚ୍ଚିଦାନନ୍ଦାକାର । ଏହି ବିଗ୍ରହକୁ ଯେ ସ୍ୱୀକାର ନକରେ, ସେ ପାଷଣ୍ଡ । ବେଦାନ୍ତ ବ୍ରହ୍ମତତ୍ତ୍ୱକୁ ବୁଝାଇ ଜୀବ ନିସ୍ତାର କରିବା ଉଦ୍ଦେଶ୍ୟରେ ବ୍ୟାସଦେବ ଯେଉଁ ବ୍ରହ୍ମସୂତ୍ର ରଚନା କଲେ, ତାହାର ଭାଷ୍ୟରେ ଯଦି ମାୟାକୁ ପ୍ରାଧାନ୍ୟ ଦିଆଯାଏ ଏବଂ ସେହି ଭାଷ୍ୟକୁ ଯଦି ଶୁଣାଯାଏ ତେବେ ଜୀବ ନିସ୍ତାର ତ ଦୂରର କଥା ଜୀବର ସର୍ବନାଶ ହୋଇଥାଏ । ବ୍ୟାସ ସ୍ୱକୃତ ବ୍ରହ୍ମ-ସୂତ୍ରରେ ସୃଷ୍ଟିକୁ ବ୍ରହ୍ମଙ୍କର ପରିଣାମ (ଅର୍ଥାତ୍ ବ୍ରହ୍ମ ଜଗତ ଓ ଜୀବ ରୂପରେ ପରିଣତ ହୁଅନ୍ତି) ବୋଲି କହିଛନ୍ତି । ଜଗତ୍ ବ୍ରହ୍ମଙ୍କର ଏକ ରୂପ । ଏହାକୁ ପରିଣାମ ବାଦ୍ କୁହାଯାଏ । ବ୍ୟାସଂକର ସୂତ୍ରରେ ବର୍ଣ୍ଣିତ ଏହି ପରିଣାମ ବାଦକୁ ଭ୍ରାନ୍ତ ବୋଲି କହି ଶଙ୍କର ଯେଉଁ ବିବର୍ତ୍ତବାଦ (ଜଗତ୍ ବ୍ରହ୍ମଙ୍କର ରୂପ ନୁହେଁ । ଏହା ମିଥ୍ୟା-ଏହିଭଳି ମତବାଦ) ପ୍ରତିଷ୍ଠା କରିଛନ୍ତି, ତାହା କଳ୍ପନା ମାତ୍ର । ପ୍ରକୃତରେ ଜଗତ୍ ମିଥ୍ୟା ନୁହେଁ । ନଶ୍ୱର ମାତ୍ର । ପ୍ରଣବ ହେଉଛି ବ୍ରହ୍ମଙ୍କର ମୂର୍ତ୍ତି । ପ୍ରଣବରୁ ସମସ୍ତ ବେଦ ଓ ଜଗତ୍ ସୃଷ୍ଟ ହେଉଛନ୍ତି । ଭଗବାନଙ୍କ ସହିତ ସମ୍ବନ୍ଧ ଓ ସ୍ଥାପନ ପାଇଁ ବେଦ (ବେଦଜ୍ଞାନ) ଭକ୍ତି ଓ ପ୍ରେମ ଏହି ତିନୋଟି ଅଭିଧେୟ । ଜୀବର ପରମ ପୁରୁଷାର୍ଥ ହେଉଛି ଭଗବାନଙ୍କଠାରେ ଭକ୍ତି ପୋଷଣ କରିବା ।' (୧୬) ଶ୍ରୀଚୈତନ୍ୟ ପୁନଶ୍ଚ, ସୃଷ୍ଟି କରି କହିଛନ୍ତି, ବ୍ରହ୍ମଙ୍କର ସ୍ୱରୂପ ହେଉଛି ସଗୁଣ ଓ ସବିଶେଷ । ତାଙ୍କର ଅଙ୍ଗକାନ୍ତି ସମ୍ପର୍କରେ ସେ କହିଛନ୍ତି—

"ବ୍ରହ୍ମ ଅଙ୍ଗକାନ୍ତି ଯା'ର ନିର୍ବିଶେଷ ପ୍ରକାଶେ
ସୂର୍ଯ୍ୟ ଯେମନ ଚର୍ମଚକ୍ଷେ ଜ୍ୟୋତିର୍ମୟ ଦିଶେ । (୧୭)

ଅର୍ଥାତ୍ ତାଂକର ଅଙ୍ଗକାନ୍ତି ହେଉଛି ନିର୍ଗୁଣ ଓ ନିର୍ବିଶେଷ, ଠିକ୍ ସୂର୍ଯ୍ୟ ଓ ସୂର୍ଯ୍ୟ କିରଣ ଭଳି । ଶ୍ରୀଚୈତନ୍ୟଂକର ଏହି ଉକ୍ତି

ବିଭିନ୍ନ ଉପନିଷଦ୍, ଶ୍ରୁତି ଶାସ୍ତ୍ର ଓ ତାପିନୀ ଗ୍ରନ୍ଥ ଦ୍ୱାରା ସମର୍ଥିତ । କୃଷ୍ଣୋପନିଷଦର "କୃଷ୍ଣୋ ବ୍ରହ୍ମୈବ ଶାଶ୍ୱତମ୍" ଗୋପାଳ ପୂର୍ବ ତାପିନୀ ଶ୍ରୁତିର "କୃଷି ର୍ଭୂବାଚକଃ ଶବ୍ଦୋଣଶ୍ଚ ନିର୍ବୃତି ବାଚକଃ ତୟୋରୈକ୍ୟଂ ପରଂବ୍ରହ୍ମ କୃଷ୍ଣ ଇତ୍ୟଭିଧୀୟତେ" (୧୮) ଓ ଗୋପାଳୋତ୍ତର ତାପିନୀ ଶ୍ରୁତିର "ଯୋଽସୌ ପରବ୍ରହ୍ମ ଗୋପାଳ" (୧୯) ପ୍ରଭୃତି ପଦଗୁଡ଼ିକ ଶ୍ରୀଚୈତନ୍ୟଙ୍କ ମତର ଅନୁରୂପ । ଏତଦ୍ ବ୍ୟତୀତ ବିଷ୍ଣୁପୁରାଣ, ଶ୍ରୀମଦ୍ଭାଗବତ ପ୍ରଭୃତି ଗ୍ରନ୍ଥରେ କୃଷ୍ଣଙ୍କୁ ପରଂବ୍ରହ୍ମ ରୂପେ ଗ୍ରହଣ କରାଯାଇ ଏବଂବିଧ ଉକ୍ତିମାନ ପ୍ରଦତ୍ତ ହୋଇଛି । କେବଳ ଶ୍ରୀଚୈତନ୍ୟ ନୁହନ୍ତି ରାମାନୁଜ, ନିମ୍ବାର୍କ, ମାଧ୍ୱ, ବଲ୍ଲଭ ପ୍ରଭୃତି ଆଚାର୍ଯ୍ୟଗଣ ବ୍ରହ୍ମଙ୍କୁ ଶକ୍ତିମାନ୍, ସବିଶେଷ, ସଗୁଣ ରୂପେ ଗ୍ରହଣ କରି ଶ୍ରୀକୃଷ୍ଣଙ୍କୁ ପରଂବ୍ରହ୍ମ ଭାବେ ଗ୍ରହଣ କରିଛନ୍ତି । ଏହାର ପ୍ରଧାନ କାରଣ ହେଉଛି ବ୍ରହ୍ମଙ୍କୁ ଏଭଳି ସଗୁଣ ବା ସାକାର ତଥା ଶକ୍ତିମାନ୍ ଓ ସବିଶେଷ ଭାବେ ଗ୍ରହଣ କରି ନ ଗଲେ ତାଙ୍କୁ ସର୍ବନିୟନ୍ତା ଈଶ୍ୱର ରୂପେ ଚିନ୍ତା କରି ତାଙ୍କଠାରେ ଶରଣାପନ୍ନ ହେବା ଏବଂ ଭକ୍ତିମାର୍ଗରେ ତାଙ୍କର ସେବା ଓ ଭଜନ କରିବା ଆଦୌ ସମ୍ଭବପର ହେବ ନାହିଁ । ସେ ଦୃଷ୍ଟିରୁ ରାଗମାର୍ଗର ଉପାସକମାନେ ଅର୍ଥାତ୍ ପ୍ରେମମାର୍ଗୀ, ସେମାନେ ବ୍ରହ୍ମଙ୍କୁ ଆନନ୍ଦମୟ, ରସଘନ ବିଗ୍ରହ ଓ ଅନୁପମ ସୁନ୍ଦର ରୂପ ଭାବେ ସ୍ୱୀକୃତ ଦେବା ଏକ ସ୍ୱାଭାବିକ ପରିଣତି । ତେଣୁ ଶ୍ରୀଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମର ତାତ୍ତ୍ୱିକ ଦୃଷ୍ଟିରେ ବ୍ରହ୍ମ ଭକ୍ତାହ୍ଲାଦକର, କରୁଣାନିଧାନ, ପ୍ରେମମୟ, ସର୍ବାକର୍ଷକ ଅଭିନବ ଯୌବନ ସମ୍ପନ୍ନ, ସର୍ବଶ୍ରେଷ୍ଠ ସୁନ୍ଦର ରୂପଧାରୀ ଭାବେ ଗୃହୀତ ଓ ସେ ସବୁ ହିଁ ଶ୍ରୀକୃଷ୍ଣଙ୍କଠାରେ ଯୁକ୍ତ । ତେଣୁ ଶ୍ରୀକୃଷ୍ଣ ହେଉଛନ୍ତି ପରଂବ୍ରହ୍ମ ।

**ପରଂବ୍ରହ୍ମ ଶ୍ରୀକୃଷ୍ଣ ଶକ୍ତିବନ୍ତ**— ଶ୍ରୀଚୈତନ୍ୟ ସନାତନ ଶ୍ରୀକୃଷ୍ଣଙ୍କର ଯେଉଁ ତିନିଟି ପ୍ରଧାନ ଶକ୍ତି ବିଷୟରେ କହିଥିଲେ ତାହା ହେଉଛି ତାଙ୍କର ଇଚ୍ଛା ଶକ୍ତି, କ୍ରିୟା ଶକ୍ତି ଓ ଜ୍ଞାନ ଶକ୍ତି । ଶ୍ରୀକୃଷ୍ଣଙ୍କଠାରେ ଇଚ୍ଛାଶକ୍ତି ପୂର୍ଣ୍ଣ ଭାବେ ଅବସ୍ଥାନ କରୁଥିବାରୁ ସେ ଇଚ୍ଛାମୟ ଓ ନିଜ ଇଚ୍ଛାରେ ସମସ୍ତ କାର୍ଯ୍ୟ ବା ହେତୁ ତାଙ୍କୁ ସର୍ବକର୍ତ୍ତା କୁହାଯାଏ । ଶ୍ରୀକୃଷ୍ଣଙ୍କର ଜ୍ଞାନଶକ୍ତି ବାସୁଦେବଙ୍କଠାରେ ପ୍ରକଟିତ ହୁଏ । ତେଣୁ ବାସୁଦେବଙ୍କୁ ସକଳ ଜ୍ଞାନର

ଅଧିଷ୍ଠାତା କୁହାଯାଇଥାଏ । ସେହିପରି କ୍ରିୟା ଶକ୍ତି ସଙ୍କର୍ଷଣଙ୍କ ଠାରେ ପ୍ରକାଶିତ ହୋଇଥାଏ । ଶ୍ରୀକୃଷ୍ଣଙ୍କର ଏହି ତିନିଶକ୍ତିର ମିଳନରେ ପ୍ରାକୃତ ଓ ଅପ୍ରାକୃତ ଜଗତର ସୃଷ୍ଟି କାର୍ଯ୍ୟ ହୋଇଥାଏ । ଏତଦ୍ ବ୍ୟତୀତ ଶ୍ରୀଚୈତନ୍ୟ ଶ୍ରୀକୃଷ୍ଣଙ୍କର ଅନନ୍ତ ଶକ୍ତି ମଧ୍ୟରୁ ଚିତ୍ ଶକ୍ତି, ମାୟା ଶକ୍ତି ଓ ଜୀବ ଶକ୍ତି ପ୍ରଧାନ ବୋଲି ଉଲ୍ଲେଖ କରିଛନ୍ତି । [୨୦] ଶ୍ରୀଜୀବ ଗୋସ୍ୱାମୀ "ସର୍ବ ସମ୍ବାଦିନୀ"ରେ ଏହି ଶକ୍ତିକୁ ଅନ୍ତରଙ୍ଗା, ବହିରଙ୍ଗା ଓ ତଟସ୍ଥା ଶକ୍ତି ଭାବେ ଗ୍ରହଣ କରିଛନ୍ତି ।

ଶ୍ରୀକୃଷ୍ଣଙ୍କର ଅନ୍ତରଙ୍ଗା ଶକ୍ତି ହେଉଛି ପରାଶକ୍ତିର ଅନ୍ତର୍ଭୁକ୍ତ । ପରାଶକ୍ତିର ଅର୍ଥ ହେଉଛି ଉତ୍କୃଷ୍ଟ ଶକ୍ତି । ତେଣୁ ଏହି ଅନ୍ତରଙ୍ଗା ଶକ୍ତି ହେଉଛି ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତି ବିଶେଷ । ଶ୍ରୀକୃଷ୍ଣଙ୍କର ମାୟାଶକ୍ତିକୁ ବହିରଙ୍ଗା ଶକ୍ତି କୁହାଯାଏ । କାରଣ ଏହା ଦୂରରେ ବା ବାହାରେ ଅବସ୍ଥାନ କରୁଥିବା ହେତୁ ତାହାକୁ ଶ୍ରୀକୃଷ୍ଣଙ୍କର ତଟସ୍ଥା ଶକ୍ତି କୁହାଯାଇଥାଏ ।

**ସ୍ୱରୂପ ଶକ୍ତି**—ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତିର ତିନୋଟି ବୃତ୍ତି ରହିଛି । କାରଣ ସେ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦର ଆଧାର । ସେହି ବୃତ୍ତି ତିନଟି ହେଉଛି ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ । ବିଷ୍ଣୁପୁରାଣରେ ମଧ୍ୟ ଏହି ତିନି ବୃତ୍ତିର ଉଲ୍ଲେଖ ଅଛି ।

"ହ୍ଲାଦିନୀ, ସନ୍ଧିନୀ, ସମ୍ବିତ୍ ତ୍ୱୟ୍ୟେକା ସର୍ବ ସଂସ୍ଥିତୌ" [୨୧]

ଶ୍ରୀଜୀବ ଗୋସ୍ୱାମୀ ମଧ୍ୟ ଭଗବତ୍ ସନ୍ଦର୍ଭରେ କହିଛନ୍ତି, ଶ୍ରୀକୃଷ୍ଣ ଯାହା ଦ୍ୱାରା ନିଜ ସତ୍ତାକୁ ଓ ଅନ୍ୟର ସତ୍ତାକୁ ଧାରଣ କରନ୍ତି ଏବଂ ଯାହା ସର୍ବ ଦେଶ କାଳ ଦ୍ରବ୍ୟାଦି ପ୍ରାପ୍ତ କରେ, ତାହା ସନ୍ଧିନୀ । ଶ୍ରୀକୃଷ୍ଣ ସମ୍ବିତ୍ ବା ଜ୍ଞାନ ସ୍ୱରୂପ ହୋଇ ଯାହା ଦ୍ୱାରା ସେ ନିଜକୁ ଜ୍ଞାତ ହୁଅନ୍ତି ଓ ଅନ୍ୟ ମଧ୍ୟରେ ଜ୍ଞାନ ସଞ୍ଚାର କରନ୍ତି, ତାହା ସମ୍ବିତ ଏବଂ ଆହ୍ଲାଦକର ରୂପ ଧାରଣ କରି ଯାହା ଦ୍ୱାରା ସେ ନିଜେ ଆନନ୍ଦ ଅନୁଭବ କରିବା ସହିତ ଅନ୍ୟ ମଧ୍ୟରେ ଆନନ୍ଦ ସଞ୍ଚାର କରନ୍ତି, ତାହା ହ୍ଲାଦିନୀ । [୨୨]

ବିଭିନ୍ନ ଉପନିଷଦ୍‌ମାନଙ୍କରେ ବ୍ରହ୍ମଙ୍କର ଏହି ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ ଶକ୍ତି ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । ପରଂବ୍ରହ୍ମ ଶ୍ରୀକୃଷ୍ଣଙ୍କର ସଚ୍ଚିଦାନନ୍ଦତ୍ୱ ହିଁ ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ । ତାଙ୍କର ତଟସ୍ଥ ଲକ୍ଷଣ ହେଉଛି

ଏହି ଶକ୍ତିର କାର୍ଯ୍ୟ ଯଥା ସନ୍ଧିନୀରେ ସୃଷ୍ଟି କାର୍ଯ୍ୟ, ସମ୍ବିତ୍‌ରେ ଅଜ୍ଞାନ ଦୂର କରିବା କାର୍ଯ୍ୟ ଓ ହ୍ଲାଦିନୀରେ ପ୍ରେମାସ୍ୱାଦନ ଓ ପ୍ରେମ ପ୍ରଦାନ କାର୍ଯ୍ୟ । ଶ୍ରୀକୃଷ୍ଣଙ୍କଠାରେ ଏହି ତିନି ଶକ୍ତିର ପ୍ରକାଶ ସମାନଭାବେ ହୋଇ ନଥାଏ । ଗୋଟିଏ ଶକ୍ତି ପ୍ରାଧାନ୍ୟ ଲାଭ କଲାବେଳେ ଅନ୍ୟ ଦୁଇଟି ଅଳ୍ପ ଅଭିବ୍ୟକ୍ତ ହୋଇଥାନ୍ତି । ତିନିଟିଯାକ ଶକ୍ତି ଏକାବେଳକେ ପ୍ରକାଶିତ ହେଲେ ଶ୍ରୀକୃଷ୍ଣଙ୍କର ବିଗ୍ରହ ପ୍ରକଟିତ ହୋଇଥାଏ । ତେଣୁ ଏ ସମ୍ପର୍କରେ କୁହାଯାଇଛି—

'ଯୁଗପତ୍ର ଶକ୍ତି ହିଯୁ ପ୍ରଧାନଂ ମୂର୍ତ୍ତିଃ' (୨୩)

ପରବ୍ରହ୍ମ ଶ୍ରୀକୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହ ଧାରଣ କରୁଥିବାରୁ ତାଙ୍କର ପୂର୍ଣ୍ଣରୂପେ ସ୍ୱରୂପ ଶକ୍ତିର ବିକାଶ ଘଟିଥାଏ ।

**ଜୀବ ଶକ୍ତି ବା ତଟସ୍ଥା ଶକ୍ତି**—ଏହି ଶକ୍ତି ବ୍ରହ୍ମଙ୍କର ଚିତ୍‌ଶକ୍ତିର ଅଂଶ ବିଶେଷ । ଏହା ଚିତ୍‌ଶକ୍ତି ସମନ୍ୱିତ ହୋଇଥିବାରୁ ଏହା ଚେତନଶୀଳ, ଜଡ଼ ନୁହେଁ ।

**ବହିରଙ୍ଗା ଶକ୍ତି ବା ମାୟାଶକ୍ତି**—ମାୟାର ଅନ୍ୟ ନାମ ହେଉଛି ପ୍ରକୃତି । ଏହା ଜଡ ଓ ଅଚେତନ । ତେଣୁ ସୃଷ୍ଟି, ସ୍ଥିତି ଓ ସଂହାର କାର୍ଯ୍ୟ ଏହାଦ୍ୱାରା ସମ୍ଭବ ହୋଇ ନଥାଏ । ତେଣୁ ଶ୍ରୀମଦ୍ଭାଗବତ୍‌ ଗୀତାରେ ଉକ୍ତ ଅଛି—'ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ଚ ଚରାଚରମ୍' (୨୪) ଅର୍ଥାତ୍ ମୋର (ଶ୍ରୀକୃଷ୍ଣଙ୍କର) ଅଧ୍ୟକ୍ଷତାରେ ପ୍ରକୃତି ଚରାଚରକୁ ସୃଷ୍ଟି କରିଥାଏ । ପୁନଶ୍ଚ ଶ୍ରୀମଦ୍‌ଭାଗବତ୍‌ ଗୀତାର ଅନ୍ୟ ଏକ ସ୍ଥଳରେ ପ୍ରକୃତିକୁ ଗୁଣମୟୀଭାବେ ଗ୍ରହଣ କରାଯାଇଛି । (୨୫) ଶ୍ରୀଚୈତନ୍ୟ-ଚରିତାମୃତ ଗ୍ରନ୍ଥରେ ଏହି ପ୍ରକୃତି ସମ୍ପର୍କରେ କୁହାଯାଇଛି—'ଜଡରୂପା ପ୍ରକୃତି ଜଗତ୍‌ ସୃଷ୍ଟିର କାରଣ ନୁହେଁ । ଅଗ୍ନିଦ୍ୱାରା ଲୌହ ଉତ୍ତପ୍ତ ହେଲାପରି ଶ୍ରୀକୃଷ୍ଣ ପ୍ରକୃତି ମଧ୍ୟରେ ସ୍ୱଶକ୍ତି ସଞ୍ଚାର କରିବା ଫଳରେ ସୃଷ୍ଟି ସମ୍ଭବ ହୋଇଥାଏ । (୨୬) ତେଣୁ ଚୈତନ୍ୟ ସମ୍ପ୍ରଦାୟରେ ବ୍ରହ୍ମମୁଖ୍ୟ ଓ ପ୍ରକୃତି ଗୌଣ, ନିମିତ୍ତ କାରଣ ମାତ୍ର । ଏହି ବହିରଙ୍ଗା ମାୟା ପୁନଶ୍ଚ ଜୀବମାୟା ଓ ଗୁଣ ମାୟା ଭେଦରେ ଦ୍ୱିବିଧ ।

**ଜୀବମାୟା**—ଜଳ ଉପରେ ପ୍ରତିଫଳିତ ସୂର୍ଯ୍ୟ ଛବି ଯେପରି ନିଜର ଅତ୍ୟନ୍ତ ଉତ୍କଟ ତେଜୋରାଶି ଦ୍ୱାରା ଦୃଷ୍ଟିଶକ୍ତିକୁ ଆବୃତ୍ତ କରେ, ସେହିପରି ଜୀବମାୟା ଜୀବର ଜ୍ଞାନକୁ ଆବୃତ୍ତ କରିଥାଏ । (୨୭) ଏହି ଜୀବମାୟାର ଦୁଇ ବୃତ୍ତି ହେଉଛି ଆବରଣାତ୍ମିକା ଓ ବିକ୍ଷେପାତ୍ମିକା । ଆବରଣାତ୍ମିକା ବୃତ୍ତି ଜୀବର ସ୍ୱାଭାବିକ ଜ୍ଞାନକୁ ଆବୃତ କରିଥିବାବେଳେ ବିକ୍ଷେପାତ୍ମିକା ବୃତ୍ତି ଜୀବ ମଧ୍ୟରେ ଅନ୍ୟଥା ଜ୍ଞାନ (ଜଡ ବସ୍ତୁରେ ଆତ୍ମବୁଦ୍ଧି ଭାବ ଅର୍ଥାତ୍ ଦେହାଦିରେ ଆତ୍ମଜ୍ଞାନ) ଜନ୍ମାଇଥାଏ । (୨୮)

**ଗୁଣମାୟା**—ଶ୍ରୀ ଜୀବ ଗୋସ୍ୱାମୀ ପ୍ରକୃତିର ସତ୍ତ୍ୱ, ରଜ ଓ ତମୋଗୁଣକୁ ଗୁଣମାୟା କହିଛନ୍ତି । (୨୯) ଏହାର ବିଦ୍ୟା ଓ ଅବିଦ୍ୟା ନାମକ ଦୁଇ ବୃତ୍ତି ରହିଛି । ବିଦ୍ୟାବୃତ୍ତି ସତ୍ତ୍ୱଗୁଣ ପ୍ରଧାନ ହେତୁ ଏହା ଜୀବ ମଧ୍ୟରେ ମୋକ୍ଷକାମୀ ଜ୍ଞାନ ଜାଗରଣ କରିଥାଏ । ଅବିଦ୍ୟାବୃତ୍ତି ରଜ ଓ ତମୋଗୁଣ ପ୍ରଧାନ ହେତୁ ଏହା ଜୀବର ଜ୍ଞାନକୁ ଆବୃତ୍ତ କରିଥାଏ ।

**ଅନ୍ତରଙ୍ଗା ମାୟା**—ଶ୍ରୀକୃଷ୍ଣଙ୍କଠାରେ ସ୍ଥିତ ଏହି ଶକ୍ତିକୁ ଯୋଗମାୟା କୁହାଯାଇଥାଏ । ଏହା ଶ୍ରୀକୃଷ୍ଣଙ୍କ ବିଶୁଦ୍ଧ ଚିତ୍‌ଶକ୍ତିର ପରିଣତି । ତେଣୁ କୁହାଯାଇଛି—

'ଯୋଗମାୟା ଚିଚ୍ଛକ୍ତି ବିଶୁଦ୍ଧ ସତ୍ତ୍ୱ ପରିଣତି ।' (୩୦)

ବହିରଙ୍ଗାମାୟା ଓ ଯୋଗମାୟା ଉଭୟଙ୍କର କାର୍ଯ୍ୟ ଜୀବକୁ ବିମୁଗ୍ଧ କରିବା । କିନ୍ତୁ ଜୀବର କର୍ମଫଳ ଭୋଗ ନିମନ୍ତେ ବହିରଙ୍ଗାମାୟା ଜୀବକୁ ବିମୁଗ୍ଧ କରି ତା'ର ସ୍ୱରୂପ ଜ୍ଞାନ ଆଚ୍ଛନ୍ନ କରୁଥିବାବେଳେ ଅନ୍ତରଙ୍ଗା ମାୟା ବା ଯୋଗମାୟା ଭଗବାନଙ୍କ ପରିକରଙ୍କୁ ବିମୁଗ୍ଧ କରି ଭଗବତ୍ ସେବାରେ ନିଯୁକ୍ତ କରିଥାଏ । ଏ ସମ୍ପର୍କରେ ଶ୍ରୀ ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ପ୍ରଦତ୍ତ ଉଦ୍ଧୃତିଟି ଉଲ୍ଲେଖ ଯୋଗ୍ୟ—

'ମଧୁର ଐଶ୍ୱର୍ଯ୍ୟ ଆର କୃପାଦି ଭଣ୍ଡାର
ଯୋଗମାୟା ଦାସୀ ଯାହା ରସାଦି ଲୀଳାର ।' (୩୧)

ଏହି ସବୁ ମାୟା ପରବ୍ରହ୍ମଙ୍କ ଉପରେ ପ୍ରଭାବ ବିସ୍ତାର କରିପାରନ୍ତି ନାହିଁ । କାରଣ ବ୍ରହ୍ମଶକ୍ତିମାନ୍, ଓ ମାୟା ତାଙ୍କର ଶକ୍ତି । ସେ ବ୍ରହ୍ମଙ୍କର ଅଧୀନରେ ରହିଥାଏ । ମାୟାକୁ ସେ ଧାରଣ କରିଥିଲେ ମଧ୍ୟ ପଦ୍ମପତ୍ରସ୍ଥ ଜଳପରି ମାୟାଠାରୁ ନିର୍ଲିପ୍ତ ଥା'ନ୍ତି ।

**ପରବ୍ରହ୍ମ ଶ୍ରୀକୃଷ୍ଣ ଷଡୈଶ୍ୱର୍ଯ୍ୟଯୁକ୍ତ** — ଚୈତନ୍ୟ ସମ୍ପ୍ରଦାୟର ପରବ୍ରହ୍ମ ଶ୍ରୀକୃଷ୍ଣ ସଗୁଣରୂପେ ପରିକଳ୍ପିତ ହୋଇଥିବାରୁ ସେ ଷଡୈଶ୍ୱର୍ଯ୍ୟ ଯୁକ୍ତର ଆଧାର । ଏପରି ଚିନ୍ତାଧାରା ବିଭିନ୍ନ ପଞ୍ଚରାତ୍ର ଆଗମରେ ବାସୁଦେବଙ୍କଠାରେ ଯୁକ୍ତଥିଲା । ତେଣୁ ଶ୍ରୀ ଚୈତନ୍ୟପନ୍ଥୀ ବୈଷ୍ଣବମାନେ ତାକୁ କେବଳ ଅନୁସରଣ କରିଛନ୍ତି । ଶ୍ରୀକୃଷ୍ଣ ଷଡ଼ ଐଶ୍ୱର୍ଯ୍ୟ (ଭଗ) ଯୁକ୍ତ ହେତୁ ସେ ଭଗବାନ ବା ଈଶ୍ୱର ଶ୍ରୀ ଚୈତନ୍ୟ ଚରିତାମୃତ ଭଗବାନ ଶ୍ରୀକୃଷ୍ଣଙ୍କର ଏହି ଷଡ଼ ଐଶ୍ୱର୍ଯ୍ୟକୁ ତାଙ୍କର ଚିତ୍‌ଶକ୍ତିର ବିଳାସ ବୋଲି ନିର୍ଦ୍ଦେଶ କରିଛନ୍ତି । ଏହି ଷଡ଼ ଐଶ୍ୱର୍ଯ୍ୟ ହେଉଛି ଜ୍ଞାନ, ଶକ୍ତି, ଐଶ୍ୱର୍ଯ୍ୟ, ବଳ, ବୀର୍ଯ୍ୟ ଓ ତେଜଃ ! ଭଗବାନଙ୍କର ଏହି ଷଡ଼ ଐଶ୍ୱର୍ଯ୍ୟ ସୃଷ୍ଟିକାର୍ଯ୍ୟ ସହିତ ପ୍ରତ୍ୟକ୍ଷଭାବେ ସଂଶ୍ଳିଷ୍ଟ ।

**ଶ୍ରୀକୃଷ୍ଣଙ୍କର ବିଗ୍ରହ**—ଚୈତନ୍ୟପନ୍ଥୀ ବୈଷ୍ଣବ ସମ୍ପ୍ରଦାୟର ଶ୍ରୀକୃଷ୍ଣ ହେଉଛନ୍ତି ରସଘନ ବିଗ୍ରହ । ତାଙ୍କର ବର୍ଣ୍ଣ ସଜଳ ନବଘନ, କଳା କମଳ ଓ ମର୍କତମଣି ତୁଲ୍ୟ । ଏହି ବର୍ଣ୍ଣ ହେଉଛି ସୁଧା, ଆନନ୍ଦ, ଆହ୍ଲାଦ, ମାଦକ, ଶୃଙ୍ଗାର ଓ ପ୍ରେମର ମିଳନସ୍ଥଳ । ଏଥିରେ ଭରି ରହିଛି ମାଧୁର୍ଯ୍ୟ ଓ ଆହ୍ଲାଦ । ମସ୍ତକର କେଶରାଶି ଭ୍ରମରତୁଲ୍ୟ । କେଶ ଗୁଚ୍ଛର ଚୂଡ଼ା ଅର୍ଦ୍ଧଚନ୍ଦ୍ରାକୃତି ପଦ୍ମମାଳ, ମଲ୍ଲୀମାଳ ଓ ଗୁଞ୍ଜମାଳରେ ସୁଶୋଭିତ । ତଥିପରେ ନବଜମ୍ବୁ ପଲ୍ଲବ, କେତକୀ ପାଖୁଡ଼ା ଓ ଶିଖିପୁଚ୍ଛ ମସ୍ତକର ଶୋଭାକୁ ବର୍ଦ୍ଧିତ କରିଥାଏ । ନୟନ ଯୁଗଳ ନବ ଇନ୍ଦୀବର ତୁଲ୍ୟ । ସ୍ନିହାଣୀ ଲଜ, ବ୍ୟାଜ, ଓଜ, ଗାମ୍ଭୀର୍ଯ୍ୟ ଓ ଭଙ୍ଗୀମା ମିଶ୍ରିତ । ତାହା ଖେଳା ଖଞ୍ଜନ, ରଣ କୁରଙ୍ଗ ଓ କାନନ ମୃଗର ଚଞ୍ଚଳତାକୁ ପରାଜିତ କରିଥାଏ । ଭ୍ରୂଲତା କାମକମାନ ପରି ଚିତ୍ତାକର୍ଷକ ଓ କଟାକ୍ଷପାତ ଅତ୍ୟନ୍ତ ମଧୁର । ନାସିକା ତିଳପୁଷ୍ପ ସଦୃଶ । ତହିଁରେ

ଯୁକ୍ତ ମୁକ୍ତାଫଳ ଓ ବସଣୀର ଶୋଭା ଅନୁପମ । କୁନ୍ଦକଳି ଓ ଦାଡ଼ିମ୍ବ ବୀଜ ସଦୃଶ ତାଙ୍କର ଦନ୍ତପଙ୍କ୍ତି । ତାଙ୍କର ରଙ୍ଗଅଧର ରାଗ, ଅନୁରାଗ, ମାଧୁର୍ଯ୍ୟ ଓ ଶ୍ରୀମଣ୍ଡିତ । ମୁଖରେ ମୃଦୁମନ୍ଦହାସ୍ୟ ଅତ୍ୟନ୍ତ ମୁଗ୍ଧକର । କପାଳର ଗୋରଚନା ଶତା ଓ କସ୍ତୁରୀ ତିଳକ ଅତୀବ କମନୀୟ । କଣ୍ଠ କମ୍ବୁକୁ ଜୟ କରିପାରେ । ବନମାଳ ଓ ହନ୍ଦହାର କଣ୍ଠରେ ଶୋଭା ପାଉଥାଏ । ମୃଣାଳ ଭୁଲ୍ୟ ବାହୁରେ ବାହୁଟି, କରରେ କଙ୍କଣ, ଅଙ୍ଗୁଷ୍ଠରେ ମୁଦ୍ରିକା, ହସ୍ତରେ ଲୀଳାପଦ୍ମ ଶ୍ରୀକୃଷ୍ଣଙ୍କର ରୂପର ମାଧୁର୍ଯ୍ୟକୁ ବହୁମଣ୍ଡିତ କରିଥାଏ । ତାଙ୍କର ମର୍କତ କପାଟ ଭୁଲ୍ୟ ବକ୍ଷରେ ରଙ୍ଗମାଣିକ୍ୟର ଚଇ କୌସ୍ତୁଭ ମଣି ଓ ବିଭିନ୍ନ ମାଳା ଶୋଭା ପାଉଥାଏ । ତାଙ୍କର ଗ୍ରୀବାବଙ୍କ ପରି ଗତି ମାଦକତାପୂର୍ଣ୍ଣ । ତାଙ୍କର ଏକ ବଶିଷ୍ଟତା ହେଉଛି ତ୍ରିଭଙ୍ଗୀଠାଣି ଓ ବଂଶୀବାଦନ । ଶ୍ରୀକୃଷ୍ଣଙ୍କର ବଂଶୀ ସ୍ୱନର ମାଦକତାରେ ଅଖିଳ ଭୁବନ ଆକର୍ଷିତ ହୋଇଥାଏ । କେବଳ ବଂଶୀବାଦନ ନୁହେଁ ମନୋହର ନୃତ୍ୟ କରିବାରେ ସେ ମଧ୍ୟ ପାରଙ୍ଗମ । ତାଙ୍କର କଟି ସିଂହକଟି ଭୁଲ୍ୟ । ପଦାତଳ ଓ କରତଳ ରକ୍ତିମ । ସର୍ବୋପରି ସେ ଅନୁପମ ଶୋଭାର ଭଣ୍ଡାର ।

ଶ୍ରୀଚୈତନ୍ୟ ପରମ୍ପରାରେ ଗୃହୀତ ଶ୍ରୀକୃଷ୍ଣଙ୍କର ଏବଂବିଧ ବିଗ୍ରହ ସମସ୍ତ ବୈଷ୍ଣବାଚାର୍ଯ୍ୟ ଓ କବିମାନଙ୍କ ଦ୍ୱାରା ଅତ୍ୟନ୍ତ ଚମତ୍କାରିତାର ସହିତ ପ୍ରତିପାଦିତ ହୋଇଛି । ଏହି ରୂପ ପରିକଳ୍ପନାର ମୂଳ ଉତ୍ସ ରୂପେ ଶ୍ରୀମଦ୍ଭାଗବତ, ବ୍ରହ୍ମସଂହିତା ଓ ଗୋପାଳତାପିନୀ ପ୍ରଭୃତି ଗ୍ରନ୍ଥମାନଙ୍କୁ ନିର୍ଦ୍ଦେଶ କରାଯାଇଥାଏ । ଶ୍ରୀରୂପଗୋସ୍ୱାମୀ 'ଭକ୍ତିରସାମୃତ ସିନ୍ଧୁ' ଗ୍ରନ୍ଥରେ ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମ ଓ ଦର୍ଶନରେ ଗୃହୀତ ଶ୍ରୀକୃଷ୍ଣଙ୍କୁ ରସଘନ ବିଗ୍ରହ ଓ ଗୋପାଙ୍ଗନାମାନଙ୍କର ଚିତ୍ତ ଆକର୍ଷକ ଭାବେ ବର୍ଣ୍ଣନା କରିଅଛନ୍ତି । ଶ୍ରୀକୃଷ୍ଣ ଓ ଗୋପାଙ୍ଗନାମାନଙ୍କର ପ୍ରେମ ବିଳାସରେ ଯେଉଁ ଉଜ୍ଜ୍ୱଳ ଶୃଙ୍ଗାର ରସର ପୂର୍ଣ୍ଣ ପ୍ରକଟନ ଘଟିଥାଏ. ତାହାର ବିଗ୍ରହ ହେଉଛନ୍ତି ଶ୍ରୀକୃଷ୍ଣ । ତେଣୁ ଶ୍ରୀକୃଷ୍ଣଙ୍କୁ ଏଭଳି ଅନୁପମ ରୂପ ଲାବଣ୍ୟଯୁକ୍ତ, ନବଯୌବନ ମଣ୍ଡିତ କରିଛନ୍ତି । ଏହି ସମ୍ପ୍ରଦାୟର ବୈଷ୍ଣବାଚାର୍ଯ୍ୟମାନଙ୍କ ଦୃଷ୍ଟିରେ ସେ ହେଉଛନ୍ତି ପ୍ରେମଲୀଳା ନାୟକ ମାଧୁର୍ଯ୍ୟ ପୁରୁଷୋତ୍ତମ । କେବଳ ରୂପ ନୁହେଁ ଶ୍ରୀକୃଷ୍ଣଙ୍କର ବିଭିନ୍ନ

ବେଶ, ଆଭୂଷଣ ଓ ଗୁଣଗୁଡ଼ିକୁ ମଧ୍ୟ ବୈଷ୍ଣବାଚାର୍ଯ୍ୟମାନେ ନିର୍ଦ୍ଦେଶ କରିଛନ୍ତି ।

**ଶ୍ରୀକୃଷ୍ଣ ବତିଶ ଲକ୍ଷଣଯୁକ୍ତ**—ପୁରୁଷର ବତିଶଟି ଲକ୍ଷଣ କୌଣସି ପୁରୁଷଠାରେ ପ୍ରକାଶିତ ହେଲେ ତାଙ୍କୁ ପୁରୁଷୋତ୍ତମ କୁହାଯାଇଥାଏ । ଶ୍ରୀକୃଷ୍ଣଙ୍କଠାରେ ସେହି ସମସ୍ତ ଲକ୍ଷଣ ପ୍ରକାଶିତ ହୋଇଥିବାରୁ ସେ ପୁରୁଷୋତ୍ତମ । ଶ୍ରୀରୂପ ଗୋସ୍ୱାମୀ ଏହି ବତିଶ ଲକ୍ଷଣଗୁଡ଼ିକୁ ଶ୍ରୀକୃଷ୍ଣଙ୍କଠାରେ ବର୍ଣ୍ଣିତ କରି କହିଛନ୍ତି—"ଶ୍ରୀକୃଷ୍ଣଙ୍କର ସପ୍ତସ୍ଥାନ (ନେତ୍ର, ପଦ, କର, ଅଧର, ଓଷ୍ଠ, ଜିହ୍ୱା ଓ ନଖ)ରେ ରକ୍ତିମା, ଛଅଟି ସ୍ଥାନ (ବକ୍ଷ, ସ୍କନ୍ଧ, ନଖ, ନାସିକା, କଟୀ ଓ ମୁଖ)ରେ ଉଚ୍ଚତା, ତିନଟି ସ୍ଥାନ (ଗ୍ରୀବା, ଜଙ୍ଘ ଓ ଶିଶ୍ନ ବା ଲିଙ୍ଗ)ରେ ଖର୍ବତା, ତିନଟି ସ୍ଥାନ (ନାଭି, ସ୍ୱର, ବୁଦ୍ଧି)ରେ ଗମ୍ଭୀରତା, ପାଞ୍ଚଟିସ୍ଥାନ ( ନାସା, ଭୁଜ, ନେତ୍ର କପୋଳ ଓ ଜାନୁ)ରେ ଦୀର୍ଘତା, ପାଞ୍ଚଟି ସ୍ଥାନ (ଚର୍ମ, କେଶ, ଲୋମ ଦନ୍ତ ଓ ଅଙ୍ଗୁଳି ପର୍ବ)ରେ ସୂକ୍ଷ୍ମତା ଓ ତିନଟି ସ୍ଥାନ (କଟି, ଲଲାଟ ଓ ବକ୍ଷ)ରେ ବିସ୍ତାର ଥିଲା ।" (୩୨)

**ସୁରମ୍ୟାଙ୍ଗ**—ଶ୍ରୀକୃଷ୍ଣଙ୍କର ଶରୀରର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ସୁରମ୍ୟ ଅର୍ଥାତ୍ ମୁଖ ଚନ୍ଦ୍ରାକାର, ଉରୁ ହସ୍ତୀ କରି ଶୁଣ୍ଢ ତୁଲ୍ୟ, ଭୁଜ ହସ୍ତ ସ୍ତମ୍ଭ ତୁଲ୍ୟ, କରଯୁଗଳ କମନୀୟ ଓ ପ୍ରସ୍ଫୁଟିତ ପଦ୍ମଫୁଲ ସଦୃଶ, ବକ୍ଷସ୍ଥଳ କପାଟ ଭଳି ବିସ୍ତୃତ, ନିତମ୍ବ ନିବିଡ଼ ଏବଂ କଟୀ ଦେଶ କ୍ଷୀଣ । ଶ୍ରୀରୂପ ଗୋସ୍ୱାମୀ ଭକ୍ତି ରସାମୃତ ସିନ୍ଧୁରେ ଏସବୁ ଉଲ୍ଲେଖ କରିଅଛନ୍ତି ।

**ଅଷ୍ଟାଦଶ ଦୋଷ ବର୍ଜିତ**—ଶ୍ରୀକୃଷ୍ଣ ମୋହ, ତନ୍ଦ୍ରା, ଭ୍ରମ, ରୁକ୍ଷରସତା, ଉଲ୍ବଣ (ଦୁଃଖଦ) କାମଲୋଳତା, ମଦ, ମାତ୍ସର୍ଯ୍ୟ, ହିଂସା, ଖେଦ, ପରିଶ୍ରମ, ଅସତ୍ୟ, କ୍ରୋଧ, ଆକାଙ୍‌କ୍ଷା, ଆଶଙ୍କା, ବୈଷମ୍ୟ ଓ ପରପେକ୍ଷା ଆଦି ଅଷ୍ଟାଦଶ ଦୋଷରୁ ବର୍ଜିତ ବୋଲି ରୂପଗୋସ୍ୱାମୀ ବିଷ୍ଣୁଯାମଳ ତନ୍ତ୍ରରୁ ଉଦ୍ଧାର କରି କହିଛନ୍ତି । (୩୩)

**ପୌରୁଷ**—ଶୋଭା, ବିଳାସ, ମାଧୁର୍ଯ୍ୟ, ମାଙ୍ଗଲ୍ୟ, ସ୍ଥୈର୍ଯ୍ୟ, ତେଜ, ଲଳିତ୍ୟ ଓ ଔଦାର୍ଯ୍ୟ—ଏହି ଆଠଟି ସଦ୍‌ଗୁଣକୁ ଶ୍ରୀକୃଷ୍ଣଙ୍କର ପୌରୁଷ କୁହାଯାଇଥାଏ । (୩୪)

**ବୟସ**—ଚୈତନ୍ୟ ସମ୍ପ୍ରଦାୟରେ ଉପାସ୍ୟ ଶ୍ରୀକୃଷ୍ଣ କଶୋର ଭାବେ କଳ୍ପିତ । ଏହି କୈଶୋରାବସ୍ଥାର ତିନସ୍ତର ଆଦ୍ୟକୈଶର, ମଧ୍ୟ କୈଶର ଓ ଶେଷ କୈଶର ମଧ୍ୟରୁ ଶେଷ କୈଶୋରକୁ ନବଯୌବନକାଳ ବୁଝାଯାଇଥାଏ । ଏ ସମସ୍ତ ଯୌବନର ପୂର୍ଣ୍ଣତାପ୍ରାପ୍ତ କାଳ ହୋଇଥିବାରୁ ଶ୍ରୀକୃଷ୍ଣଙ୍କର ଶୋଭା ଓ ବୃତ୍ତିଷ ପୂର୍ଣ୍ଣବିକଶିତ ହୋଇଥାଏ । ଶ୍ରୀକୃଷ୍ଣଙ୍କର ଏହି ବୟସରେ ଶ୍ରୀକୃଷ୍ଣଙ୍କର ସୌନ୍ଦର୍ଯ୍ୟ, ରୂପ, ମୃଦୁତା, ଚେଷ୍ଟାଆଦି ପ୍ରକାଶିତ ହୋଇଥାଏ । (୩୫)

**ସୌନ୍ଦର୍ଯ୍ୟ**—ଅଙ୍ଗ ପ୍ରତ୍ୟଙ୍ଗର ଯଥାଯଥ ସନ୍ନିବେଶ । ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଘାର୍ଘ ନେତ୍ରଯୁକ୍ତ ମୁଖ, ମର୍କଟ କପାଟତୁଲ୍ୟ ସ୍ଥୂଳ ବକ୍ଷ, ସ୍ତମ୍ଭ ସଦୃଶ ଭୁଜଦ୍ଵୟ, ମନୋହର ଭଙ୍ଗୀଯୁକ୍ତ ଦୁଇପାର୍ଶ୍ଵ, କ୍ଷୀଣ କଟି ପ୍ରଭୃତିର ନୀମବର୍ଦ୍ଧିଷ୍ଣୁ ସୌନ୍ଦର୍ଯ୍ୟକୁ ହିଁ ସୌନ୍ଦର୍ଯ୍ୟ ବୁଝାଯାଇଛି । (୩୬

**ରୂପ**—ଶରୀରର ଶୋଭା ବର୍ଦ୍ଧନ ପାଇଁ ଅଳଙ୍କାର ମଣ୍ଡନ କରାଯାଇଥିଲେ ହେଁ ଶ୍ରୀକୃଷ୍ଣଙ୍କ ରୂପର ସାନିଧ୍ୟରେ ତାଙ୍କ ଶରୀରର ଅଳଙ୍କାରଗୁଡିକ ଅଧିକ ଶୋଭାଯୁକ୍ତ ହୋଇଥାନ୍ତି । ଏହାକୁ ରୂପ ବୁଝାଯାଏ ।

**ମୃଦୁତା**—କୋମଳ ବସ୍ତୁର ସ୍ପର୍ଶ ଶରୀରକୁ ଆଘାତ ଦେଲେ, ତାହା ଶରୀରର ମୃଦୁ୍ୟତା ।

**ଚେଷ୍ଟା**—ଶ୍ରୀକୃଷ୍ଣଙ୍କର ସୁସାଦ ପ୍ରେମଲୀଳା ଓ ଦୈତ୍ୟବଧାଦି କାର୍ଯ୍ୟକୁ ଚେଷ୍ଟା ବୁଝାଯାଏ ।

**ଶ୍ରୀକୃଷ୍ଣଙ୍କର ପ୍ରସାଧାନ**—ବସନ, ଆକଳ୍ପ (ସଜ୍ଜା) ଓ ଭୂଷଣାଦିକୁ ପ୍ରସାଧାନ ବୁଝାଯାଇଥାଏ ।

**ବସନ**—ଶ୍ରୀକୃଷ୍ଣଙ୍କର ବସନ ଅରୁଣ, କୁଙ୍କୁମ ଓ ହରିତାଳାଦି ବର୍ଣ୍ଣ ଭେଦରେ ବସନ ତ୍ରିବିଧ । ଯଥା-ଯୁଗ, ଚତୁଷ୍କ ଓ ଭୂୟିଷ୍ଠ ।

**ଯୁଗ**—ଶ୍ରୀକୃଷ୍ଣଙ୍କର ନିତମ୍ବରେ ଶୋଭିତ ପୀତବସନ ଓ ତଦୁପରି ନବରକ୍ତବର୍ଣ୍ଣ ଉତ୍ତରୀୟକୁ ଯୁଗ ବୁଝାଯାଇଥାଏ ।

**ଚତୁଷ୍କ**—କଞ୍ଚୁକ, ଉଷ୍ଣୀଷ (ପଗଡି), ତୁଳବନ୍ଧ (କମର ବନ୍ଧା) ଏବଂ ଅନ୍ତରୀୟକ (ଅନ୍ତର୍ବାସ)ର ନାମ ଚତୁଷ୍କ ।

**ଭୂଷ୍ଣିଷ୍ଟ**—ଶ୍ରୀକୃଷ୍ଣଙ୍କର ନଟବର ବେଶ ଉପଯୋଗୀ ଖର୍ଣ୍ଣିତ ଓ ଅଙ୍କିତ ଶ୍ୱେତ, ପିଙ୍ଗଳ, ନୀଳ ଓ ଅରୁଣ ବର୍ଣ୍ଣର ବସନଗୁଡ଼ିକ ଭୂଷ୍ଣିଷ୍ଟ ।

**ସଜ୍ଜା ବା ଆକଳ୍ପ** ଏହି ସଜ୍ଜା ବିଭିନ୍ନ ପ୍ରକାରର ଯଥା-କୃଷ୍ଣଙ୍କର କେଶ ସଜ୍ଜା, ପୁଷ୍ପମାଲ୍ୟ ସଜ୍ଜା, ବୈକକ୍ଷକ (ମାଳ) ସଜ୍ଜା, ଆପୀଡ଼ ସଜ୍ଜା ଓ ପ୍ରାଳମ୍ବ ସଜ୍ଜା । ଊର୍ଦ୍ଧ୍ୱ ବନ୍ଧ ଜୁଡ଼ା, ଗ୍ରୀବାପରେ ଜଟ (କେଶଗୁଚ୍ଛ) ସଜ୍ଜା, କବରୀ ଓ ବେଣୀକୁ କେଶସଜ୍ଜା କୁହାଯାଏ । ପଞ୍ଚବର୍ଣ୍ଣ ପୁଷ୍ପରେ ରଚିତ ଆଜାନୁଲମ୍ବିତ ବୈଜୟନ୍ତୀମାଳା, ରତ୍ନମାଳା ଓ ବନମାଳା ଧାରଣକୁ ପୁଷ୍ପମାଲ୍ୟ ସଜ୍ଜା, ବକ୍ଷ ଭାବେ ବକ୍ଷ ସ୍ଥଳରେ ପତିତ ବୈକକ୍ଷକ ମାଳକୁ ବୈକକ୍ଷକ ସଜ୍ଜା, ଚୂଡ଼ାରେ ବେଷ୍ଟିତ ମାଲ୍ୟକୁ ଆପୀଡ଼ ସଜ୍ଜା ଏବଂ ସରଳ ଭାବେ କଣ୍ଠ ଦେଶରୁ ଲମ୍ବିତ ମାଳାକୁ ପ୍ରାଳମ୍ବ ସଜ୍ଜା କୁହାଯାଇଥାଏ ।

**ଭୂଷଣ ମଣ୍ଡନ**—କିରୀଟି, କୁଣ୍ଡଳ, ହାର, ବଳୟ, ଅଙ୍ଗୁରୀୟକ ଓ ନୂପୁର ଆଦି ଅଳଙ୍କାର ଧାରଣକୁ ଶ୍ରୀକୃଷ୍ଣଙ୍କର ଭୂଷଣ ମଣ୍ଡନ କୁହାଯାଏ ।

**ବଂଶୀ**—ଜଗତର ବିଶ୍ୱକୁ ଆକର୍ଷଣ କରିବାରେ ଶ୍ରୀକୃଷ୍ଣଙ୍କର ମଧୁର ରୂପ ଲାବଣ୍ୟ ପରି ତାଙ୍କର ମୋହନବଂଶୀର ପ୍ରଭାବ ମଧ୍ୟ ଅତୁଳନୀୟ । ବୈଷ୍ଣବ ଶାସ୍ତ୍ରରେ ଶ୍ରୀକୃଷ୍ଣଙ୍କର ବଂଶୀକୁ କାର୍ଯ୍ୟ ଓ ଗଠନ ଭେଦରେ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା—ବେଣୁ, ମୁରଳୀ ଓ ବଂଶିକା ବା ବଂଶୀ । (୩୭)

**ମାଧୁର୍ଯ୍ୟ**—ଚୈତନ୍ୟ ପନ୍ଥୀ ବୈଷ୍ଣବ ଧର୍ମ ଦର୍ଶନରେ ଶ୍ରୀକୃଷ୍ଣ ହେଉଛନ୍ତି ମାଧୁର୍ଯ୍ୟ ପୁରୁଷୋତ୍ତମ । ବିଭିନ୍ନ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟର ମହତ୍ତ୍ୱ ପ୍ରତିପାଦିତ ହୋଇଛି । ବିଲ୍ୱମଙ୍ଗଳ 'କୃଷ୍ଣକର୍ଣ୍ଣାମୃତ'ରେ ଏହାକୁ ଉଲ୍ଲେଖ କରି କହିଛନ୍ତି

"ମଧୁରଂ ମଧୁରଂ ବପୁରସ୍ୟ ବିଭୋର୍ମଧୁରଂ ମଧୁରଂ ବଦନଂ ମଧୁରଂ
ମଧୁଗନ୍ଧି ମୃଦୁସ୍ମିତମେତ ଦେହୋ ମଧୁରଂ ମଧୁରଂ ମଧୁରଂ ମଧୁରମ୍"

ପୁନଶ୍ଚ "ଅସମାନୋର୍ଦ୍ଧ୍ୱ ମାଧୁର୍ଯ୍ୟ ତରଙ୍ଗାମୃତ ବାରିଧିଃ
ଜଙ୍ଗମ ସ୍ଥାବରୋଲ୍ଲାସିରୂପୋ ଗୋପେନ୍ଦ୍ର ନନ୍ଦନଃ" (୩୯)

ଅର୍ଥାତ୍ ଗୋପେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଅସମୋର୍ଦ୍ଧ୍ୱ ମାଧୁର୍ଯ୍ୟ

ତରଙ୍ଗାମୃତର ସମୁଦ୍ର ଭୁଲ୍ୟ । ତାଙ୍କର ରୂପ ସ୍ଥାବର ଜଙ୍ଗମର ଉଲ୍ଲାସଦାୟକ ଅଟେ । ବିଭିନ୍ନ ସଂହିତା, ତାପିନୀ ଓ ପୁରାଣ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କର ଏହି ମାଧୁର୍ଯ୍ୟରୂପ ବର୍ଣ୍ଣିତ ହୋଇଛି । ତାହାର ପ୍ରଭାବରେ ଶ୍ରୀଚୈତନ୍ୟ ଶ୍ରୀକୃଷ୍ଣଙ୍କର ରୂପଲାବଣ୍ୟର କଳ୍ପନା କରିଥିବା ଅନୁମାନ ଯୋଗ୍ୟ । ଶ୍ରୀକୃଷ୍ଣଙ୍କର କମନୀୟ ମେଘାଭ ରୂପ ଓ ବେଶଭୂଷଣ କାମୋଦ୍ଦୀପକ । ବୈଷ୍ଣବ ଧର୍ମରେ କୃଷ୍ଣଙ୍କର ବୀଜ ମନ୍ତ୍ର 'କ୍ଲୀଂ' ହେଉଛି କାମବୀଜ । ତେଣୁ ଶ୍ରୀକୃଷ୍ଣ କନ୍ଦର୍ପ ଭାବ ଜନକ କାମମୟ ପୁରୁଷ ଭାବେ ଗୃହୀତ । ପୁନଶ୍ଚ ବୈଦିକ ଯୁଗରୁ ମଧ୍ୟ ବ୍ରହ୍ମଙ୍କୁ କାମମୟ ପୁରୁଷ ରୂପେ ପରିକଳ୍ପିତ କରିବାର ପରମ୍ପରା ଆରମ୍ଭ ହୋଇ ଯାଇଥିଲା । ଏ ସମ୍ପର୍କରେ ବୃହଦାରଣ୍ୟକ ଉପନିଷଦ୍‌ର ଉକ୍ତି ସ୍ମରଣୀୟ । ଯେଉଁଠି କୁହାଯାଇଛି—"କାମ ଯାହାଙ୍କର ଦେହ, ହୃଦୟ ଯାହାଙ୍କର ଦର୍ଶନ ସାଧନ, ମନ ଯାହାଙ୍କର ଜ୍ୟୋତି, ଯେ ସର୍ବଭୂତାତ୍ମା ତାଙ୍କୁ ଯେ ଜାଣେ, ସେ ଜ୍ଞାନୀ ହୁଏ । ସେହି ସର୍ବଭୂତାତ୍ମା ହେଉଛନ୍ତି କାମମୟ ପୁରୁଷ ଓ ଏହାଙ୍କର ଦେବତା ହେଉଛନ୍ତି ସ୍ତ୍ରୀଗଣ ।" (୪୦) ବ୍ରହ୍ମଙ୍କ ଠାରେ ଏହି ରୂପ ଆରୋପ କରାଯାଇଥିବା ହେତୁ ଓ କୃଷ୍ଣ ପରଂବ୍ରହ୍ମ ଭାବେ ଚୈତନ୍ୟ ସମ୍ପ୍ରଦାୟରେ ଗୃହୀତ ହୋଇଥିବାରୁ ତାଙ୍କର ମାଧୁର୍ଯ୍ୟ ରୂପ ପରିକଳ୍ପନା ଶାସ୍ତ୍ର ସମ୍ମତ । ଉପନିଷଦ୍ ମଧ୍ୟ ଶ୍ରୀକୃଷ୍ଣଙ୍କର ରସମୟ ରୂପର ବର୍ଣ୍ଣନା କରିଛି "ରସୋବୈସଃ, ରସଂ ହ୍ୟେବାୟଂ ଲବ୍‌ଧ୍ୱାନନ୍ଦୀ ଭବତି ।" (୪୧) ଶ୍ରୀକୃଷ୍ଣଙ୍କର ସର୍ବାଙ୍ଗରେ ଯେଉଁ ମଧୁରତାର ବ୍ୟାପ୍ତି ରହିଛି ତାହା ଉପନିଷଦୀୟ ଚିନ୍ତାଧାରାର ରୂପାନ୍ତରିତ । ବୃହଦାରଣ୍ୟକ ଉପନିଷଦ୍‌ର ମଧୁବିଦ୍ୟା ଆଲୋଚନା ପ୍ରସଙ୍ଗରେ କୁହାଯାଇଛି—"ପୃଥିବୀ, ଜଳ, ଅଗ୍ନି, ବାୟୁ, ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍, ମେଘ ଓ ଜୀବାତ୍ମା—ଏ ସମସ୍ତ ମଧୁ ସ୍ୱରୂପ ଅଟନ୍ତି । ଆକାଶ ମଧ୍ୟ ମଧୁ ଅଟେ । ଏହା ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ । ମଧୁସ୍ୱରୂପ ଆକାଶ ଏବଂ ପ୍ରାଣୀଙ୍କର ହୃଦୟାକାଶ ମଧ୍ୟରେ ଯେଉଁ ତେଜୋମୟ ଅବିନାଶୀ ପୁରୁଷ ବିଦ୍ୟମାନ, ସେ ସର୍ବବ୍ୟାପୀ ଏବଂ ସର୍ବଭୂତମୟ ।" [୪୨] .

ଏହିଭଳି ଭାବେ ବିଭିନ୍ନ ପ୍ରାମାଣିକ ଗ୍ରନ୍ଥର ଚିନ୍ତାଧାରାକୁ ଭିତ୍ତି କରି ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବମାନେ ତାଙ୍କର ଉପାସ୍ୟ ଶ୍ରୀକୃଷ୍ଣଙ୍କର

ଅସମୋର୍ଦ୍ଧ୍ୱ ମାଧୁର୍ଯ୍ୟ ତଥା ରୂପଲାବଣ୍ୟର ପରିକଳ୍ପନା କରିଥିଲେ । ତାଙ୍କର ଏହି ମଧୁର ରୂପର ସମକକ୍ଷ ରୂପ ସଂସାରରେ ଅବିଦ୍ୟମାନ ଅର୍ଥାତ୍ ବିଶ୍ୱର ସମସ୍ତ ରୂପଲାବଣ୍ୟ ତାଙ୍କ ରୂପର ନିମ୍ନରେ ଅବସ୍ଥିତ । ତେଣୁ ଶ୍ରୀକୃଷ୍ଣ ଅସମୋର୍ଦ୍ଧ୍ୱ ରୂପଲାବଣ୍ୟଯୁକ୍ତ । ଶ୍ରୀମଦ୍ଭାଗବତରେ ଏହି ରୂପ ଲାବଣ୍ୟର ବର୍ଣ୍ଣନା କରାଯାଇ କୁହାଯାଇଛି—"ଅବ ଗୋପ୍ୟସ୍ତପଃ କିମଚରନ୍ ଯଦମୁଷ୍ୟ ରୂପଂ ଲାବଣ୍ୟସାର ମସମୋର୍ଦ୍ଧ୍ୱମନନ୍ୟସିଦ୍ଧମ୍" । କବି ଅଭିମନ୍ୟୁ ମଧ୍ୟ ତାଙ୍କର 'ପ୍ରେମ ଚିନ୍ତାମଣି' ଗ୍ରନ୍ଥରେ ଅନୁରୂପ ମତ ପ୍ରକାଶ କରିଛନ୍ତି । ଯଥା

"ନାହିଁ ନ ଥିଲା ନୋହିବ କେହି ସମ ଉପମା ଯେତେ ଅଛନ୍ତି ହେ ଗୋବେଶ
ପୂର୍ଣ୍ଣ ଅଖିଳ ରସାମୃତ ମୂର୍ତ୍ତି, ଯହୁଁ ଲାବଣ୍ୟ ସୀମା ଉତପତ୍ତି ।" (୧୭/୭)

(ଖ) **ଶ୍ରୀରାଧାତତ୍ତ୍ୱ** –

ଶ୍ରୀଚୈତନ୍ୟ ସମ୍ପ୍ରଦାୟର ରାଧାତତ୍ତ୍ୱ ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ବୈଷ୍ଣବ ଧର୍ମ ଜଗତକୁ ଶ୍ରୀରାଧାଙ୍କର କିପରି ଅବତରଣ ଘଟିଲା, ତାହାର ସମ୍ୟକ୍ ସୂଚନା ଦେବା ଆବଶ୍ୟକ ମନେ ହୁଏ । ସେ ଦୃଷ୍ଟିରୁ ନିମ୍ନରେ ତଦ୍ ସମ୍ପର୍କରେ ଆଲୋଚନା କରାଗଲା ।

ବୈଷ୍ଣବ ଧର୍ମରେ ଶକ୍ତିବାଦର ବିକାଶ ଫଳରେ ଶ୍ରୀରାଧାଙ୍କର ଆବିର୍ଭାବ ଘଟିଥିଲା—ଏଥିରେ ଦ୍ୱିରୁକ୍ତି ନାହିଁ । ବୈଦିକ ଧର୍ମ ସହିତ ତନ୍ତ୍ରର ମିଶ୍ରଣ ପାଞ୍ଚରାତ୍ର ଧର୍ମର ଅଭ୍ୟୁଦୟ ଓ ତନ୍ତ୍ରରେ ଶକ୍ତିବାଦ ଉପରେ ଗୁରୁତ୍ୱ ଆରୋପ କରାଯାଇଥିବା କଥା ପୂର୍ବେ ଆଲୋଚିତ ହୋଇଛି । ତନ୍ତ୍ର ଦ୍ୱାରା ପ୍ରଭାବିତ ହୋଇ ବୈଦିକ ଧର୍ମ ମଧ୍ୟ ଶକ୍ତିବାଦ ଦ୍ୱାରା ପ୍ରଭାବିତ ହୋଇଥିଲା । ପରବର୍ତ୍ତୀ କାଳରେ ବେଦରେ ସଂଯୋଜିତ ଦେବୀସୂକ୍ତ ଓ ଶ୍ରୀସୂକ୍ତ ଏହି ପ୍ରଭାବର ଫଳ ମାତ୍ର । ଋଗ୍‌ବେଦର ଦେବୀସୂକ୍ତ ଓ ଶ୍ରୀସୂକ୍ତରେ ଶକ୍ତିଙ୍କର ମହିମା ଗାନ କରାଯାଇଥିବା ଦେଖା ଯାଇଥାଏ । ଦେବୀସୂକ୍ତରେ ଶକ୍ତିଙ୍କୁ ଯେପରି ବ୍ରହ୍ମ ସ୍ୱରୂପା, ଜ୍ଞାନ ରୂପା, ଦୃଶ୍ୟମାନ ଜଗତର ସ୍ରଷ୍ଟା ଅଦ୍ୱିତୀୟ ପୁରୁଷଙ୍କର ଜନ୍ମଦାତ୍ରୀ, ଜଗଦ୍ ବ୍ୟାପିନୀ, ସର୍ବଭୂତାସ୍ଥିତା, ସର୍ବକାର୍ଯ୍ୟ ସଞ୍ଚାଳନ କର୍ତ୍ତ୍ରୀ ଓ ସମସ୍ତ ଶକ୍ତିର ମୂଳ ଉତ୍ସ ରୂପେ ବର୍ଣ୍ଣିତ ସେହିଭଳି ଶ୍ରୀସୂକ୍ତରେ ଶ୍ରୀ ବା ଲକ୍ଷ୍ମୀଙ୍କୁ ହିରଣ୍ୟବର୍ଣ୍ଣା, ସ୍ୱର୍ଣ୍ଣ ରଜତ, ମାଲ୍ୟଧାରିଣୀ, ଚନ୍ଦ୍ରା, ହିରଣ୍ମୟୀ,

ଆଦ୍ରା, ପଦ୍ମସ୍ଥିତା, ପଦ୍ମବର୍ଣ୍ଣା, ପଦ୍ମିନୀ, ବିଲ୍ଵବୃକ୍ଷ କାମଧେନୀ, ପିଙ୍ଗଳବର୍ଣ୍ଣା ଓ ହେମମାଳିନୀ ଆଦି ନାମରେ ସମ୍ବୋଧିତା । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଏହି ଶ୍ରୀ ବା ଲକ୍ଷ୍ମୀ ପରବର୍ତ୍ତୀ କାଳରେ ବିଷ୍ଣୁ ଶକ୍ତି ରୂପେ ରୂପାନ୍ତରିତ ହୋଇଛନ୍ତି ।

ବେଦୋତ୍ତର କାଳରେ ବେଦାନ୍ତ ଉପନିଷଦ୍‌ମାନଙ୍କରେ ମଧ୍ୟ ନିର୍ଗୁଣ ତତ୍ତ୍ୱ ସହିତ ଶକ୍ତିଙ୍କର ପରିକଳ୍ପନା କରାଯାଇଛି । ଉପନିଷଦ୍‌ର ବ୍ରହ୍ମତତ୍ତ୍ୱ ସହିତ ତନ୍ତ୍ରର ଶକ୍ତିବାଦର ସମ୍ମିଶ୍ରଣରେ ପାଞ୍ଚରାତ୍ର ଧର୍ମର ଉଦ୍ଭବ ହୋଇଥିଲା । ତେଣୁ ଉପନିଷଦ୍‌ର ସତ୍, ଚିତ୍ ଓ ଆନନ୍ଦ ସ୍ୱରୂପ ବ୍ରହ୍ମଙ୍କ ସହିତ ପାଞ୍ଚରାତ୍ର ଧର୍ମର ବାସୁଦେବ ବା ବିଷ୍ଣୁ ମିଳିତ ହୋଇ ସଚ୍ଚିଦାନନ୍ଦ ତନୁ ଧାରଣ କରିଥିଲେ । ଏହି ବାସୁଦେବଙ୍କର ଇଚ୍ଛା ଶକ୍ତିକୁ ମହାଲକ୍ଷ୍ମୀ ଓ କ୍ରିୟା ଶକ୍ତିରୁ ସୁଦର୍ଶନ ଜାତ ହୋଇଥିଲେ । ପାଞ୍ଚରାତ୍ର ସଂହିତାମାନଙ୍କରେ ବର୍ଣ୍ଣିତ ବିଷ୍ଣୁ ଶକ୍ତି ମହାଲକ୍ଷ୍ମୀ ପୁରାଣମାନଙ୍କର ମୂଳା ପ୍ରକୃତି ରୂପିଣୀ, ବିଷ୍ଣୁଙ୍କର ପତ୍ନୀ, ସ୍ୱରୂପଭୂତା ପ୍ରଭୃତି ବର୍ଣ୍ଣନା ମଧ୍ୟରେ ଅଧିକ ଲୋକପ୍ରିୟ ହୋଇ ଉଠିଥିଲେ ।

ଶ୍ରୀ ଓ ମାଧ୍ୱ ସମ୍ପ୍ରଦାୟରେ ବିଷ୍ଣୁଶକ୍ତି ଲକ୍ଷ୍ମୀ ବହୁ ତତ୍ତ୍ୱପୂର୍ଣ୍ଣ ରଚନା ମଧ୍ୟକୁ ଅବତରଣ କରିଥିଲେ । ଏହି ସମ୍ପ୍ରଦାୟର ବୈଷ୍ଣବାଚାର୍ଯ୍ୟମାନଙ୍କର ମୂଳ ଲକ୍ଷ୍ୟ ଥିଲା ବେଦଠାରୁ ପୁରାଣ ପର୍ଯ୍ୟନ୍ତ ଲକ୍ଷ୍ମୀଙ୍କୁ ଯେଉଁ ଭଳି ଭାବରେ ବର୍ଣ୍ଣନା କରାଯାଇଛି, ତାହାର ଆଧାରରେ ତାଙ୍କୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରିବା । ଏହି ଦୁଇ ସମ୍ପ୍ରଦାୟରୁ ଶ୍ରୀ ସମ୍ପ୍ରଦାୟ ଲକ୍ଷ୍ମୀଙ୍କୁ ଅଧିକ ଗୁରୁତ୍ୱ ତଥା ମହତ୍ତ୍ୱ ପ୍ରଦାନ କରିଥିବାରୁ ଏହି ସମ୍ପ୍ରଦାୟର ଏପରି ନାମକରଣ କରାଯାଇଛି । ଶ୍ରୀ ସମ୍ପ୍ରଦାୟର ଦାର୍ଶନିକ ଦୃଷ୍ଟିରେ ମହାଲକ୍ଷ୍ମୀ ହେଉଛନ୍ତି ଈଶ୍ୱର ଓ ଜୀବ ମଧ୍ୟରେ ସେତୁ ସଦୃଶା । ସେ କରୁଣାମୟୀ, କଲ୍ୟାଣମୟୀ ଓ ମଙ୍ଗଳମୟୀ । ତାଙ୍କର କରୁଣା ଲାଭରେ ଜୀବ ଭଗବତ୍‌ମୁଖୀ ହୁଏ । ରାମାନୁଜାଚାର୍ଯ୍ୟଙ୍କ ମତରେ ନାରାୟଣଙ୍କର ଶରଣାଗତି ପ୍ରାପ୍ତ ପାଇଁ ଜୀବ ପ୍ରଥମେ ମହାଲକ୍ଷ୍ମୀଙ୍କର ଆଶ୍ରୟ ନେଇଥାଏ । ତଦ୍ଦ୍ୱାରା ଅଶରଣଶରଣ୍ୟା ଲକ୍ଷ୍ମୀଙ୍କର ଅନୁଗ୍ରହରେ ଜୀବ ସହଜରେ ନାରାୟଣଙ୍କର ନିକଟବର୍ତ୍ତୀ ହୋଇଥାଏ ।

ମାଧ୍ୱାଚାର୍ଯ୍ୟଙ୍କ ମତରେ ଲକ୍ଷ୍ମୀ ବ୍ରହ୍ମଙ୍କର ଅଘଟନ ଘଟନ ପଟିୟସୀ ଅଚିନ୍ତ୍ୟଶକ୍ତି । ଅଗ୍ନି, ବାୟୁ ଓ ପୃଥ୍ୱୀ ଆଦିର ଅଧିମାନୀମା ଦେବଗଣ ଏହି ଅଚିନ୍ତ୍ୟ ଶକ୍ତିର ଅଣୁ ପରମାଣୁ ତୁଲ୍ୟ । ବିଷ୍ଣୁଙ୍କ ପରି ଲକ୍ଷ୍ମୀ ମଧ୍ୟ ନିତ୍ୟ ମୁକ୍ତା । ଅନାଦି କାଳରୁ ସେ ନିତ୍ୟମୁକ୍ତ ବିଷ୍ଣୁଙ୍କ ସହିତ ନିତ୍ୟ ଯୁକ୍ତ ହୋଇ ରହି ଆସିଛନ୍ତି । ପରମାତ୍ମାଙ୍କ ସଦୃଶ ସେ ମଧ୍ୟ ଜଡ ଦେହ ବିବର୍ଜିତ । ସେ ଅପ୍ରାକୃତା । ଲକ୍ଷ୍ମୀଙ୍କର ପରିକଳ୍ପିତ ଦୁଇ ସ୍ୱରୂପ ହେଉଛି—ପ୍ରକୃତିର ଜଡ ପରିବର୍ତ୍ତନଶୀଳ ଓ ନିତ୍ୟ ମୁକ୍ତ ସ୍ୱରୂପ । ନିତ୍ୟମୁକ୍ତ ସ୍ୱରୂପ ଅର୍ଥାତ୍ ଅପ୍ରାକୃତ ସତ୍ତା । ତେଣୁ ଲକ୍ଷ୍ମୀ ହେଉଛନ୍ତି ଏହି ଅପ୍ରାକୃତ ରୂପ । ରାମାନୁଜ ଓ ମାଧ୍ୱାଚାର୍ଯ୍ୟ ନାରାୟଣଙ୍କୁ ପରମାରାଧ୍ୟ ରୂପେ ଗ୍ରହଣ କରିଥିବାରୁ ଲକ୍ଷ୍ମୀ ଏହିପରି ବର୍ଣ୍ଣିତ ହୋଇଛନ୍ତି । ଏଠାରେ ଏହି ଶ୍ରୀ ଓ ମାଧ୍ୱ ସଂପ୍ରଦାୟରେ ଗୃହୀତ ଲକ୍ଷ୍ମୀତତ୍ତ୍ୱକୁ ବର୍ଣ୍ଣନା କରିବାର ତାତ୍ପର୍ଯ୍ୟ ହେଉଛି—ଏହି ସଂପ୍ରଦାୟରେ ଲକ୍ଷ୍ମୀ ଯେଉଁଭଳି ବର୍ଣ୍ଣିତ ହୋଇଥିଲେ, ତାହାର ଅନୁସରଣରେ ନିମ୍ବାର୍କ ଓ ବଲ୍ଲଭ ତାଙ୍କର ପରମାରାଧ୍ୟ ଗୋପାଳକୃଷ୍ଣଙ୍କର ଶକ୍ତି ରୂପେ ଶ୍ରୀରାଧାଙ୍କୁ ସେହି ଭାବରେ ବର୍ଣ୍ଣନା କରିଥିଲେ । ବୈଷ୍ଣବ ଧର୍ମ ଜଗତରେ ଶ୍ରୀରାଧାଙ୍କୁ ଗୋପାଳକୃଷ୍ଣଙ୍କର ଶକ୍ତି ରୂପେ ପ୍ରତିଷ୍ଠା କରିବାର ପ୍ରଥମ ଆଚାର୍ଯ୍ୟ ହେଉଛନ୍ତି ନିମ୍ବାର୍କ । ଆଲୱାର ସମ୍ପ୍ରଦାୟର ଆରାଧ୍ୟ ମାୟୋନ୍‌ଙ୍କର ପ୍ରେମିକା ନାପ୍‌ପିନାଇ ଗୋପାଳକୃଷ୍ଣଙ୍କର ଶକ୍ତି ଶ୍ରୀରାଧା ରୂପେ ଆବିର୍ଭୂତା ହୋଇଥିଲେ । ଏହି ଶ୍ରୀରାଧା ବହୁପୂର୍ବରୁ କେବଳ 'ମାତ୍ର କାବ୍ୟ-ରାଧା ପ୍ରେମ ଗୀତିକାର ନାୟିକା ରୂପେ ବର୍ଣ୍ଣିତ ଥିଲେ । ପରେ ନିମ୍ବାର୍କ ସର୍ବପ୍ରଥମେ ତାଙ୍କୁ ତତ୍ତ୍ୱଜଗତରେ ପ୍ରତିଷ୍ଠା କଲେ ।

## ନିମ୍ବାର୍କ ଓ ବଲ୍ଲଭ ସମ୍ପ୍ରଦାୟରେ ଶ୍ରୀରାଧା —

ଶ୍ରୀନିମ୍ବାର୍କ ପ୍ରଥମେ ଶ୍ରୀରାଧାଙ୍କୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରିଥିଲେ ବୋଲି ପୂର୍ବରୁ କୁହାଯାଇଛି । ନିମ୍ବାର୍କ ତାଙ୍କର 'ଦଶଶ୍ଳୋକୀ'ର ପ୍ରଥମ ଶ୍ଳୋକରେ ଶ୍ରୀରାଧାଙ୍କୁ ବୃଷଭାନୁ ନନ୍ଦିନୀ, ଶ୍ରୀକୃଷ୍ଣଙ୍କର ବାମଭାଗ ସ୍ଥିତା, କୃଷ୍ଣଙ୍କ ସଦୃଶ ବପୁଃ-ରୂପ-ଗୁଣ ବିଶିଷ୍ଟା ଆନନ୍ଦିତା, ସହସ୍ର ସଖୀ ପରିବେଷ୍ଟିତା ଏବଂ ସମସ୍ତ ଇଷ୍ଟ କାମନା ପରିପୂରଣ କାରିଣୀ ରୂପେ ବର୍ଣ୍ଣନା କରିଛନ୍ତି । ଶ୍ରୀରାଧାଙ୍କର ଏବଂବିଧ ରୂପ ନିମ୍ବାର୍କ ସମ୍ପ୍ରଦାୟର

ପରବର୍ତ୍ତୀ ଗୋସ୍ୱାମୀମାନଙ୍କ ଦ୍ୱାରା ରଚିତ ଗ୍ରନ୍ଥମାନଂଙ୍କରେ ପରିସ୍ଫୁଟିତ ହୋଇଛି ।

ବଲ୍ଲଭ ସମ୍ପ୍ରଦାୟରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଅବିଚ୍ଛିନ୍ନ ଶକ୍ତି ରୂପେ ଗୃହୀତା । ବଲ୍ଲଭାଚାର୍ଯ୍ୟ ତାଙ୍କର 'ସୁବୋଧିନୀ ଟିକା'ରେ ରାଧା ଶବ୍ଦର ମୂଳକୁ ଅନ୍ୱେଷଣ କରିବାକୁ ଯାଇ 'ରାଧସ' ଶବ୍ଦକୁ ଭଗବାନଙ୍କର ସିଦ୍ଧି ବାଚକ ବୋଲି କହିଛନ୍ତି । ସିଦ୍ଧି ସହିତ ଭଗବାନ୍ ନିଜ ହୃଦୟରେ ରମଣ କରୁଛନ୍ତି ଓ ସିଦ୍ଧି ହେଉଛି ଆତ୍ମନିଷ୍ଠ ଭାବରେ ରସସିଦ୍ଧ । ଭାଗବତର 'ରାଧସା' ଶବ୍ଦରେ ସେ 'ରାଧା' ଶବ୍ଦକୁ ଲକ୍ଷ୍ୟ କରିଛନ୍ତି । ବଲ୍ଲଭ ସମ୍ପ୍ରଦାୟରେ ରାଧାକୃଷ୍ଣଙ୍କର ଏହି ଅଭେଦ ପରିକଳ୍ପନା ମଧ୍ୟରେ ପରକୀୟା ଭାବର ସଙ୍କେତ ଆଦୌ ନାହିଁ ବୋଲି କୁହାଯାଇପାରେ ।

ବୈଷ୍ଣବ ଧର୍ମର ବିଭିନ୍ନ ସମ୍ପ୍ରଦାୟରେ ଶ୍ରୀରାଧାଂଙ୍କର ଆବିର୍ଭାବ ଘଟିବାରୁ ଶ୍ରୀରାଧା ତନ୍ତ୍ରଶାସ୍ତ୍ର ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଲେ । ବୃହଦ୍-ଗୌତମୀୟ ତନ୍ତ୍ରରେ ଶ୍ରୀରାଧାଙ୍କୁ କୃଷ୍ଣମୟୀ, ପରଦେବତା, ସର୍ବଲକ୍ଷ୍ମୀମୟୀ, ସର୍ବକାନ୍ତି ସମ୍ମୋହିନୀ ରୂପେ ବର୍ଣ୍ଣନା କରାଯାଇଥିବାର ଦେଖାଯାଏ । (୪୩) ସମ୍ମୋହନ ତନ୍ତ୍ରରେ ମଧ୍ୟ ଶ୍ରୀରାଧାଂଙ୍କର ମହତ୍ତ୍ୱ ପ୍ରତିଷ୍ଠା କରି କୁହାଯାଇଛି ଯେ ଗୌର ତେଜ ବିଶିଷ୍ଟା ଶ୍ରୀରାଧାଂଙ୍କ ବ୍ୟତୀତ ଶ୍ୟାମ ତେଜ ବିଶିଷ୍ଟ ଶ୍ରୀକୃଷ୍ଣଂଙ୍କର ଜପ ଓ ଧ୍ୟାନ କଲେ ଶିବଂଙ୍କ ନିକଟରେ ପାତକୀ ହେବାକୁ ହୁଏ । (୪୪) ପୁନଶ୍ଚ ନାରଦ ପଞ୍ଚରାତ୍ର ତନ୍ତ୍ରରେ ଶ୍ରୀରାଧାଙ୍କୁ ମୁଖ୍ୟତଃ ମୁକ୍ତି ପ୍ରଦା, ବେଦସାର, ସୁପୁଣ୍ୟଦା, ବ୍ରହ୍ମ ସ୍ୱରୂପା, ନିର୍ଲିପ୍ତା, ପ୍ରକୃତି ପରସ୍ଥାମୟୀ, ପ୍ରାଣାଧିଷ୍ଠାତ୍ରୀ, ରସନାଧିଷ୍ଠାତ୍ରୀ, ବୁଦ୍ଧ୍ୟାଧିଷ୍ଠାତ୍ରୀ ଓ ଦୁର୍ଗତି ନାଶିନୀ ଦୁର୍ଗା ଭାବେ ଗ୍ରହଣ କରାଯାଇଛି । (୪୫) ଶ୍ରୀରାଧାଂଙ୍କର ଏହି ରୂପ ଶ୍ରୀ ଓ ବଲ୍ଲଭ ସମ୍ପ୍ରଦାୟର ଲକ୍ଷ୍ମୀତତ୍ତ୍ୱ ଦ୍ୱାରା ପୂର୍ଣ୍ଣ ପ୍ରଭାବିତ ହୋଇଅଛି ।

**ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଶ୍ରୀକୃଷ୍ଣ ଶକ୍ତିକଳ୍ପନା ଓ ଶ୍ରୀରାଧା –**

ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଶ୍ରୀରାଧା ଅଚିନ୍ତ୍ୟ ଅନନ୍ତ ଶକ୍ତିଯୁକ୍ତ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତିର ବିଗ୍ରହ ରୂପେ ଗୃହୀତା । ଶ୍ରୀରାଧାଙ୍କର

ଏହି ପରିକଳ୍ପନା ମଧ୍ୟ ଭାରତର ପ୍ରଖ୍ୟାତ ଗୃହୀ ବୈଷ୍ଣବ ସମ୍ପ୍ରଦାୟଙ୍କ ଦ୍ୱାରା କରାଯାଇଛି । ଶ୍ରୀକୃଷ୍ଣଙ୍କର ଅଚିନ୍ତ୍ୟ ଅନନ୍ତ ଶକ୍ତିର ପରିଚୟ ପ୍ରଦାନ କରି ଶ୍ରୀଜୀବଗୋସ୍ୱାମୀ ତାଙ୍କର ଭଗବତ୍ ସନ୍ଦର୍ଭରେ ଉଲ୍ଲେଖ କରିଛନ୍ତି— "ଭଗବାନ ହେଉଛନ୍ତି ସଚ୍ଚିଦାନନ୍ଦ ରୂପ, ସ୍ୱରୂପଭୂତ ଅଚିନ୍ତ୍ୟ ବିଚିତ୍ର ଅନନ୍ତ ଶକ୍ତିଯୁକ୍ତ । ବ୍ରହ୍ମ ହେଉଛନ୍ତି ତାଙ୍କର ପ୍ରକାଶାବସ୍ଥା । ଏହି ଭଗବାନ୍ ଜୀବ ଜଗତ ଓ ପ୍ରକୃତି ମଧ୍ୟରେ ଅନ୍ତର୍ଯ୍ୟାମୀ ରୂପେ ଅବସ୍ଥାନ କଲାବେଳେ ପରମାତ୍ମା ଆଖ୍ୟା ଧାରଣ କରନ୍ତି । ବସ୍ତୁତଃ ବ୍ରହ୍ମ, ଭଗବାନ୍ ଓ ପରମାତ୍ମା ଏକ ହେଲେ ହେଁ ଶକ୍ତି ପ୍ରକାଶ ଭେଦରେ ଏହି ରୂପମାନଙ୍କ ମଧ୍ୟରେ ତାରତମ୍ୟ ରହିଛି । ଶ୍ରୀଜୀବ ଗୋସ୍ୱାମୀ ଭଗବାନଙ୍କ ଶକ୍ତିର ପ୍ରକାଶକୁ ଚାରିଟି ସ୍ଥାନରେ ନିର୍ଦ୍ଦେଶ କରିଛନ୍ତି । ଯଥା—(୧) ନିଜର ସ୍ୱରୂପ ମଧ୍ୟରେ, (୨) ନିଜର ବୈଭବରେ (ଅବତାର, ଧାମ, ପରିକରାଦି), (୩) ଜୀବ ମଧ୍ୟରେ ଓ (୪) ପ୍ରକୃତି ମଧ୍ୟରେ ।

ଭଗବାନଙ୍କଠାରେ ପ୍ରକାଶିତ ସ୍ୱରୂପ ଶକ୍ତି ହେଉଛି ତାଙ୍କର ଶ୍ରେଷ୍ଠ ଶକ୍ତି, ଯାହା ପରାଶକ୍ତି ନାମରେ ଖ୍ୟାତ । ଏହି ଶକ୍ତି ପୁନର୍ବାର ତିନିପ୍ରକାରରେ ବିଭକ୍ତ ଯଥା—ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ । ଏମାନଙ୍କ ମଧ୍ୟରେ ପୁନଶ୍ଚ ହ୍ଲାଦିନୀ ଶକ୍ତି ହେଉଛି ଭଗବାନଙ୍କର ସର୍ବଶ୍ରେଷ୍ଠ ଶକ୍ତି, ଯାହା ମାଧ୍ୟମରେ ଭଗବାନ୍ ନିଜେ ଆନନ୍ଦ ଲାଭ କରିବା ସଙ୍ଗେ ସଙ୍ଗେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ଆନନ୍ଦ ଦାନ କରିଥାନ୍ତି । ତେଣୁ ଭଗବାନଙ୍କ ଲୀଳା ଜନିତ ଆନନ୍ଦ ଓ ଭକ୍ତର ପ୍ରେମଜନିତ ଆନନ୍ଦର ମୂଳ ହେତୁ ହେଉଛି ଭଗବାନଙ୍କର ଏହି ହ୍ଲାଦିନୀ ଶକ୍ତି । ବେଦ, ଉପନିଷଦ୍ ତଥା ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଭଗବାନଙ୍କୁ ରସମୟ ଭାବେ ଉଲ୍ଲେଖ କରାଯାଇଛି । ଭଗବାନଙ୍କର ରସମୟ ରୂପର ଶକ୍ତି ବିଶେଷ ହେଉଛି ଏହି ହ୍ଲାଦିନୀ ଶକ୍ତି ଓ ଶ୍ରୀରାଧା ହେଉଛନ୍ତି ଏହି ହ୍ଲାଦିନୀ ଶକ୍ତିର ସାରାଂଶ ବା ଭଗବାନଙ୍କ ରସମୟ ରୂପର ଶ୍ରେଷ୍ଠାଂଶ । ଏହା ସ୍ପଷ୍ଟ ଯେ ଶ୍ରୀକୃଷ୍ଣଙ୍କ ରସମୟରୂପ ଓ ଶ୍ରୀରାଧାଙ୍କର ରସମୟୀରୂପ ଭଗବାନଙ୍କର ଶ୍ରେଷ୍ଠ ଶକ୍ତି ସ୍ୱରୂପ ଶକ୍ତିର ଶ୍ରେଷ୍ଠାଂଶ ହ୍ଲାଦିନୀ ଶକ୍ତିର ପରିପ୍ରକାଶ । ଭଗବାନ୍ ଶ୍ରୀକୃଷ୍ଣ ରସମୟ ଅଂଶର ପ୍ରକାଶ ଲୀଳାଧାମ ଓ ନିତ୍ୟ ଗୋଲକ ଏବଂ ଲୀଳା ସହାୟିକା ଗୋପୀଗଣ ରସମୟୀ ଶ୍ରୀରାଧାଙ୍କର

ରସମୟ ଅଂଶର ପ୍ରକାଶ ମାତ୍ର । ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଲକ୍ଷ୍ମୀ ଭଗବାନଙ୍କ ସ୍ୱରୂପ ଶକ୍ତିର ବୈଭବାଂଶର ଏବଂ ଶ୍ରୀରାଧା ରସାଂଶର ପ୍ରକାଶ ଭାବେ ଗୃହୀତ । ଭଗବାନଙ୍କ ପ୍ରକୃଷ୍ଟ ସ୍ୱରୂପ ଶକ୍ତି ରସମୟ ହୋଇଥିବାରୁ ଏହାର ଅଂଶର-ସାର-ଶ୍ରୀରାଧା ଲକ୍ଷ୍ମୀଙ୍କ ଠାରୁ ଶ୍ରେଷ୍ଠ ସ୍ଥାନୀୟା ।

ଶ୍ରୀଚୈତନ୍ୟ ସମ୍ପ୍ରଦାୟରେ ଶ୍ରୀକୃଷ୍ଣଙ୍କର ରସପୂର୍ଣ୍ଣ ଶୃଙ୍ଗାର ଲୀଳା ଉପରେ ପ୍ରାଧାନ୍ୟ ଦିଆଯାଉଥିବାରୁ ଭଗବାନଙ୍କ ସ୍ୱରୂପକୁ ରସମୟ ଏବଂ ଏହାର ସାର ଶକ୍ତି ହ୍ଲାଦିନୀର ସାର ରସମୟୀ ଶ୍ରୀରାଧାଙ୍କୁ ଭଗବାନଙ୍କ ଶ୍ରେଷ୍ଠ ଶକ୍ତି ରୂପେ ଗ୍ରହଣ କରାଯାଇଛି । ଚୈତନ୍ୟ ସମ୍ପ୍ରଦାୟର ରାଧାକୃଷ୍ଣତତ୍ତ୍ୱ ଶୃଙ୍ଗାର ରସ କୈନ୍ଦ୍ରିକ ହୋଇଥିବାରୁ ରସ ନିଷ୍ପତ୍ତି ସକାଶେ ବିଭାବ, ଅନୁଭାବ ଓ ସଞ୍ଚାରୀ ଭାବଗୁଡିକ ତତ୍‌କୈନ୍ଦ୍ରିକ ହୋଇ ପଡିଛି । ଶୃଙ୍ଗାର ରସର ଆଲମ୍ବନ ବିଭାବ ରୂପେ ଅବତୀର୍ଣ୍ଣ ନାୟକ ନାୟିକା ଭାବେ ଶ୍ରୀରାଧାଂ ଓ ଶ୍ରୀକୃଷ୍ଣଙ୍କର ରୂପ, ଗୁଣର ଯଥୋଚିତ ବର୍ଣ୍ଣନା ଏହି ସମ୍ପ୍ରଦାୟର ଗ୍ରନ୍ଥମାନଙ୍କରେ ପ୍ରତିପାଦିତ ହୋଇଛି । ରାଧାକୃଷ୍ଣ ଯେ ହେତୁ ରସର ମୂଳ ଉତ୍ସ, ସେହେତୁ ସେଠାରେ ରସର ସ୍ଫୁରଣ ପୂର୍ଣ୍ଣମାତ୍ରାରେ ଘଟିଥାଏ । ପୂର୍ଣ୍ଣମାତ୍ରାରେ ରସ ସ୍ଫୁରଣ ନିମନ୍ତେ ନାୟକ ନାୟିକାଙ୍କ ଠାରେ ଯେଉଁସବୁ ନିର୍ଦ୍ଦିଷ୍ଟ ବୟସ, ସୌନ୍ଦର୍ଯ୍ୟ, ଗୁଣ, ପ୍ରେମ, ବେଶବାସ-ଭୂଷା ଆବଶ୍ୟକ ତାହାର ବିଶଦ୍ ଚର୍ଚ୍ଚା ଚୈତନ୍ୟ ପନ୍ଥୀ ଗୋସ୍ୱାମୀମାନଙ୍କ ଦ୍ୱାରା ଗୃହୀତ ହୋଇଛି । ଏ ସବୁର ବର୍ଣ୍ଣନା ରୂପଗୋସ୍ୱାମୀଙ୍କ 'ଭକ୍ତି ରସାମୃତ ସିନ୍ଧୁ' ଓ 'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥ ଦୁଇଟି ପଥ ପ୍ରଦର୍ଶକ ରୂପେ ଗୃହୀତ ହୋଇଛି । କୃଷ୍ଣଦାସ କବିରାଜ ଗୋସ୍ୱାମୀ ମଧ୍ୟ ତାଙ୍କର 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ସାଙ୍କେତିକ ଭାବରେ ଏହାର ଉପସ୍ଥାପନା କରିଛନ୍ତି । ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ରେ ଶ୍ରୀରାଧାଙ୍କର ଯେଉଁ ବର୍ଣ୍ଣନା ପ୍ରଦତ୍ତ ହୋଇଛି ତାହା ପୂର୍ବୋକ୍ତ ଗ୍ରନ୍ଥ ବର୍ଣ୍ଣିତ ଶ୍ରୀରାଧାଙ୍କର ତାତ୍ତ୍ୱିକ ଦିଗ ବ୍ୟତୀତ ଅନ୍ୟ କିଛି ନୁହେଁ ।

## ଚୈତନ୍ୟ ସମ୍ପ୍ରଦାୟରେ ଶ୍ରୀରାଧା—

ଶ୍ରୀରାଧାଙ୍କ ସମ୍ପର୍କରେ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥର ମଧ୍ୟ-ଲୀଳାରେ କୁହାଯାଇଛି—

"କୃଷ୍ଣେର ବିଶୁଦ୍ଧ ପ୍ରେମ ରତ୍ନେର ଆକର
ଅନୁପମ ଗୁଣଗଣ ପୂର୍ଣ୍ଣ କଳେବର ।
ଯାହାର ସୌଭାଗ୍ୟ ଗୁଣ ବାଞ୍ଛେ ସତ୍ୟଭାମା
ଯା'ର ଠାଇଁ କଳା ବିଳାସ ଶିଖେ ବ୍ରଜ ବାମା ।
ଯା'ର ସୌନ୍ଦର୍ଯ୍ୟାଦିଗୁଣ ବାଞ୍ଛେ ଲକ୍ଷ୍ମୀ ପାର୍ବତୀ
ଯା'ର ପତିବ୍ରତା ଧର୍ମ ବାଞ୍ଛେ ଅରୁନ୍ଧତୀ ।
ଯା'ର ସଦ୍‌ଗୁଣଗଣେର କୃଷ୍ଣ ନା ପାୟ ପାର
ତା'ର ଗୁଣ ଗଣିବେ କେମନ ଜୀବ ଛାର ।" (୮/୪୨-୪୫)

ଏହି ଉଦ୍ଧୃତିରୁ ପ୍ରମାଣିତ ହୁଏ ଯେ ଶ୍ରୀରାଧା ହେଉଛନ୍ତି ପରମା ସୁନ୍ଦରୀ, ବିଦଗ୍ଧ, ପତିବ୍ରତା ଓ ସକଳ ସଦ୍‌ଗୁଣର ଆଧାର । ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ମଧ୍ୟ ତାଙ୍କ 'ସିଦ୍ଧାନ୍ତ ରତ୍ନମ୍'ରେ ଲେଖିଛନ୍ତି— "ଯା ଭଗବଦ୍ ଭିନ୍ନାଭିନ୍ନତା ଯା ଚ ହ୍ଲାଦିନୀ ସମ୍ବିତ୍ ସାଂଦ୍ରାତ୍ ପ୍ରେମାତ୍ମିକା ସେତି କାମାଦ୍ୟଧି କରଣେ ଭ୍ୟାପ୍ତେ ସ୍ଫୁଟମେତତ୍" । (୨\୨) ଅର୍ଥାତ୍ ଯେ ଭଗବାନ୍‌ଙ୍କ ଠାରୁ ଅଭିନ୍ନ, ଯେ ହ୍ଲାଦିନ୍ୟାଦି ରୂପେ ବିଶେଷିତା, ସେହି ପରା ଈଶ୍ୱରୀ ହେଉଛନ୍ତି ଶ୍ରୀରାଧା । ଏହା କାମଶାସ୍ତ୍ରର ଅଧିକରଣ ବିଷୟରେ ସ୍ଫୁଟ ହୋଇଅଛି । ପୁନଶ୍ଚ ସେ ଅନ୍ୟତ୍ର ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କର ପ୍ରକୃତି ଓ ନିତ୍ୟନବୀନା ଅର୍ଥାତ୍ ମାୟାଗନ୍ଧ ବିହୀନା, ସର୍ବାଳଙ୍କାର ଭୂଷିତା, ପ୍ରସନ୍ନା ଏବଂ ଅଶେଷ କଲ୍ୟାଣମୟୀ ଭାବେ ଉଲ୍ଲେଖ କରିଛନ୍ତି । (୪୭) ଗୌତମୀୟ ତନ୍ତ୍ରରେ ପ୍ରଦତ୍ତ

"ଦେବୀ କୃଷ୍ଣମୟୀ ପ୍ରୋକ୍ତା ରାଧିକା ପରଦେବତା
ସର୍ବ ଲକ୍ଷ୍ମୀମୟୀ ସର୍ବକାନ୍ତିଃ ସମ୍ମୋହିନୀ ପରା" ।

ଶ୍ଳୋକଟିକୁ ବ୍ୟାଖ୍ୟା କରି 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଶ୍ରୀରାଧାଙ୍କର ସ୍ୱରୂପ ବିଶ୍ଳେଷଣ କରାଯାଇଛି । ଏଥିରେ କୁହାଯାଇଛି ଯେ **ଦେବୀ** ଅର୍ଥ ହେଉଛି ଦ୍ୟୋତମାନା ପରମ ସୁନ୍ଦରୀ କିମ୍ବା କୃଷ୍ଣ ପୂଜାକ୍ରୀଡ଼ାର ବସତି ନଗରୀ । **କୃଷ୍ଣମୟୀ** ଅର୍ଥ ହେଉଛି ଯାହାର ଅନ୍ତରେ ଓ ବାହାରେ କୃଷ୍ଣ ଅବସ୍ଥାନ କରନ୍ତି । ଅର୍ଥାତ୍ ଶ୍ରୀରାଧାଙ୍କ ଦୃଷ୍ଟିପାତରେ ସେ ସ୍ଥାନରେ

କୃଷ୍ଣ ଭାବର ସ୍ଫୁରଣ ଘଟିବା । ଅନ୍ୟାର୍ଥରେ ପ୍ରେମ ରସମୟ କୃଷ୍ଣଙ୍କ ସ୍ୱରୂପ ଓ ଶକ୍ତି ସହିତ ଯେ ଏକରୂପ ହୋଇ ବାସ କରନ୍ତି । **ରାଧିକା** ଅର୍ଥ ହେଉଛି ଯେ ଆରାଧନା ଦ୍ୱାରା କୃଷ୍ଣ ବାଞ୍ଛା ପୂରଣ କରନ୍ତି । **ପରଦେବତା** ଅର୍ଥ ସର୍ବପୂଜ୍ୟା ପରମ ଦେବତା, ସର୍ବପାଳିକା ଓ ସକଳ ଜଗତର ମାତା । **ସର୍ବଲକ୍ଷ୍ମୀମୟୀ** ଅର୍ଥ ହେଉଛି ଯାହାଙ୍କଠାରେ ସମସ୍ତ ଲକ୍ଷ୍ମୀଗଣ ବାସ କରନ୍ତି କମ୍ବା ଯେ କୃଷ୍ଣଙ୍କର ଷଡବିଧ ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ ଶକ୍ତି ଅଟନ୍ତି । ଯାହାଙ୍କଠାରେ ସମସ୍ତ ସୌନ୍ଦର୍ଯ୍ୟକାନ୍ତି ବାସ କରେ ଏବଂ ସମସ୍ତ ଲକ୍ଷ୍ମୀଗଣର ଶୋଭା ଯାହାଙ୍କଠାରୁ ପ୍ରକାଶିତ ହୁଏ । **କାନ୍ତି** ଅର୍ଥ ହେଉଛି କୃଷ୍ଣବାଞ୍ଛା । ଶ୍ରୀରାଧା କୃଷ୍ଣଙ୍କର ବାଞ୍ଛା ପୂରଣ କରୁଥିବାରୁ ସେ ସର୍ବକାନ୍ତି ଅଟନ୍ତି । **ସମ୍ମୋହିନୀ** ଅର୍ଥ ହେଉଛି ଜଗତକୁ ଯେଉଁ କୃଷ୍ଣ ମୋହନ କରନ୍ତି, ତାଙ୍କର ମୋହିନୀ । ସେହିପରି **ପରା** ଅର୍ଥ ଉତ୍କୃଷ୍ଟା । ଏହି ସମସ୍ତ କାରଣଗୁଡ଼ିକ ଶ୍ରୀରାଧାଙ୍କଠାରେ ଏକୀଭୂତ ହୋଇଥିବା ହେତୁ ସେ ଶ୍ରେଷ୍ଠା ଅଟନ୍ତି ।

'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଶ୍ରୀରାଧାଙ୍କୁ ମହାଭାବର ଚରମୋତ୍କୃଷ୍ଟ ଅବସ୍ଥା ଭାବେ ଗ୍ରହଣ କରାଯାଇଛି । ଏ ସମ୍ପର୍କରେ ପ୍ରଦତ୍ତ ଉଦ୍ଧୃତି ହେଉଛି—

"ହ୍ଲାଦିନୀର ସାର ପ୍ରେମ ପ୍ରେମ ସାର ଭାବ
ଭାବେର ପରମ କାଷ୍ଠା ନାମ ମହାଭାବ
ମହାଭାବ ସ୍ୱରୂପା ଶ୍ରୀରାଧା ଠାକୁରାଣୀ
ସର୍ବଗୁଣ ଖଣି କୃଷ୍ଣକାନ୍ତା ଶିରୋମଣି" ।

(ଆଦିଲୀଳା, ୪/୫୯-୬୦)

ପ୍ରେମର ଚରମାବସ୍ଥା ହେଉଛି ମହାଭାବ ଏବଂ ମହାଭାବର ଚରମତା ହିଁ ମାଦନ ଭାବରେ । ରୂପ ଗୋସ୍ୱାମୀ ଶ୍ରୀରାଧାଙ୍କଠାରେ ଏହି ହ୍ଲାଦିନୀର ସାର ଏହି ମାଦନ ଭାବ ପ୍ରକାଶିତ ହୁଏ ବୋଲି ଉଲ୍ଲେଖ କରିଛନ୍ତି । ଯଥା— "ରାଜତେ ହ୍ଲାଦିନୀ ସାରେ ରାଧାୟାମେବ ଯଃ ସଦା" (ଉଜ୍ଜ୍ୱଳ ନୀଳମଣି, ୨୧୯) ତେଣୁ ଶ୍ରୀଚୈତନ୍ୟ ପରମ୍ପରାରେ ଶ୍ରୀରାଧା ହେଉଛନ୍ତି ପରମ ପ୍ରେମମୟୀ ।

'ପଦ୍ମପୁରାଣ' ଓ 'ନାରଦ ପଞ୍ଚରାତ୍ର'ରେ ଥିବା ଶ୍ରୀରାଧା ସମ୍ପର୍କୀୟ ବର୍ଣ୍ଣନାକୁ ଚୈତନ୍ୟପନ୍ଥୀ ଗୋସ୍ୱାମୀମାନେ ତାଙ୍କ ନିଜ ଦର୍ଶନରେ ପ୍ରାମାଣିକ ରୂପେ ଗ୍ରହଣ କରି ନେଇଛନ୍ତି । ଏହି ଗ୍ରନ୍ଥରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରାଯାଇଛି । ଏପରିକି ତ୍ରିଗୁଣମୟୀ ଦୁର୍ଗାଙ୍କୁ ଶ୍ରୀରାଧାଙ୍କର କୋଟି କୋଟ୍ୟାଂଶରୁ ଜାତ ବୋଲି କୁହାଯାଇଛି । (୪୬) 'ବୃହଦ୍ ଗୌତମୀୟ ତନ୍ତ୍ର'ରେ ଶ୍ରୀରାଧାଙ୍କୁ ତ୍ରିତତ୍ତ୍ୱରୂପିଣୀ ରୂପେ ଉଲ୍ଲେଖ କରି କୁହାଯାଇଛି -

"ସତ୍ତ୍ୱ, ତତ୍ତ୍ୱଂ, ପରତ୍ୱଞ୍ଚ ତତ୍ତ୍ୱତ୍ରୟ ମହଂକଳ
ତ୍ରିତତ୍ତ୍ୱ ରୂପିଣୀସାପି ରାଧିକା ମମବଲ୍ଲଭା" (୪୭)

ଅର୍ଥାତ୍ ସେ ସତ୍ତ୍ୱ (କାର୍ଯ୍ୟତ୍ୱ), ତତ୍ତ୍ୱ (କାରଣତ୍ୱ) ଓ ପରତ୍ୱ (କାର୍ଯ୍ୟ କାରଣରୁ ଅତୀତ ଶ୍ରେଷ୍ଠତ୍ୱ)ର ସମାହାର । 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ମଧ୍ୟ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପରିକଳ୍ପନା କରାଯାଇଛି । ଏ ସମ୍ପର୍କରେ କୁହାଯାଇଛି --

"ରାଧାପୂର୍ଣ୍ଣ ଶକ୍ତି, କୃଷ୍ଣ ପୂର୍ଣ୍ଣ ଶକ୍ତିମାନ୍
ଦୁଇବସ୍ତୁ ଭେଦ ନାହିଁ ଶାସ୍ତ୍ର ପରମାଣ
ମୃଗମଦ ତାର ଗନ୍ଧ ଯୈଛେ ଅବିଚ୍ଛେଦ
ଅଗ୍ନି ଜ୍ୱାଳାତେ ଯୈଛେ ନାହିଁ କଭୁ ଭେଦ
ରାଧାକୃଷ୍ଣ ଐଛେ ସଦା ଏକର ସ୍ୱରୂପ
ଲୀଳା ରସ ଆସ୍ୱାଦିତେ ଧରେ ଦୁଇ ରୂପ ।"

(ଆଦିଲୀଳା, ୪/୮୫)

ଶ୍ରୀରାଧା ପରମ ପ୍ରେମମୟୀ । ତାଙ୍କ ପ୍ରେମର ପଟାନ୍ତର ନାହିଁ । ଶ୍ରୀରାଧାଙ୍କର ଏହି ପ୍ରେମଭାବର ଉଲ୍ଲେଖ କରି ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ କୁହାଯାଇଛି —

"ପୂର୍ଣ୍ଣାନନ୍ଦମୟ ଆମି ଚିନ୍ମୟ ପୂର୍ଣ୍ଣତତ୍ତ୍ୱ
ରାଧିକାର ପ୍ରେମେ ଆମାର କରାୟ ଉନ୍ମତ୍ତ

ନା ଜାନି ରାଧାର ପ୍ରେମେ କତ ଆଛେ ବଳ
ଯେ ବଳେ ଆମାରେ କରେ ସର୍ବଦା ବିହ୍ୱଳ ।"
(ଆଦିଲୀଳା, ୪/୧୦-୭୮)

ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟର ବିକାଶ ଶ୍ରୀରାଧାଙ୍କ ଦ୍ୱାରା ସମ୍ଭବ ହୋଇଥାଏ । ଶ୍ରୀରାଧାଙ୍କର ସାନ୍ନିଧ୍ୟ ଲାଭ କଲେ ଶ୍ରୀକୃଷ୍ଣଙ୍କଠାରେ ମାଦନାବସ୍ଥା ପ୍ରକଟିତ ହୋଇଥାଏ । ଫଳତଃ ସେ ମଦନମୋହନ ଆଖ୍ୟା ପ୍ରାପ୍ତ ହୁଅନ୍ତି । ଏ ସମ୍ପର୍କରେ କୃଷ୍ଣଦାସ କବିରାଜଙ୍କ ଉକ୍ତି ସ୍ମରଣଯୋଗ୍ୟ । ଯଥା— "ରାଧା ସଙ୍ଗେ ଯଥା ଭାତି ତଦା ମଦନ ମୋହନ" । (ଗୋବିନ୍ଦ ଲୀଳାମୃତ, ୮/୩୨) ପୁନଶ୍ଚ ସେହି ଗ୍ରନ୍ଥରେ କୁହାଯାଇଛି--

"କୃଷ୍ଣସ୍ୟ ପ୍ରଣୟଜନିଭୂଃ ଶ୍ରୀମତୀ ରାଧିକୈକା
କାସ୍ୟ ପ୍ରେୟସ୍ୟନୁପମଗୁଣା ରାଧିକୈକା ନ ଚାନ୍ୟା" (୧୧/୧୨୨)

ଅର୍ଥାତ୍ ଏକମାତ୍ର ଶ୍ରୀରାଧା ହିଁ ହେଉଛନ୍ତି କୃଷ୍ଣଙ୍କର ପ୍ରଣୟ ଉଦ୍ରେକକାରିଣୀ ଏବଂ ଶ୍ରୀକୃଷ୍ଣଙ୍କର ଅନୁପମଗୁଣା ପ୍ରେୟସୀ । ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ଶ୍ରୀରାଧାଙ୍କୁ କୃଷ୍ଣଗତପ୍ରାଣା ଓ ଲଳିତାଦି ସଖୀମାନଙ୍କୁ ତାଙ୍କର କାୟବ୍ୟୂହ ଭାବରେ ଗ୍ରହଣ କରାଯାଇ ଶ୍ରୀକୃଷ୍ଣଙ୍କଠାରୁ ଶ୍ରୀରାଧାଙ୍କର ଉତ୍କର୍ଷ ପ୍ରତିପାଦନ କରାଯାଇଛି । ଏ ସମ୍ପର୍କରେ ଶ୍ରୀକୃଷ୍ଣଙ୍କର ସ୍ୱଉକ୍ତି ପ୍ରଣିଧାନ ଯୋଗ୍ୟ । ଯେଉଁଠାରେ ଶ୍ରୀକୃଷ୍ଣ କହିଛନ୍ତି -"ମୁଁ ପୂର୍ଣ୍ଣାନନ୍ଦ, ପୂର୍ଣ୍ଣରସ ରୂପେ ବିଦିତ । ମୋ ଯୋଗେ ଜଗତ ଆନନ୍ଦିତ ହୁଏ । ମୋତେ ଆନନ୍ଦ ଦେବାରେ କିଏ ସମର୍ଥ ହେବ ? ଯାହାର ଗୁଣ ମୋ ଗୁଣଠାରୁ ଶତଗୁଣ ସେଇ କେବଳ ମୋତେ ଆନନ୍ଦ ଦେବାରେ ସମର୍ଥ ହୋଇପାରିବ । ଶ୍ରୀରାଧା କେବଳ ମୋଠାରୁ ଗୁଣରେ ଅଧିକ । ସେ ହିଁ କେବଳ ମୋତେ ଆନନ୍ଦ ଦାନ କରିବାରେ ସମର୍ଥ ।" ପୁନଶ୍ଚ ଶ୍ରୀକୃଷ୍ଣ ସ୍ୱୀକାର କରିଛନ୍ତି ଯେ ତାଙ୍କର ରୂପ କୋଟି କନ୍ଦର୍ପଙ୍କୁ ଜୟ କରି ତ୍ରିଭୁବନକୁ ଆପ୍ୟାୟିତ କରୁଥିଲେ ହେଁ ତାଙ୍କର ନୟନ ଶ୍ରୀରାଧା-ରୂପ ଦର୍ଶନରେ ଅଧୀର ହୋଇପଡେ । ତାଙ୍କର ମୋହନ ମୁରଲୀର ମଧୁର ମୂର୍ଚ୍ଛନାରେ ତ୍ରିଭୁବନ ଆକର୍ଷିତ ହେଲେ ହେଁ ଶ୍ରୀରାଧାଙ୍କର ଶ୍ରୀମୁଖ ବଚନ କୃଷ୍ଣଙ୍କର ଚିତ୍ତ ହରଣ କରେ । ଶ୍ରୀକୃଷ୍ଣଙ୍କ

ଅଙ୍ଗବାସ ଜଗତକୁ ସୁଗନ୍ଧିତ କଲେ ହେଁ ଶ୍ରୀରାଧାଙ୍କ ଶରୀରର ସୁବାସରେ ତାଙ୍କର ଚିତ୍ତକୁ ଆକର୍ଷିତ କରେ । ଯଦ୍ୟପି ଶ୍ରୀକୃଷ୍ଣ ରସମୟ ରୂପେ ସକଳ ଜଗତକୁ ବଶୀଭୂତ କରିଥାନ୍ତି, ତଥାପି ରାଧାଙ୍କ ଅଧର ରସରେ ସେ ନିଜେ ବଶୀଭୂତ ହୋଇଥାନ୍ତି । ଶ୍ରୀକୃଷ୍ଣଙ୍କର ଅଙ୍ଗ କୋଟି ଚନ୍ଦ୍ରଠାରୁ ଶୀତଳ ହେଲେ ହେଁ ଶ୍ରୀରାଧାଙ୍କର ଅଙ୍ଗସ୍ପର୍ଶ ତାଙ୍କୁ ସୁଶୀତଳ କରେ । ତେଣୁ ଶ୍ରୀକୃଷ୍ଣ କହିଛନ୍ତି, ଏ ଜଗତରେ ରାଧା କେବଳ ମୋର ସୁଖର ହେତୁ । ରାଧିକାର ରୂପ ଓ ଗୁଣ ମୋ ଜୀବନର ଆଧାର ।" (୪୮) ଏଥିରେ ଶ୍ରୀରାଧାଙ୍କର ସ୍ୱରୂପ ସମ୍ପର୍କରେ ସ୍ପଷ୍ଟ ଅବଧାରଣା କରି ହୁଏ ।

ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ପ୍ରେମ ହେଉଛି ସମସ୍ତ ମାୟିକ ସ୍ପର୍ଶ ରହିତ ଅପ୍ରାକୃତ ପ୍ରେମ । ଅର୍ଥାତ୍ ଜାଗତିକ ପ୍ରେମର ଊର୍ଦ୍ଧ୍ୱରେ । କିନ୍ତୁ ପରକୀୟା ନାୟିକା ଭାବେ ଶ୍ରୀରାଧାଙ୍କର ଅବତରଣ । ଏହାର କାରଣ ରୂପେ କୁହାଯାଇପାରେ ଯେ ଅପ୍ରାକୃତ ପ୍ରେମ ଲୀଳାରେ ଯେଉଁ ତନ୍ମୟଭାବ, ଆକର୍ଷଣୀ ଭାବ ଓ ରସାନୁଭବ ଭାବର ଉଦ୍ରେକ ଘଟିଥାଏ, ତାହା ସ୍ୱକୀୟା ପ୍ରେମ ଲୀଳାରେ ପ୍ରକଟ ପାଇଁ ପର୍ଯ୍ୟାପ୍ତ ନୁହେଁ । ଅପ୍ରାକୃତ ପ୍ରେମ ଲୀଳାର ରାଗ ପ୍ରଧାନ ମଧୁର ରତି ସର୍ବସ୍ୱ ରୂପ କେବଳ ପ୍ରାକୃତ ପରକୀୟା ପ୍ରେମ ମଧ୍ୟରେ ପ୍ରଦର୍ଶିତ ହୋଇପାରେ । ସେଥିପାଇଁ ଲୌକିକ ଭାବରେ ରାଧା ଓ କୃଷ୍ଣ ପରପୁରୁଷ ଓ ପରନାରୀ ରୂପେ ଗୃହୀତ ହୋଇଛନ୍ତି । ଏହି ଲକ୍ଷ୍ୟରେ ବୋଧହୁଏ ବ୍ରହ୍ମବୈବର୍ତ୍ତ ପୁରାଣରେ ସେମାନଙ୍କର ବାଲ୍ୟବିବାହ କଥା ଉଲ୍ଲେଖ କରାଯାଇଛି । (କୃଷ୍ଣଖଣ୍ଡ, ୧୫ ଅଧ୍ୟାୟ) କବି ଅଭିମନ୍ୟୁ ମଧ୍ୟ ଏହି ବିବାହ କଥା ଉଲ୍ଲେଖ କରିଛନ୍ତି । ଯଥା—

"କୁମାର କୁମାରୀ ମେଳେ ଖେଳିବା ବୟସରେ
ବର ମୁହିଁ କନ୍ୟା ସେହି ହୋଇଛି ବିଧିରେ ।" (ବି. ଚି. ୭୪)

ତେଣୁ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ପ୍ରକୃତରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ହେଉଛନ୍ତି ସ୍ୱକୀୟା ନାୟକ ନାୟିକା । ପରକୀୟା ପ୍ରେମ ରସ ଉଲ୍ଲାସଦାୟକ ହୋଇଥିବାରୁ ଗୋବିନ୍ଦଙ୍କ ଇଚ୍ଛାରେ ରାଧାଙ୍କର ବୈଦିକ ରୀତିରେ ଚନ୍ଦ୍ରସେନ ବା ଅଭିମନ୍ୟୁ ସହିତ ବିବାହ ହୋଇଥିଲା ମାତ୍ର ।

ଶ୍ରୀରୂପଗୋସ୍ୱାମୀ ତାଙ୍କର 'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥର ଶ୍ରୀରାଧା ପ୍ରକରଣରେ ଶ୍ରୀରାଧାଙ୍କ ସମ୍ପର୍କରେ ଯେଉଁ ଆଲୋଚନା କରିଛନ୍ତି, ତାହାର ସମ୍ୟକ୍ ସୂଚନା ଏଠାରେ ପ୍ରଦାନ କରାଯାଇପାରେ । ଶ୍ରୀକୃଷ୍ଣଙ୍କ ବ୍ରଜଲୀଳାର ନିତ୍ୟପ୍ରିୟାଗଣଙ୍କ ମଧ୍ୟରେ ଶ୍ରୀରାଧା ଏବଂ ଚନ୍ଦ୍ରାବଳୀ ମୁଖ୍ୟା ହୋଇଥିଲେ ହେଁ ଶ୍ରୀରାଧା ସର୍ବତୋ ଭାବରେ ଚନ୍ଦ୍ରାବଳୀଙ୍କଠାରୁ ଅଧିକ କାରଣ ସେ ମହାଭାବମୟୀ । ଏ ଦୁହିଁଙ୍କ ମଧ୍ୟରେ ପ୍ରୀତିଲକ୍ଷଣ ଗତ ପାର୍ଥକ୍ୟ ପରିଦୃଷ୍ଟ ହୋଇଥାଏ । ପ୍ରୀତିର ଦୁଇ ବୃତ୍ତି ଅର୍ଥାତ୍ ମୁଖ୍ୟ ବୃତ୍ତି ଓ ଗୌଣ ବୃତ୍ତି ଯଥାକ୍ରମେ ଶ୍ରୀରାଧା ଓ ଚନ୍ଦ୍ରାବଳୀଙ୍କଠାରେ ଦେଖାଯାଇଥାଏ । ମୁଖ୍ୟ ବୃତ୍ତି ହେଉଛି ପ୍ରିୟାନୁକୂଳତାର ସମ୍ପାଦନ ସହିତ ସ୍ୱସୁଖର ସ୍ୱତଃ ସମ୍ପାଦନ ଏବଂ ବିଷୟାନୁକୂଲ୍ୟ (କୃଷ୍ଣାନୁକୂଳକାର୍ଯ୍ୟ) ସହିତ ସ୍ୱସୁଖ ସାଧନ ଯଦି ଉଦ୍ଦେଶ୍ୟ ହୁଏ, ତାହାକୁ ଗୌଣ ବୃତ୍ତି କୁହାଯାଇଥାଏ । ତେଣୁ କୃଷ୍ଣଙ୍କ ପ୍ରତି ଚନ୍ଦ୍ରାବଳୀଙ୍କର ମମତ୍ୱର ଅଭିବ୍ୟକ୍ତି ହେଉଛି ଭାବ "ହେ କୃଷ୍ଣ ତ୍ୱଂ ମମୈବ" ଅର୍ଥାତ୍ ହେ କୃଷ୍ଣ ତୁମେ ମୋର" ହୋଇଥିବା ବେଳେ ଶ୍ରୀରାଧାଙ୍କର ମମତ୍ୱ ଭାବ ହେଉଛି, "ହେ କୃଷ୍ଣ ! ତବୈବାହମ୍" ଅର୍ଥାତ୍ ହେ କୃଷ୍ଣ ମୁଁ ତୁମର ।" ଶ୍ରୀରାଧାଙ୍କର ମମତ୍ୱବୋଧରେ ରହିଛି ସମ୍ପୂର୍ଣ୍ଣ ଆତ୍ମସମର୍ପଣର ଭାବ । ସେଥିପାଇଁ ଶ୍ରୀରାଧା ଚନ୍ଦ୍ରାବଳୀଙ୍କଠାରୁ ଶ୍ରେଷ୍ଠା ଓ ଗୋବିନ୍ଦ ମୋହିନୀ ରୂପେ ପରିଚିତା ।

ବୃଷଭାନୁ ନନ୍ଦିନୀ ଶ୍ରୀରାଧାଙ୍କର ବେଶଭୂଷା ତଥା ସୌନ୍ଦର୍ଯ୍ୟରେ ଯେଉଁ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ ତାହାକୁ ରୂପଗୋସ୍ୱାମୀ ତାଙ୍କର 'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥରେ ଶ୍ରୀରାଧା ପ୍ରକରଣରେ ଉଲ୍ଲେଖ କରିଛନ୍ତି । ଏହି ବର୍ଣ୍ଣନାର ଅନୁସରଣରେ ସମସ୍ତ ବୈଷ୍ଣବ କବିମାନେ ଶ୍ରୀରାଧାଙ୍କୁ ବର୍ଣ୍ଣନା କରିଥିବା ଦେଖାଯାଏ । ଶ୍ରୀରାଧାଙ୍କର ଏହି ବୈଶିଷ୍ଟ୍ୟକୁ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା—(୧) ସୁଷ୍ଠୁକାନ୍ତ ସ୍ୱରୂପା, (୨) ଧୃତଷୋଡଶ ଶୃଙ୍ଗାର ଓ (୩) ଦ୍ୱାଦଶାଭରଣାଶ୍ରିତା ।

ନିମ୍ନରେ ଏହି ବୈଶିଷ୍ଟ୍ୟଗୁଡିକ ସମ୍ପର୍କରେ ସ୍ୱତନ୍ତ୍ର ଆଲୋଚନା କରାଗଲା ।

## ୧-ସୁଷ୍ଠୁକାନ୍ତ ସ୍ୱରୂପା

ଏହାର ଅର୍ଥ ହେଉଛି ଶ୍ରୀରାଧାଙ୍କର ଅଙ୍ଗ ପ୍ରତ୍ୟଙ୍ଗର ମନୋହାରିତା; ଅର୍ଥାତ୍ ଶ୍ରୀରାଧାଙ୍କର ରୂପୋତ୍ସବ । ଶ୍ରୀରାଧାଙ୍କର ଏହି ରୂପୋତ୍ସବ ତ୍ରିଭୁବନ ବନ୍ଦିତ । ସୁକୁଞ୍ଚିତ କେଶକଳାପ, ଦୀର୍ଘ କମଳାନନ, ଚଞ୍ଚଳ ନେତ୍ର, କଠିନ କୁଚ, କୃଶ କଟୀ, ଆନତ ସ୍କନ୍ଧ, ସୁରୁଚି ସମ୍ପନ୍ନ ନଖପଂକ୍ତି ପ୍ରଭୃତି ହେଉଛି ତାଙ୍କ ରୂପର ବୈଶିଷ୍ଟ୍ୟ । ଶ୍ରୀରାଧାଙ୍କର ଏହି ଅଙ୍ଗ ସମୂହକୁ ବୈଷ୍ଣବକବିମାନେ ଅତ୍ୟନ୍ତ କାବ୍ୟିକ ଛଟାରେ ବର୍ଣ୍ଣନା କରି ଶ୍ରୀରାଧାରୂପ ମାଧୁରୀର ଅସାମାନ୍ୟ ସୌନ୍ଦର୍ଯ୍ୟକୁ ପ୍ରତିପାଦନ କରିଛନ୍ତି । ଶ୍ରୀରାଧାଙ୍କର କେଶରାଶି ନିକଟରେ ତମ, ତମାଳ, ମର୍କତ, ଭ୍ରମର ଓ କେକୀପୁଚ୍ଛ ନୟନର ଚଞ୍ଚଳତା ନିକଟରେ ମୀନର ଛଟକ ବା ଖେଳାଖଞ୍ଜନର ଛଟା, ନଖପଂକ୍ତିରୁ କାନ୍ତି ନିକଟରେ ଜାତି ପୁଷ୍ପର ଦଳ, ଉନ୍ନତ କଠିନ କୁଚ ନିକଟରେ କୁଚ ଓ କ୍ଷୀଣକଟୀ ନିକଟରେ ଡମ୍ବରୁ, ୪ ଅଙ୍କ, କୁଶ, ମୃଦ୍, ବିସର୍ଗ ଓ ରେକ ପ୍ରଭୃତି ହାର ମାନି ଯିବେ ବୋଲି କବିମାନେ କଳ୍ପନା କରି ବସିଛନ୍ତି । ଏଥିରୁ ଶ୍ରୀରାଧାଙ୍କର ସୁଷ୍ଠୁକାନ୍ତା ସ୍ୱରୂପ ସ୍ପଷ୍ଟ ଭାବେ ଅନୁମିତ ହୋଇଥାଏ ।

## ୨-ଧୃତ ଷୋଡ଼ଶ ଶୃଙ୍ଗାର—

'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥରେ ଶ୍ରୀରାଧାଙ୍କର ଷୋଡ଼ଶ ପ୍ରକାର ଶୃଙ୍ଗାର ବେଶର ଅବତାରଣା କରାଯାଇଛି । ସେଗୁଡିକ ହେଉଛି—୧) ସ୍ନାନୋଜ୍ଜ୍ୱଳ ଦେହ, ୨) ନାସାଗ୍ରରେ ମୁକ୍ତା, ୩) ନୀଳବସ୍ତ୍ର ପରିଧାନ, ୪) କଟୀତଟରେ ସୁନ୍ଦର ନୀବିବନ୍ଧନ, ୫) ମସ୍ତକରେ ବେଣୀ, ୬) କର୍ଣ୍ଣରେ ଉତ୍ତଂସ, ୭) ଅଙ୍ଗରେ କର୍ପୂର କସ୍ତୁରୀ ଓ ଚନ୍ଦନାଦି ଲେପ, ୮) କେଶରେ ଗର୍ଭକ ହାର, ୯) ଗଳାରେ ମାଳ୍ୟ, ୧୦) ହସ୍ତେ ଲୀଳାକମଳ, ୧୧) ମୁଖେ ତାମ୍ବୂଳ, ୧୨) ଚିବୁକେ କସ୍ତୁରୀ ବିନ୍ଦୁ, ୧୩) ନୟନରେ କଜ୍ଜ୍ୱଳ, ୧୪) ଗଣ୍ଡରେ ମୃଗମଦ ରଚିତ ମକରୀ ଓ ପତ୍ରାବଳୀ, ୧୫) ଚରଣରେ ଅଲକ୍ତକ ରାଗ, ୧୬) ଲଲାଟରେ ତିଳକ । ଚୈତନ୍ୟପନ୍ଥୀ ବୈଷ୍ଣବ ପରମ୍ପରାର ସମସ୍ତ କବିମାନେ ଶ୍ରୀରାଧାଙ୍କର ଏହି ଶୃଙ୍ଗାର ବେଶକୁ ଶ୍ରୀରାଧା ରୂପ ବର୍ଣ୍ଣନା ମଧ୍ୟରେ ଅଳ୍ପ ବହୁତେ ଗ୍ରହଣ କରିଅଛନ୍ତି । ତେଣୁ ଏହାର ଏକକ ଉଦାହରଣ ଦେବା ଅନାବଶ୍ୟକ ମନେହୁଏ ।

## ୩–ଦ୍ୱାଦଶାଭରଣାଶ୍ରିତା—

ଶ୍ରୀରାଧା ଦ୍ୱାଦଶ ପ୍ରକାର ଆଭରଣରେ ଅଭୂଷିତ ହୋଇଥାଆନ୍ତି। ସେଗୁଡ଼ିକ ହେଉଛି—୧) ଶିରରେ ମଥାମଣି, ୨) କର୍ଣ୍ଣରେ କୁଣ୍ଡଳ, ୩) ନିତମ୍ବରେ ସ୍ୱର୍ଣ୍ଣକାଞ୍ଚି, ୪] ଗଳାରେ ସ୍ୱର୍ଣ୍ଣ ପଦକ, ୫] କର୍ଣ୍ଣୋ ପରି ଚକ୍ରୀ ଦ୍ୱୟ ଓ ଶଳକାଦ୍ୱୟ, ୬) କରରେ ବଳୟ, ୭) କଣ୍ଠରେ କଣ୍ଠହାର, ୮) ଅଙ୍ଗୁଳିରେ ଅଙ୍ଗୁରୀୟକ, ୯] ବକ୍ଷରେ ତାରକାହାର, ୧୦] ଭୁଜରେ ଅଙ୍ଗଦ, ୧୧) ଚରଣରେ ନାସାମଣି ଖଚିତ ନୂପୁର ଓ ୧୨) ପାଦାଙ୍ଗୁଳିରେ ଅଙ୍ଗୁରୀୟକ।

ଓଡ଼ିଆ ସାହିତ୍ୟର ସମସ୍ତ ଚୈତନ୍ୟପନ୍ଥୀ ବୈଷ୍ଣବ କବିମାନେ ଶ୍ରୀରାଧାଙ୍କର ଏହି ବିବିଧ ରୂପକୁ ତାଙ୍କର କାବ୍ୟ କବିତା ମଧ୍ୟରେ ଗ୍ରହଣ କରିଥିବା ଦେଖାଯାଏ। ଏ ଦିଗରେ କବି ଅଭିମନ୍ୟୁ ଅଗ୍ରଗଣ୍ୟ ହେବାର ଲକ୍ଷ୍ୟ କରାଯାଏ। ତାଙ୍କର 'ବିଦଗ୍ଧ ଚିନ୍ତାମଣି' ଓ 'ପ୍ରେମ ଚିନ୍ତାମଣି' କାବ୍ୟ ଦ୍ୱୟରେ ଶ୍ରୀରାଧାଙ୍କର ଏହିବିଧ ରୂପର ଠିକ ନିଖି ବର୍ଣ୍ଣନା ପ୍ରଦାନ କରାଯାଇଛି। ସମସ୍ତ ବୈଷ୍ଣବ କବିମାନେ ଶ୍ରୀରାଧାଙ୍କର ରୂପ ବର୍ଣ୍ଣନା କଲାବେଳେ ତାଙ୍କର ଏହି ରୂପର ବିବିଧ ବୈଶିଷ୍ଟ୍ୟକୁ ଅତ୍ୟନ୍ତ କାବ୍ୟିକ ଛଟାରେ ବର୍ଣ୍ଣନା କରିଅଛନ୍ତି। କିନ୍ତୁ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ କବିମାନେ ଶ୍ରୀରାଧାଙ୍କର କେତେକ ଅଳଙ୍କାରକୁ ପରିବର୍ତ୍ତିତ କରି ତାହା ସ୍ଥାନରେ ସମକାଳୀନ ସମାଜର ଅଳଙ୍କାରକୁ ଗ୍ରହଣ କରିଅଛନ୍ତି। କାରଣ ସେତେବେଳକୁ ସମାଜରେ ଶ୍ରୀରାଧାଙ୍କର ସେହି ନିର୍ଦ୍ଦିଷ୍ଟ ଅଳଙ୍କାରର ପରିବର୍ତ୍ତନ ଘଟିଥିଲା।

ଶ୍ରୀରାଧାଙ୍କର ଏହି ରୂପ ଓ ବେଶର ବୈଶିଷ୍ଟ୍ୟ ଭଳି ତାଙ୍କଠାରେ କେତେକ ସ୍ୱତନ୍ତ୍ର ଗୁଣାବଳୀ ରହିଛି। ରୂପଗୋସ୍ୱାମୀ ସେଗୁଡ଼ିକୁ ତାଙ୍କର 'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥର ଶ୍ରୀରାଧା ପ୍ରକରଣରେ ଉଲ୍ଲେଖ କରିଅଛନ୍ତି ଓ ତାହା ପରବର୍ତ୍ତୀ ବୈଷ୍ଣବ କବିମାନଙ୍କ ଦ୍ୱାରା କାବ୍ୟ ମଧ୍ୟରେ ଗୃହୀତ ହୋଇଛି। ରୂପଗୋସ୍ୱାମୀଙ୍କ ମତରେ ବୃଷଭାନୁ ନନ୍ଦିନୀ ଶ୍ରୀରାଧା ହେଉଛନ୍ତି— ୧) ମଧୁରା, ୨ ନବବୟସ୍କା, ୩) ଚଳାପାଙ୍ଗା, ୪) ଉଜ୍ଜ୍ୱଳ ସ୍ମିତା,

୬) ଗୃରୁରେଖାଢ୍ୟା, ୭) ଗନ୍ଧୋନ୍ମାଦିତା ମାଧବା, ୭) ସଙ୍ଗୀତ ପ୍ରସରାଭିଜ୍ଞା, ୮) ରମ୍ୟବାକ୍, ୯] ନର୍ମ ପଣ୍ଡିତା, ୧୦) ବିନୀତା, ୧୧] କରୁଣାପୂର୍ଣ୍ଣା, ୧୨] ବିଦଗ୍ଧା, ୧୩] ପଟବନ୍ୱିତା, ୧୪] ଲଜ୍ଜାଶୀଳା, ୧୫] ସୁମର୍ଯ୍ୟାଦା, ୧୬] ଧୈର୍ଯ୍ୟଶାଳିନୀ, ୧୭] ଗାମ୍ଭୀର୍ଯ୍ୟଶାଳିନୀ, ୧୮] ସୁବିଳାସା, ୧୯] ମହାଭାବ ପରମୋତ୍କର୍ଷ ତର୍ଷିଣୀ, ୨୦] ଗୋକୁଳ ପ୍ରେମ ବସତି, ୨୧] ଜଗତ୍ ଶ୍ରେଣୀ ଲସଦ୍ୟଶା, ୨୨] ଗୁର୍ବର୍ପିତ ଗୁରୁ ସ୍ନେହା, ୨୩] ସଖୀ ପ୍ରଣୟିତା ବଶା, ୨୪] କୃଷ୍ଣ ପ୍ରିୟାବଳୀ ମୁଖ୍ୟା, ୨୫] ସନ୍ତତାଶ୍ରବକେଶବା । ଓଡ଼ିଆ କାବ୍ୟମାନଙ୍କରେ ବର୍ଣ୍ଣିତ ଶ୍ରୀରାଧାଙ୍କର ଏହିସବୁ ଗୁଣଗୁଡ଼ିକୁ ସ୍ୱତନ୍ତ୍ର ଭାବେ ଉଦ୍ଧୃତି ପ୍ରଦାନ ପୂର୍ବକ ଆଲୋଚନା କରିବା ଏଠାରେ ସମ୍ଭବ ନୁହେଁ । ତେଣୁ କେବଳ ଶ୍ରୀରାଧାଙ୍କର ଏହି ଗୁଣଗୁଡ଼ିକ ସମ୍ପର୍କରେ ସମ୍ୟକ୍ ସୂଚନା ଦିଆଯାଉଅଛି ।

ଶ୍ରୀରାଧାଙ୍କର ମାଧୁର୍ଯ୍ୟ ହିଁ ତାଙ୍କର **ମଧୁରା** ଗୁଣ । ଏହି ଗୁଣ ଦ୍ୱାରା ଶ୍ରୀକୃଷ୍ଣଙ୍କ ଆଖି ଶ୍ରୀରାଧାଙ୍କଠାରେ ଲାଖି ରହିଥାଏ । ଶ୍ରୀରାଧାଙ୍କର ମାଧୁର୍ଯ୍ୟକୁ କବିମାନେ ଲାବଣ୍ୟ ସିନ୍ଧୁର ଲହରୀ ଭାବେ ବର୍ଣ୍ଣନା କରିଥିବା ଦେଖାଯାଏ । **ନବବୟା** ଅର୍ଥ ନବଯୌବନା । ଚୈତନ୍ୟ ପନ୍ଥୀ ବୈଷ୍ଣବ ପରମ୍ପରାରେ ଶ୍ରୀରାଧା ନବଯୌବନା ଭାବେ ଗୃହୀତା ହୋଇଛନ୍ତି । ନବଯୌବନର ଗୁରୁ ଭାରରେ ଶ୍ରୀରାଧାଙ୍କଠାରେ ମଦାଳସ ଗତି ଦେଖାଯାଇଥାଏ ଓ ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗରେ ଲାବଣ୍ୟର ତରଙ୍ଗ ପ୍ରବାହିତ ହୋଇଥାଏ । ଓଡ଼ିଆ ବୈଷ୍ଣବ କବିମାନେ ଶ୍ରୀରାଧାଙ୍କର ଯୌବନ ବର୍ଣ୍ଣନା କାଳରେ ତାଙ୍କର ଏହି ନବବୟା ଗୁଣଟିକୁ ଚମତ୍କାର ଭାବରେ ବର୍ଣ୍ଣନା କରିଅଛନ୍ତି । ଦୃଷ୍ଟିରେ ଚଞ୍ଚଳତା ହେଉଛି ଶ୍ରୀରାଧାଙ୍କର ଏକ ବିଶିଷ୍ଟ ଗୁଣ । ଏହି ଦୃଷ୍ଟିରେ ଥାଏ ପ୍ରେମଦ୍ୟୋତକ ଭାବ ଓ କୃଷ୍ଣ ଆକର୍ଷଣୀ ମାୟା । କବିମାନେ ସେଥିପାଇଁ ଶ୍ରୀରାଧାଙ୍କୁ **ଚଳାପାଙ୍ଗୀ** ଭାବେ ଉଲ୍ଲେଖ କରି ତାଙ୍କର ଦୃଷ୍ଟିକୁ ବିଭିନ୍ନ ଉପମା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଶ୍ରୀରାଧାଙ୍କୁ **ଉଜ୍ଜ୍ୱଳସ୍ମିତା** କହିବାର ତାତ୍ପର୍ଯ୍ୟ ହେଉଛି ତାଙ୍କର ହାସ୍ୟର ମୃଦୁତା ଓ ଉଜ୍ଜ୍ୱଳତାର ପରାକାଷ୍ଠା ନାହିଁ । ତାଙ୍କର ମୃଦୁ ହାସ୍ୟ ରକ୍ତିମ ଅଧରରେ ହୀରାର ଝଲକ ସୃଷ୍ଟି କରି ଜଗତକୁ ବିମୋହିତ କରିଥାଏ ।

ଶ୍ରୀରାଧା ଉତ୍ତମ ଜାତୀୟା ନାରୀ ହେତୁ ତାଙ୍କର ପଦଯୁଗଳ ବତିଶ ଲକ୍ଷଣ ଯୁକ୍ତ । ଏହି ପଦଦ୍ୱୟର ତଳ ଭାଗରେ ଚନ୍ଦ୍ରରେଖାଦି ବିଭିନ୍ନ ରେଖା ବଳୟ, ପୁଷ୍ପ, ବଲ୍ଲୀ ଓ କୁଣ୍ଡଳ ଆଦିର ଚିହ୍ନଥିବାରୁ ତାଙ୍କୁ **ଗୁରୁ ସୌଭାଗ୍ୟ-ରେଖାଢ଼୍ୟା** କୁହାଯାଇଥାଏ । ପୁନଶ୍ଚ ସେ ଯେହେତୁ ଉତ୍ତମ ଜାତୀୟ ନାୟିକା । ତେଣୁ ସୁଗନ୍ଧଯୁକ୍ତା ତାଙ୍କ ଶରୀରର ଏଇ ସୁଗନ୍ଧ ଶ୍ରୀକୃଷ୍ଣଙ୍କୁ କାମ ଭାବରେ ଉନ୍ମାଦିତ କରିଥାଏ । ସେଥିପାଇଁ ଶ୍ରୀରାଧା ହେଉଛନ୍ତି **ଗନ୍ଧୋନ୍ମାଦିତ-ମାଧବା** । ସଙ୍ଗୀତ ବିଦ୍ୟାରେ ଶ୍ରୀରାଧାଙ୍କର ପାରଦର୍ଶିତା କିଛି କମ୍ ନୁହେଁ । ତାଙ୍କର କଣ୍ଠ ଧ୍ୱନି ବୀଣା ସ୍ୱର ଓ କୋକିଳର ଧ୍ୱନିକୁ ଜିଣିଥିବାରୁ ସେ **ସଙ୍ଗୀତ ପ୍ରସରାଭିଜ୍ଞା** ଭାବେ କଥିତା ହୋଇଛନ୍ତି । ଶ୍ରୀରାଧାଙ୍କର ସଙ୍ଗୀତ ଏବଂ ଇଙ୍ଗିତପୂର୍ଣ୍ଣ ବାଣୀବିଳାସରେ ଯୋଗୀର ସମାଧି ଭାଙ୍ଗି ଯାଇପାରେ ବୋଲି କବି ବର୍ଣ୍ଣନା କରିଛନ୍ତି । (ବି. ଚ. ୪୬/୨୩-୨୪) କେବଳ ସଙ୍ଗୀତ ନୁହେଁ ରମ୍ୟ ବାଣୀ ପ୍ରକାଶ କରିବାରେ ଶ୍ରୀରାଧା ମଧ୍ୟ ସର୍ବଶ୍ରେଷ୍ଠ ନାୟିକା । ତାଙ୍କ ଶ୍ରୀମୁଖ ବଚନ ଅତ୍ୟନ୍ତ ମଧୁର ଓ ସୁନ୍ଦର ହେତୁ ସେ **ରମ୍ୟବାକ୍** ଭାବେ ବର୍ଣ୍ଣିତା । ପ୍ରେମ କ୍ରିଡ଼ାବେଳେ ଶ୍ଲେଷ ଗର୍ଭିକ ପାଣ୍ଡିତ୍ୟପୂର୍ଣ୍ଣ କଥା କହିବାରେ ଶ୍ରୀରାଧା ପ୍ରବୀଣା ହେତୁ ତାଙ୍କୁ **ନର୍ମପଣ୍ଡିତା** ଭାବେ ଗ୍ରହଣ କରାଯାଇଛି । ଅନ୍ୟାର୍ଥରେ ଏହାକୁ ରତି ଶାସ୍ତ୍ରରେ ପଣ୍ଡିତା ଥିବା କୁହାଯାଇପାରେ । ବିନୀତ ଭାବ ଶ୍ରୀରାଧାଙ୍କର ଏକ ବିଶିଷ୍ଟ ଗୁଣ ହୋଇଥିବାରୁ ସେ **ବିନୀତା** । ଚୈତନ୍ୟ ପନ୍ଥୀ ବୈଷ୍ଣବ କବିମାନେ ଶ୍ରୀରାଧାଙ୍କୁ ପରମ କରୁଣାମୟୀ, ଭକ୍ତ ବତ୍ସଳା, କୃଷ୍ଣ ବାଞ୍ଛା ବିଧାୟିନୀ ରୂପେ ବର୍ଣ୍ଣନା କରି ତାଙ୍କୁ **କରୁଣା ପୂର୍ଣ୍ଣା** ଓ ସେ ବିଭିନ୍ନ କଳାବିଦ୍ୟା ଓ କଳା ବିଳାସରେ ନିପୁଣା ହେତୁ ତାଙ୍କୁ **ବିଦଗ୍ଧା** ରୂପେ ବର୍ଣ୍ଣନା କରିଛନ୍ତି । ଶ୍ରୀରାଧା ଅତ୍ୟନ୍ତ ଚତୁରା ଓ ପ୍ରତ୍ୟୁତ୍ପନ୍ନମତି ହୋଇଥିବାରୁ ତାଙ୍କୁ **ପଟୁବାନ୍ୱିତା,** ଲଜ୍ଜାଭାବ ପ୍ରକାଶ କରୁଥିବାରୁ **ଲଜ୍ଜାଶୀଳା,** ନାରୀ ସୁଲଭ ସମସ୍ତ ମର୍ଯ୍ୟାଦାର ଅଧିକାରଣୀ ହେତୁ **ସୁମର୍ଯ୍ୟାଦା,** ଶ୍ରୀକୃଷ୍ଣଙ୍କ ପ୍ରେମ ପ୍ରାପ୍ତିରେ ଅଖଣ୍ଡ ଧୈର୍ଯ୍ୟ ରକ୍ଷା କରିଥିବାରୁ ତାଙ୍କୁ **ଧୈର୍ଯ୍ୟଶାଳିନୀ,** ଶ୍ରୀରାଧା ପ୍ରେମରେ ଅଧୀର ହେଲେ ମଧ୍ୟ ଗାମ୍ଭୀର୍ଯ୍ୟ ରକ୍ଷା କରିଥିବାରୁ ତାଙ୍କୁ **ଗାମ୍ଭୀର୍ଯ୍ୟଶାଳିନୀ** ଭାବେ ବୈଷ୍ଣବ କବିମାନେ

ବର୍ଣ୍ଣନା କରିଅଛନ୍ତି । ଏତଦ୍ ବ୍ୟତୀତ ରାଧାଙ୍କଠାରେ 'ବିଳାସ' ନାମକ ପ୍ରେମାଳଙ୍କାର ଉତ୍ତମ ରୂପେ ବିକାଶ ଲାଭ କରେ ବୋଲି ସେ **ସୁବିଳାସା** ନାମରେ ଖ୍ୟାତା । 'ବିଳାସ' ଅଳଙ୍କାର ଅର୍ଥ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ପ୍ରେମ ଭାବ ଜାତ ହେବା କାଳରେ ଲଜ୍ଜାବଶତଃ ରାଧାଙ୍କର ଚଞ୍ଚଳ ବକ୍ର ଚାହାଣି ଓ ମୃଦୁ ହାସ୍ୟ । ଶ୍ରୀରାଧାଙ୍କୁ ମହାଭାବ ପରମୋତ୍କର୍ଷତର୍ଷିଣୀ ଭାବେ ଗ୍ରହଣ କରାଯାଇଛି । ଅର୍ଥାତ୍ ଶ୍ରୀରାଧା ମହାଭାବର ଚରମୋତ୍କର୍ଷ ଅବସ୍ଥା ମାଦନ ଭାବକୁ ପ୍ରାପ୍ତା ହେଲେ, ସେ କୃଷ୍ଣ ଭାବରେ ବିହ୍ୱଳା ହୋଇ ପାଗଳିନୀ ପରି ହୋଇ ଉଠନ୍ତି । ଏହି ସମୟରେ ତାଙ୍କଠାରେ ଅଷ୍ଟ ସାତ୍ତ୍ୱିକ ଲକ୍ଷଣମାନ ପ୍ରକାଶିତ ହୋଇଥାଏ ଓ ଜୀବନ ମାତ୍ର ଯିବା ପାଇଁ ବାକି ଥାଏ । ଶ୍ରୀରାଧାଙ୍କର ଏବଂବିଧ ଅବସ୍ଥାକୁ ତାଙ୍କର **ମହାଭାବ ପରମୋତ୍କର୍ଷିଣୀ** ଅବସ୍ଥା କୁହାଯାଇଥାଏ ! କୃଷ୍ଣ ପ୍ରେମରେ ବିହ୍ୱଳିତା ଶ୍ରୀରାଧାଙ୍କର ଏହି ଅବସ୍ଥା ଓଡ଼ିଆ କୃଷ୍ଣ କାବ୍ୟମାନଙ୍କରେ ବହୁଳ ଭାବେ ବର୍ଣ୍ଣିତ ହୋଇଛି । ଶ୍ରୀରାଧା ଗୋପପୁରରେ ସମସ୍ତଙ୍କର ସ୍ନେହ ଭାଜନା । ସମଗ୍ର ଗୋକୁଳ ବାସୀଙ୍କର ପ୍ରିୟ ହେତୁ ସେ **ଗୋକୁଳ ପ୍ରେମ ବସତି** ଗୁଣର ଅଧିକାରିଣୀ । ଶ୍ରୀରାଧାଙ୍କର ରୂପ ଲାବଣ୍ୟ ଓ ପ୍ରେମର ମହିମା ସମଗ୍ର ବିଶ୍ୱବିଖ୍ୟାତ ହେତୁ ସେ **ଜଗତ୍ ଶ୍ରେଣୀ ଲସଦ୍ୟଶା** । ତେଣୁ କବିମାନେ ତାଙ୍କୁ ବିଶ୍ୱ ବିଭବା, ବିଶ୍ୱ-ପବିତ୍ର-ପ୍ରେମରସ ଦାତ୍ରୀ, ବିଧାତା ସୃଷ୍ଟିର ଶ୍ରେଷ୍ଠ ପ୍ରତୀକ ଭାବେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାଙ୍କର ବିଶ୍ୱ ମୋହିନୀଗୁଣ ନିକଟରେ ବାଣୀ, ଗଉରୀ ଓ ଲକ୍ଷ୍ମୀ ଆଦିଙ୍କର ନ୍ୟୂନତା ପ୍ରତିପାଦନ କରିଛନ୍ତି । ଶ୍ରୀରାଧା ଗୁରୁଜନମାନଙ୍କର ଅନାବିଳ ସ୍ନେହଲାଭ କରିବାରେ ସମର୍ଥା ହେତୁ ସେ **ଗୁର୍ବର୍ପିତ ଗୁରୁସ୍ନେହା** ଭାବେ ସ୍ୱୀକୃତ । ଯଶୋଦାଙ୍କ ହୃଦୟରେ ପାକ କଳା କଳାରେ ରାଧା ଯେଭଳି ସ୍ନେହ ଶ୍ରଦ୍ଧା ଲାଭ କରିଥାନ୍ତି, ତାହା ତାଙ୍କର ଏହି ଗୁଣର ପରିଚୟ ପ୍ରଦାନ କରିଥାଏ । ସଖୀମାନଙ୍କ ପ୍ରତି ଶ୍ରୀରାଧାଙ୍କର ଅତ୍ୟଧିକ ସ୍ନେହ ହିଁ ବିନିମୟରେ ଶ୍ରୀରାଧାଙ୍କ ପ୍ରତି ସଖୀମାନଙ୍କର ତଦନୁରୂପ ସ୍ନେହ ପ୍ରକାଶିତ ହୋଇଥିବାରୁ ଶ୍ରୀରାଧା **ସଖୀ ପ୍ରଣୟିତାବଶା** ଭାବେ ପରିଚିତା । ସେହିଭଳି ଶ୍ରୀକୃଷ୍ଣଙ୍କର ଅସଂଖ୍ୟ ପ୍ରିୟାମାନଙ୍କ ମଧ୍ୟରେ ଶ୍ରୀରାଧା ମୁଖ୍ୟା ହୋଇଥିବାରୁ ସେ **କୃଷ୍ଣପ୍ରିୟାବଳୀ**

**ମୁଖ୍ୟା,** ଶ୍ରୀରାଧାଙ୍କ **ମହାମାୟ୍** ପ୍ରେମ ନିକଟରେ ଶ୍ରୀକୃଷ୍ଣ ସର୍ବଦା ଅଧୀନତା ସ୍ୱୀକାର କରିଥିବାରୁ ସେ **ସନ୍ନତାଶ୍ରିତ କେଶବା** ଓ ବୃନ୍ଦାବନ ଧାମର ଈଶ୍ୱରୀ ହେତୁ **ବୃନ୍ଦାବନେଶ୍ୱରୀ** ଭାବେ କଥିତା । ଶ୍ରୀରାଧାଙ୍କୁ ବୃନ୍ଦା-ବନେଶ୍ୱରୀ ଭାବେ ପ୍ରତିପାଦନ କରିବାକୁ ଯାଇ ପଦ୍ମପୁରାଣରେ କୁହାଯାଇଛି- "ବୃନ୍ଦାବନାଧିପତ୍ୟଂ ଚ ଦତ୍ତଂ ତସ୍ମୈ ପ୍ରସୀଦତା, କୃଷ୍ଣେନାନ୍ୟତ୍ର ଦେବୀ ତୁ ରାଧା ବୃନ୍ଦାବନ ବନେ ।" ବୃନ୍ଦାବନ ବା ନିତ୍ୟ ଗୋଲୋକ ଭୂମି ସମସ୍ତ ଭଗବତ୍ ଧାମର ମୂଳ ହେତୁ ଶ୍ରୀରାଧା ସମସ୍ତ ଭଗବତ୍ ଧାମର ଈଶ୍ୱରୀ ରୂପେ ପ୍ରମାଣିତା ହୋଇଛନ୍ତି । ଶ୍ରୀରାଧାଙ୍କୁ ମୂଳା ପ୍ରକୃତି ଓ ସମସ୍ତ ଦେବୀଗଣର ଶକ୍ତିର ମୂଳ ଭାବେ ଗୃହୀତ ହୋଇଥିବାରୁ ତାଙ୍କୁ ସମସ୍ତ ଭଗବତ୍ ଧାମର ମୂଳ ବା ଈଶ୍ୱରୀ କହିବାରେ କିଛି ଅସମୀଚୀନତା ନାହିଁ ।

ଶ୍ରୀରାଧା ହେଉଛନ୍ତି **ରାସେଶ୍ୱରୀ** । ଏହା ନାରଦ ପଞ୍ଚରାତ୍ରରେ ସ୍ୱୀକୃତ । ଯଥା—"ସ୍ୱୟଂ ରାସେଶ୍ୱରୀ ପରା ବୃନ୍ଦାବନେ ଚ ଯା ଦେବୀ ପରିପୂର୍ଣ୍ଣତମା ସତୀ" (୨\୩/୬୫) ଶ୍ରୀରାଧାଙ୍କୁ ରାସେଶ୍ୱରୀ କହିବାର ତାତ୍ପର୍ଯ୍ୟ ହେଉଛି—ରାସଲୀଳା ସର୍ବୋତ୍ତମ ମଧୁର ରସର ଲୀଳା ହେତୁ ରାସ ସ୍ଥଳ ହେଉଛି ସମସ୍ତ ରସର ତଥା ଶ୍ରେଷ୍ଠ ରସର ଉତ୍ପତ୍ତି ସ୍ଥଳ । ଶ୍ରୀରାଧାଙ୍କ ଅନୁପସ୍ଥିତିରେ ରାସଲୀଳା ସାର୍ଥକ ହୋଇପାରେ ନାହିଁ । କାରଣ ରସଘନ ବିଗ୍ରହ ଭଗବାନ୍ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠ ରସାଂଶ ହେଉଛନ୍ତି ଶ୍ରୀରାଧା । ଏହି ରସାଂଶ ସହିତ ରସଘନ ବିଗ୍ରହର ମିଳନରେ କେବଳ ଶ୍ରେଷ୍ଠ ମଧୁର ରସର ପ୍ରବାହ ସମ୍ଭବପର ହୋଇଥାଏ । ସମସ୍ତ ଗୋପାଙ୍ଗନାମାନେ ଉପସ୍ଥିତ ଥିଲେ ମଧ୍ୟ ଶ୍ରୀରାଧାଙ୍କର ଉପସ୍ଥିତି ବିନା ରାସଲୀଳା ଅସମ୍ଭବ ହୋଇଥାଏ । ତେଣୁ 'ଶ୍ରୀଚୈତନ୍ୟ ଚରିତାମୃତ'ରେ କୁହାଯାଇଛି—

"ସମ୍ୟକ୍ ସାର ବାସନା କୃଷ୍ଣେର ରାସଲୀଳା<br>
ରାସଲୀଳା ବାସନାତେ ରାଧିକା ଶୃଙ୍ଖଳା ।<br>
ତାହା ବିନୁ ରାସଲୀଳା ନାହି ଭାୟ ଚିତ୍ତେ<br>
ମଣ୍ଡଳୀ ଛାଡ଼ି ଆଗେଲ୍ଲ ରାଧା ଅନ୍ୱେଷିତେ ।"

(ମଧ୍ୟ ଲୀଳା, ୮\୮୫-୮୬)

ରାସ ମଣ୍ଡଳୀରେ ଶ୍ରୀରାଧାଙ୍କର ଉପସ୍ଥିତି ଥିଲେ ତାହା ମହାରାସରେ ପରିଣତ ହୁଏ ଓ ଶ୍ରୀରାଧାଙ୍କର ଅନୁପସ୍ଥିତି ଘଟିଲେ ତାହା ରାସ ନାମରେ କଥିତ ହୋଇଥାଏ । କିନ୍ତୁ ଶ୍ରୀରାଧାଙ୍କ ବିନା ଗୋପୀମାନଙ୍କର ରସମୂର୍ତ୍ତି ସାର୍ଥକତା ଲାଭ କରିପାରନ୍ତି ନାହିଁ । ରାସକ୍ଷେତ୍ରରେ ଶ୍ରୀରାଧାଙ୍କର ଏହିଭଳି ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିବାରୁ ବୈଷ୍ଣବ ପରମ୍ପରାରେ ସେ ରାସେଶ୍ୱରୀ ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି । ଶ୍ରୀରାଧାଙ୍କର ଏହି ସମସ୍ତ ଗୁଣାବଳୀଗୁଡ଼ିକ ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବ ଧର୍ମରେ ବ୍ରହ୍ମତ ଓ ବଙ୍ଗଳା କାବ୍ୟ କବିତା ମଧ୍ୟରେ ବର୍ଣ୍ଣିତ ହୋଇଅଛି । ସେଥିପାଇଁ ଏକକ ଉଦାହରଣ ନ ଦେଇ କୃଷ୍ଣ କାବ୍ୟରେ ବର୍ଣ୍ଣିତ ଶ୍ରୀରାଧାଙ୍କର ସମସ୍ତ ରୂପ, ଗୁଣ, ବେଶ ଓ ବୈଶିଷ୍ଟ୍ୟକୁ ଏହି ପ୍ରସଙ୍ଗରେ କେବଳ ତାତ୍ତ୍ୱିକ ବିଶ୍ଳେଷଣ କରାଯାଇଛି । ଏହା ପାଠକମାନଙ୍କ ମନରେ ଓଡ଼ିଆ କୃଷ୍ଣ କାବ୍ୟରେ ବର୍ଣ୍ଣିତ ଶ୍ରୀରାଧାତତ୍ତ୍ୱ ସମ୍ପର୍କରେ ସ୍ପଷ୍ଟ ଅବଧାରଣା ହେବ—ଏଥିରେ ସନ୍ଦେହ ନାହିଁ ।

## (ଗ) ଗୋପୀତତ୍ତ୍ୱ—

ଗୋପୀତତ୍ତ୍ୱ କହିଲେ ମୁଖ୍ୟତଃ ଗୋପୀଭାବକୁ ହିଁ ବୁଝାଇଥାଏ । ଏହି ଗୋପୀ ଭାବ ହେଉଛି ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମର ମୁଖ୍ୟ ବିଭବ । 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ଏହି ଗୋପୀଭାବ ସମ୍ପର୍କରେ କୁହାଯାଇଛି—

"ଗୋପୀଗଣଙ୍କର ପ୍ରେମ ଅଧିରୂଢ଼ ଭାବ ନାମ
ବିଶୁଦ୍ଧ ନିର୍ମଳ ପ୍ରେମ କଭୁ ନହେ କାମ ।"

(ଆଦିଲୀଳା, ୪ର୍ଥ ପରିଚ୍ଛେଦ, ପୃ-୫)

ଗୋପୀମାନଙ୍କର ପ୍ରେମ କାମଗନ୍ଧ ହୀନ ସ୍ୱାଭାବିକ ପ୍ରେମ । ନିର୍ମଳ ଉଜ୍ଜ୍ୱଳ ଦଗ୍ଧ ହେମ ସଦୃଶ । ଏମାନେ ଲୋକଧର୍ମ, ବେଦଧର୍ମ, ଦେହଧର୍ମ, କର୍ମ, ଲଜ୍ଜା, ଧୈର୍ଯ୍ୟ, ଦେହସୁଖ, ଆତ୍ମ ସୁଖ, ଦୁସ୍ତ୍ୟଜ୍ୟ ଆର୍ଯ୍ୟପଥ ଓ ପରିଜନ ମାନଙ୍କୁ ତ୍ୟାଗ କରି ସ୍ୱଜନ ତାଡ଼ନାର ଶିକାର ହୋଇ ମଧ୍ୟ କୃଷ୍ଣଙ୍କଠାରେ ଭୃଢ଼ ଅନୁରାଗ ପ୍ରକାଶ କରିଥିଲେ । ତେଣୁ 'ନାରଦ ଭକ୍ତିସୂତ୍ର'ରେ ଏ ସମ୍ପର୍କରେ କୁହାଯାଇଛି, "ଯଥା ବ୍ରଜ ଗୋପୀକାନାମ୍ ।"

ଭକ୍ତିମାର୍ଗର ଚରମ ସୋପାନ ହେଉଛି ପ୍ରେମ ଏବଂ ପ୍ରେମର ଶୀର୍ଷାବସ୍ଥା ହେଉଛି ମହାଭାବ । ଗୋପୀଗଣ ହେଉଛନ୍ତି ଏହି ମହାଭାବର ପ୍ରତୀକ ।

ତେଣୁ ଶ୍ରୀରୂପଗୋସ୍ୱାମୀ ତାଙ୍କର 'ଲଘୁଭାଗବତାମୃତ' ଗ୍ରନ୍ଥରେ ଆଦିପୁରାଣରୁ ଉଦ୍ଧାର କରି କହିଛନ୍ତି—

ନ ମାଂ ଜାନନ୍ତି ମୁନୟୋ ଯୋଗିନଶ୍ଚ ପରନ୍ତପ
ନ ଚ ରୁଦ୍ରା ଦୟୋ ଦେବା ଯଥା ଗୋପ୍ୟୋ ବଦନ୍ତି ମାମ୍ ''

କୃଷ୍ଣଙ୍କର ସୁଖବର୍ଦ୍ଧନ କରିବା ଗୋପୀମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ସେମାନେ ତାଙ୍କର ଦେହ ଓ ମନ ସମ୍ପୂର୍ଣ୍ଣ ଭାବେ କୃଷ୍ଣଙ୍କୁ ସମର୍ପଣ କରି ଦେଇଥିଲେ । ସ୍ୱଦେହ ପ୍ରତି ସେମାନଙ୍କର ମମତା ନଥିଲା । କୃଷ୍ଣଙ୍କର ସମ୍ଭୋଗସୁଖ ବୃଦ୍ଧି ପାଇଁ ସେମାନେ କେବଳ ଦେହର ମାର୍ଜନ ଓ ଭୂଷଣ ପରିଧାନ କରୁଥିଲେ । ସ୍ୱ ସୁଖବାଞ୍ଛା ନଥିଲେ ହେଁ ଗୋପୀଗଣ କୃଷ୍ଣ ଦର୍ଶନରେ କୋଟିଗୁଣ ସୁଖ ଅନୁଭବ କରୁଥିଲେ । ଅବଶ୍ୟ ଗୋପିକା ଦର୍ଶନରେ କୃଷ୍ଣ ଆନନ୍ଦିତ ହୁଅନ୍ତି, ମାତ୍ର ଗୋପୀଗଣ ତାହାଠାରୁ କୋଟି ଗୁଣରେ ସୁଖ ଆସ୍ୱାଦନ କରିଥାନ୍ତି । ଗୋପୀମାନଙ୍କର ଏହି କୃଷ୍ଣ ପ୍ରେମ କାମଗନ୍ଧହୀନ ଭାବରେ ପ୍ରତିପାଦିତ କରାଯାଇ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ କୁହାଯାଇଛି—

''ଆତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ତାରେ ବଲି କାମ
କୃଷ୍ଣେନ୍ଦ୍ରିୟ ପ୍ରୀତି ଇଚ୍ଛା ଧରେ ପ୍ରେମ ନାମ ।''
(ଆଦିଲୀଳା, ୪ର୍ଥ ପରିଚ୍ଛେଦ, ପୃ-୫୬)

ଗୋପାଙ୍ଗନାମାନଙ୍କଠାରେ କେବଳ ଏହି କୃଷ୍ଣୋକ୍ତ ପ୍ରୀତି ବାଞ୍ଛା ଲକ୍ଷିତ ହୋଇଥାଏ ।

ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଧରେ ଗୋପୀ ପ୍ରେମର ମହତ୍ତ୍ୱ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଶାରଦୀୟ ମହାରାସ ରଜନୀରେ ଶ୍ରୀକୃଷ୍ଣ ଯେତେବେଳେ ରାସସ୍ଥଳୀରୁ ଅନ୍ତର୍ହିତ ହୋଇଗଲେ, ସେତେବେଳେ ବିରହିଣୀ ଗୋପୀଗଣ ଶ୍ରୀକୃଷ୍ଣଙ୍କୁ ନପାଇ ଯମୁନା କୂଳରେ ବସି ବିଳାପ କୃଷ୍ଣଙ୍କ ପ୍ରତି ଯେଉଁ ଭକ୍ତି ପ୍ରକାଶ କରିଥିଲେ, ତନ୍ମଧ୍ୟରେ ଗୋପାଙ୍ଗନା ମାନଙ୍କର ଐକାନ୍ତିକ କୃଷ୍ଣ ପ୍ରେମର ମହତ୍ତ୍ୱ ସୂଚିତ ହୋଇଛି । ରାସଲୀଳା

ସମୟରେ ଗୋପୀଙ୍କ ସହିତ କୃଷ୍ଣଙ୍କର ଯେଉଁ କାମକ୍ରୀଡ଼ାର ବର୍ଣ୍ଣନା ଦେଖିବାକୁ ମିଳେ, ତାହା କାମ କ୍ରୀଡ଼ା ନଥିଲା । ଶ୍ରୀବିଶ୍ୱନାଥ ଚକ୍ରବର୍ତ୍ତୀ ଏହାର ଟୀକାରେ ଲେଖିଛନ୍ତି—ପ୍ରାକୃତ କାମକ୍ରୀଡାରେ ଚୁମ୍ବନାଲିଙ୍ଗନାଦି ହେଉଛି ମିଳନର ନିମିତ୍ତ ମାତ୍ର ହୋଇଥାଏ, ଏଥିରେ ବର୍ଣ୍ଣିତ ଚୁମ୍ବନାଲିଙ୍ଗନାଦି ସେହି ଉଦ୍ଦେଶ୍ୟରେ ଅଭିପ୍ରେତ ନୁହେଁ । ଏହା କେବଳ ପ୍ରୀତି ପ୍ରକାଶର ଦ୍ୱାର ମାତ୍ର ।

ଶ୍ରୀକୃଷ୍ଣଙ୍କ ସହିତ ଗୋପାଙ୍ଗନାମାନଙ୍କର କାନ୍ତା ସିଦ୍ଧଗୀ ଲୀଳାକୁ କାମଲୀଳା କୁହାଯାଇ ନପାରେ । ଏହା ହ୍ଲାଦିନୀ ଶକ୍ତିର ଏକ ଲୀଳା ବୈଚିତ୍ର୍ୟ ବିଶେଷ । ଏଠାରେ କହି ରଖିବା ଉଚିତ ଯେ ମାୟାବଦ୍ଧ ଜୀବ କାମକ୍ରୀଡାର ଅଧୀନ । ଶ୍ରୀକୃଷ୍ଣ ହେଉଛନ୍ତି ପରବ୍ରହ୍ମ ଏବଂ ସ୍ୱୟଂ ଭଗବାନ୍ ବା ସଚ୍ଚିଦାନନ୍ଦ ବିଗ୍ରହ । ସେ ନିଜେ ମଧ୍ୟ ମନ୍ମଥ ମନ୍ମଥନକାରୀ ଏବଂ ଗୋପୀଗଣ ତାଂକର ସ୍ୱରୂପ ଶକ୍ତି ଅନ୍ତର୍ଭୁକ୍ତ ହେତୁ ସେମାନଂକର ପ୍ରେମ ଲୀଳାକୁ କାମ କ୍ରୀଡାଠାରୁ ବହୁ ଊର୍ଦ୍ଧ୍ୱରେ ଅବସ୍ଥାପିତ କରାଯାଇ, ସେହି ରାସଲୀଳାର ନିରନ୍ତର ଶ୍ରବଣ ଓ ମନନରେ ଭକ୍ତ ଭଗବାନ୍‌ଂକ ଠାରେ ପରାଭକ୍ତି ଲାଭ କରି କାମ ବାସନା ପରିତ୍ୟାଗ କରିବାରେ ସମର୍ଥ ହୁଏ ବୋଲି କୁହାଯାଇଛି । ଏ ସମ୍ପର୍କରେ 'ଶ୍ରୀଚୈତନ୍ୟ ଚରିତାମୃତ'ର ଉଦ୍ଧୃତିଟି ଉଲ୍ଲେଖ ଯୋଗ୍ୟ ।

> "ବ୍ରଜବଧୂ ସଙ୍ଗେ କୃଷ୍ଣେର ରାସାଦି ବିଳାସ
> ଯେଇ ଇହା କହେ ଶୁନେ କରିୟା ବିଶ୍ୱାସ
> ହୃଦ୍‌ରୋଗ କାମ ତା'ର ତତ୍‌କାଳ ହୟ କ୍ଷୟ
> ତିନ ଗୁଣ କ୍ଷୋଭ ନାହିଁ, ମହାଧୀର ହୟ ।"
>
> (ଅନ୍ତ୍ୟଲୀଳା, ପଞ୍ଚମ ପରିଚ୍ଛେଦ, ପୃ ୭୮୫)

ଏହି ବ୍ରଜ ଗୋପୀଗଣ ହେଉଛନ୍ତି ନିତ୍ୟ ଗୋଲୋକସ୍ଥିତ ଶ୍ରୀକୃଷ୍ଣଂକର ସ୍ୱରୂପ ଶକ୍ତି ସ୍ୱମୂର୍ତ୍ତ ସ୍ୱକୀୟା କାନ୍ତା । 'ପଦ୍ମପୁରାଣ'ର ବର୍ଣ୍ଣନାରୁ ଜଣାଯାଏ ଶ୍ରୀକୃଷ୍ଣଂକର ଦାସ, ସଖା, ପିତାମାତା ଓ ପ୍ରେୟସୀବର୍ଗ—ଏ ସମସ୍ତେ ନିତ୍ୟ ଏବଂ କୃଷ୍ଣଂକ ସଦୃଶ ଗୁଣଶାଳୀ । (ପାତାଳଖଣ୍ଡ, ୫୨\୨-୪)

ତେଣୁ ଗୋପାଙ୍ଗନାମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ବିବିଧ ପ୍ରେମ ଲୀଳା ପରକୀୟା ପ୍ରେମ ସଦୃଶ ପ୍ରତିଭାତ ହେଲେ ହେଁ ବାସ୍ତବରେ ତାହା କାମ ଗନ୍ଧଯୁକ୍ତ ପରକୀୟା ପ୍ରେମ ନଥିଲା । ପୁନଶ୍ଚ ଅଦ୍ୱୟ ଜ୍ଞାନ ସ୍ୱରୂପ ଶ୍ରୀକୃଷ୍ଣଙ୍କ ନିକଟରେ ପରବୋଲି କିଛି ନାହିଁ । ଯେ ହେଉଛନ୍ତି ସମସ୍ତ ଓ ସମସ୍ତ ହେଉଛନ୍ତି ଯେ ତାଙ୍କ ନିକଟରେ ପର ଆପଣାର ଭାବ ଆସିବା କୁଆଡୁ ? ଏଥିରୁ ସ୍ପଷ୍ଟ ହୁଏ ଯେ ରାସକ୍ରୀଡା ପରାୟଣା ଗୋପୀଗଣ ଶ୍ରୀକୃଷ୍ଣଙ୍କ ସ୍ୱରୂପ ଶକ୍ତିର ମୂର୍ତ୍ତି ବିଗ୍ରହ ଓ ନିତ୍ୟକାନ୍ତା ବ୍ୟତୀତ ଅନ୍ୟ କେହି ନୁହନ୍ତି । ସେମାନେ ଅପ୍ରାକୃତ ବିଗ୍ରହ । ପ୍ରାକୃତ ଶରୀରରେ ତାଙ୍କର ତାଦାତ୍ମ୍ୟ ମାତ୍ର ଭ୍ରାନ୍ତ ହୋଇଥିଲା ।

ଧାଗାନୁଗା ଭକ୍ତମାନଙ୍କୁ ପ୍ରେମରସ ନିର୍ଯ୍ୟାସ ଆସ୍ୱାଦନ କରାଇବା ପାଇଁ ଭଗବାନ୍ ଶ୍ରୀକୃଷ୍ଣ ମର୍ତ୍ତ୍ୟରେ ପ୍ରକଟିତ ହୋଇଥିଲେ । ଏହି ପ୍ରେମରସ ନିର୍ଯ୍ୟାସ କେବଳ ମହାଭାବ ଅବସ୍ଥାରେ ପରିସ୍ଫୁଟ ହୋଇଥାଏ । କୁଳଧର୍ମ, ବେଦଧର୍ମ, ସ୍ୱଜନ ଆର୍ଯ୍ୟ ପଥାଦି ଦୁସ୍ତ୍ୟଜନୀୟ ବାଧାବନ୍ଧକୁ କୃଷ୍ଣ ପ୍ରେମ ସ୍ରୋତରେ ଭସାଇ ଦେବାର ଅସାଧାରଣ ସାମର୍ଥ୍ୟ କେବଳ ଏହି ମହାଭାବରେ ହିଁ ନିହିତ । ଗୋପୀମାନଙ୍କଠାରେ ଏହି ମହାଭାବର ସ୍ଫୁର୍ତ୍ତି ନିମିତ୍ତ ଶ୍ରୀକୃଷ୍ଣଙ୍କ ଇଚ୍ଛାରେ ଯୋଗମାୟା ଗୋପୀମାନଙ୍କ ହୃଦୟରେ ପରକୀୟା ତତ୍ତ୍ୱର ସଞ୍ଚାର କରାଇଥିଲେ । ଏହାର କାରଣ ହେଉଛି ସ୍ୱକୀୟା ପ୍ରେମ ଅପେକ୍ଷା ପରକୀୟା ପ୍ରେମରେ ଅଧିକ ବ୍ୟାକୁଳତା ଦେଖା ଦେଇଥାଏ । ପୁନଶ୍ଚ ଗୋପାଙ୍ଗନାମାନଙ୍କର ପତିମାନେ ନପୁଂସକ ଥିବାରୁ ସେମାନେ ସ୍ୱପତି ସଙ୍ଗମରୁ ବଞ୍ଚିତା ଥିଲେ । ଏ କଥାକୁ କବି ଅଭିମନ୍ୟୁ ପ୍ରକାଶ କରି କହିଛନ୍ତି—"ସେହିଜେ ପତିମାନେ ନପୁଂସକ । କାନ୍ତ ସଙ୍ଗ ନାହିଁ କେମନ୍ତ ଯାକ ।" (ପ୍ରେମ ଚିନ୍ତାମଣି, ୫୨ ୪୩) । ତେଣୁ ବସ୍ତୁତଃ ଶ୍ରୀକୃଷ୍ଣ ତାଙ୍କର ଦେହଭୋଗୀ ସ୍ୱାମୀ ଥିଲେ । ଏ କଥାକୁ ମଧ୍ୟ ଗୋପାଳୋତ୍ତର ତାପିନୀ ସ୍ୱୀକୃତି ଦେଇଛି । ଯେଉଁଠାରେ ଦୁର୍ବାସା ଗୋପୀଗଣଙ୍କୁ କହୁଛନ୍ତି "ଅହଂ ହି କୃଷ୍ଣୋ ଯୋ ବୋ ହି ପ୍ରେଷ୍ଠଃ" × × "ସ ବୋହି ସ୍ୱାମୀ ଭବତି ।" ଅର୍ଥାତ୍ ଏହି କୃଷ୍ଣ ହେଉଛନ୍ତି ତୁମର ସ୍ୱାମୀ ।" (ଶ୍ଳୋକ-୧୨)

ସ୍ୱାର୍ଥ ଲିପ୍ସାହୀନ ବିଶୁଦ୍ଧ ମନ ମୂଚ ଧକାଶ ପ୍ରେମଲୀଳାରେ

ଗୋପାଙ୍ଗନାଗଣ ଶ୍ରୀକୃଷ୍ଣଙ୍କର ପ୍ରେମର ହୃଦୟ ଜୟ କରିଥିଲେ, ସେ ସବୁର ବର୍ଣ୍ଣନା ଓଡ଼ିଆ ଗୀତିକା ରଚନାରେ ଓ କାବ୍ୟମାନଙ୍କରେ ଅତ୍ୟନ୍ତ ସରସ ଭାବେ ଉପସ୍ଥାପିତ ହୋଇଛି । ଗୋପାଙ୍ଗନାମାନେ ଶ୍ରୀକୃଷ୍ଣଙ୍କ ନିକଟରେ କିଭଳି ତାଙ୍କର ଦେହ, ମନ, ପ୍ରାଣ ସମର୍ପି କରି ଦେଇଥିଲେ, ତାହାର ଭୂରି ଭୂରି ଦୃଷ୍ଟାନ୍ତ ବିଦଗ୍ଧ କବି ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି' ଓ 'ପ୍ରେମ ଚିନ୍ତାମଣି' କାବ୍ୟରେ ରହିଛି । 'ବିଦଗ୍ଧ ଚିନ୍ତାମଣି' କାବ୍ୟର ତୃତୀୟ, ଅଷ୍ଟାଦଶ, ଊନନବତି ଓ ପ୍ରେମ ଚିନ୍ତାମଣିର ଅଣତିରିଶ ଓ ପଞ୍ଚଷଷ୍ଠୀ ଛାନ୍ଦ ମାନଙ୍କରେ ସଂକ୍ଷିପ୍ତ ହେଲେ ହେଁ ସାରଗର୍ଭକ ବର୍ଣ୍ଣନା ରହିଛି । ଏତଦ୍ ବ୍ୟତୀତ ଦେବଦୁର୍ଲ୍ଲଭ ଦାସଙ୍କ ରହସ୍ୟ ମଞ୍ଜରୀ, ଘନକୃଷ୍ଣ ଦାସଙ୍କ ରସକଲ୍ଲୋଳ, ଭକ୍ତଚରଣଙ୍କ 'ମଥୁରାମଙ୍ଗଳ' ପ୍ରଭୃତି କାବ୍ୟ ଓ କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଗୌରଚରଣ ପ୍ରଭୃତି ଅସଂଖ୍ୟ ଗୀତିକାରମାନଙ୍କ ଗୀତିକାରେ ଗୋପାଙ୍ଗନାମାନଙ୍କର ଶ୍ରୀକୃଷ୍ଣୈକପ୍ରଣତା ତଥା ବିଭିନ୍ନ ଲୀଳା ବିଳାସର ମନୋରମ ବର୍ଣ୍ଣନା ପରିଦୃଷ୍ଟ ହୋଇଥାଏ । ଏହିସବୁ ରଚନାରେ ଗୋପୀଭାବର ମହତ୍ତ୍ୱ ସ୍ୱୀକାର କରାଯାଇ, ଗୋପୀ ପ୍ରେମକୁ କୃଷ୍ଣ ପ୍ରାପ୍ତିର ସର୍ବଶ୍ରେଷ୍ଠ ମାଧ୍ୟମ ରୂପେ ନିର୍ଦ୍ଦେଶିତ କରାଯାଇଛି । କବି ଦେବଦୁର୍ଲ୍ଲଭ ଦାସ ସେଥିପାଇଁ ତାଙ୍କର 'ରହସ୍ୟ ମଞ୍ଜରୀ' କାବ୍ୟରେ ପ୍ରେମ ଭକ୍ତିକୁ ସର୍ବଶ୍ରେଷ୍ଠ ଆସନ ପ୍ରଦାନ କରି ଗୋପାଙ୍ଗନାମାନଙ୍କ ସ୍ନେହ ଭକ୍ତିର ଅଧିକାରିଣୀ ଭାବେ ଘୋଷଣା କରିଅଛନ୍ତି । 'ବିଦଗ୍ଧ ଚିନ୍ତାମଣି' କାବ୍ୟର ଅଷ୍ଟାଦଶ ଛାନ୍ଦରେ ବସ୍ତ୍ରହରଣ ଲୀଳା ପ୍ରସଙ୍ଗରୁ ଗୋପୀ ପ୍ରେମର ମହତ୍ତ୍ୱକୁ ଦର୍ଶାଇବା ପାଇଁ ନିମ୍ନରେ ଗୋଟିଏ ଉକ୍ତି ପ୍ରଦତ୍ତ ହେଲା--

"ନିର୍ମଳ ପ୍ରେମ ମନ ଜାଣି ତାଙ୍କର
ହୋଇଲେ ଗୋବିନ୍ଦ ତୋଷ, ସେ ନାଗର
ନୂତନାଙ୍କୁ କହନ୍ତି ମନ୍ଦେ ହସି
ନିଜ ବ୍ରତେ ଅଛ ଯାହା ମନାସି
ନିଷ୍ଠା କରିବି ସେ କଥା ଏଥିପାଇଁ
ସାକ୍ଷୀ ଏ ମୋହନ ବଂଶୀ, ଗୋ ନୂତନା ।
ନବ ଘନ ଧ୍ୱନି ଶୁଣିଲା ଚାତକୀ

ପରାସ୍ତେ ଗୋପିକା ହୋଇଲେ
ନିଜ କରେ କୁସୁମ ମାଳା କଲେ
ନେଇ କୃଷ୍ଣ ଗଳେ ଲମ୍ବାଇ ଆନନ୍ଦେ
ହୁଳହୁଳି ଧ୍ୱନି କଲେ, ସେ ନୂତନା ।"

(୧୯-୨୦)

## (ଘ) ରାସଲୀଳା ତତ୍ତ୍ୱ—

ଚୈତନ୍ୟପନ୍ଥୀ ବୈଷ୍ଣବ ସାହିତ୍ୟରେ ରାସଲୀଳାର ବର୍ଣ୍ଣନା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ବୈଷ୍ଣବ କବିମାନେ ଗୋପାଙ୍ଗନା ଓ ଶ୍ରୀକୃଷ୍ଣଙ୍କ ରାସଲୀଳାକୁ ମୁଖ୍ୟ ବିଷୟବସ୍ତୁ ଭାବେ ଗ୍ରହଣ କରି ଅନେକ କାବ୍ୟ କବିତା ରଚନା କରିଛନ୍ତି । ଏହି ବର୍ଣ୍ଣନା ମଧ୍ୟରେ ରାସଲୀଳାର କେବଳ କାବ୍ୟିକ ବର୍ଣ୍ଣନା କରାଯାଇନାହିଁ, ବରଂ ତତ୍ତ୍ୱ ଦୃଷ୍ଟିରୁ ସେହି ବର୍ଣ୍ଣନାଗୁଡିକ ବୈଷ୍ଣବ ଶାସ୍ତ୍ର ସମ୍ମତ । ଏହି ଦୃଷ୍ଟିରୁ ରାସଲୀଳାର ତାତ୍ତ୍ୱିକ ଦିଗକୁ ଏଠାରେ ଉଲ୍ଲେଖ କରାଯାଉଅଛି ।

ଓଡିଆ ବୈଷ୍ଣବ ସାହିତ୍ୟରେ ବର୍ଣ୍ଣିତ ରାସଲୀଳା ତତ୍ତ୍ୱର ଅବତାରଣା ପୂର୍ବରୁ ପ୍ରଥମେ 'ରାସ' ସମ୍ପର୍କରେ ସମ୍ୟକ୍ ସୂଚନା ଦେବା ଆବଶ୍ୟକ ମନେହୁଏ । 'ରାସ' ଶବ୍ଦଟି 'ରାସ୍' ଶବ୍ଦରୁ ଉତ୍ପତ୍ତି । କୃଷ୍ଣଙ୍କ ଦ୍ୱାରା ପ୍ରସୂତ ଗୋପୀମାନଙ୍କର ମଣ୍ଡଳାକୃତି ନୃତ୍ୟକୁ ବିଷ୍ଣୁପୁରାଣରେ ରାସ ଆଖ୍ୟା ପ୍ରଦାନ କରାଯାଇଛି । (୫।୧୩, ୪୯-୫୦) ଏଠାରେ କୃଷ୍ଣ ଗୋପୀମାନଙ୍କର ହସ୍ତଧାରଣ କରିଛନ୍ତି ଓ ଗୋପୀମାନେ ନିଜ ବଳୟର ଶବ୍ଦ କରି ଶରତ ଗାନରେ ପ୍ରବୃତ୍ତ ହୋଇଅଛନ୍ତି । ଶ୍ରୀମଦ୍‌ଭାଗବତରେ ମଧ୍ୟ ରାସର ବିସ୍ତୃତ ବର୍ଣ୍ଣନା ପରିଦୃଷ୍ଟ ହୋଇଥାଏ । ସେହି ରାସ ବିଳାସ, କ୍ରିୟା ଓ ଯୁଗଳ କ୍ରୀଡା ଭେଦରେ ତିନି ଭାଗରେ ବିଭକ୍ତ ହୋଇଅଛି । ଏତଦ୍‌ବ୍ୟତୀତ ବ୍ରହ୍ମପୁରାଣ, ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ଓ ଦେବୀଭାଗବତ ପ୍ରଭୃତିରେ ରାସର ତଦନୁରୂପ ବର୍ଣ୍ଣନା ଦେଖାଯାଏ । ହରିବଂଶ ପୁରାଣରେ ରାସଲୀଳାର ବର୍ଣ୍ଣନା ନ ଥିଲେ ହେଁ, ସେଥିରେ କୃଷ୍ଣ ଓ ଗୋପାଙ୍ଗନାମାନଙ୍କର ଯେଉଁ ହଲ୍ଲୀଶକ ନୃତ୍ୟର ବର୍ଣ୍ଣନା କରାଯାଇଛି, ତାହା କାମଶାସ୍ତ୍ରୀୟ କ୍ରୀଡା ହେଲେ ମଧ୍ୟ

ହରିବଂଶର ନୀଳକଣ୍ଠ ଟୀକାରେ ହଲ୍ଲୀଶ ଭାବେ କଥିତ ହୋଇଛି । ଭାଗବତର ଟୀକା କରି ଶ୍ରୀଧରସ୍ୱାମୀ ରାସକୁ ବହୁ ନର୍ତ୍ତକୀଯୁକ୍ତ ନୃତ୍ୟ ଭାବେ ଅଭିହିତ କରିଛନ୍ତି । ଶ୍ରୀଧର ସ୍ୱାମୀଙ୍କ ମତରେ ଏଥିରେ ଉଭୟ ସ୍ତ୍ରୀ ଓ ପୁରୁଷ ପରସ୍ପର ହସ୍ତଧାରଣ କରି ଗୀତଗାନ ସହିତ ମଣ୍ଡଳାକୃତିରେ ଭ୍ରମଣ କରି ନୃତ୍ୟ କରିଥାନ୍ତି । 'ସୁବୋଧିନୀ ଟୀକା'ର ରସ ପ୍ରକରଣରେ ଶ୍ରୀବଲ୍ଲଭାଚାର୍ଯ୍ୟ ରାସକୁ ରସ ଅଭିବ୍ୟକ୍ତିକାରିଣୀ ଲୀଳା ଓ ତଦୁପଯୋଗୀ ନୃତ୍ୟ ବୋଲି ଉଲ୍ଲେଖ କରିଅଛନ୍ତି । ଶ୍ରୀଜୀବଗୋସ୍ୱାମୀଙ୍କ ଟୀକାନୁଯାୟୀ ରାସ ହେଉଛି ପରମ-ରସ-କଦମ୍ବମୟ ବ୍ୟାପାର ବିଶେଷ ଓ ପ୍ରେମରସ ପରିପାକାତ୍ମକ କ୍ରୀଡ଼ା । (ବୈଷ୍ଣବ ତୋଷିଣୀ ଟୀକା) ବିଶ୍ୱନାଥ ଚକ୍ରବର୍ତ୍ତୀ ମଧ୍ୟ ରାସ ସମ୍ପର୍କରେ କହିବାକୁ ଯାଇ ଏହାକୁ ନୃତ୍ୟ, ଗୀତ, ଚୁମ୍ବନ ଓ ଆଲିଙ୍ଗନ ମୂଳକ ରସ ଉଦ୍ରେକକାରୀ କ୍ରୀଡ଼ା ବୋଲି ଗ୍ରହଣ କରିଛନ୍ତି । ଏସବୁ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ 'ରାସ' ହେଉଛି ଗୋପୀ ଓ କୃଷ୍ଣଙ୍କର ପ୍ରେମ କ୍ରୀଡ଼ା ବିଶେଷ ।

## ରାସର ଆଙ୍ଗିକ ସ୍ୱରୂପ—

ନୃତ୍ୟ, ସଙ୍ଗୀତ, ଛନ୍ଦ, କାବ୍ୟ, ନାୟକ, ନାୟିକା ଓ ସେମାନଙ୍କର ଭାବ ହିଁ ରାସର ମୁଖ୍ୟ ଆଙ୍ଗିକ । ସେଗୁଡ଼ିକ ସମ୍ପର୍କରେ ନିମ୍ନରେ ଏକ ସ୍ଥୂଳ ଧାରଣା ଦିଆଗଲା ।

**ନୃତ୍ୟ** ନୃତ୍ୟ, ରାସର ପ୍ରଧାନ **ବିଭବ** । ନିର୍ଦ୍ଦିଷ୍ଟ ଛନ୍ଦ, ତାଳ ଓ ଲୟଯୁକ୍ତ ଏବଂ ଶାରୀରିକ ଧାରାରେ ଏହି ନୃତ୍ୟ ପରିବେଷିତ ହୋଇଥାଏ । ତେଣୁ ଏଥିରେ ହସ୍ତ ପଦର ଚାଳନା ସହିତ କଟି, ମସ୍ତକ ଓ ହୃଦୟାଦି ସମସ୍ତ ଅଙ୍ଗର ଚାଳନା ହୋଇଥାଏ । ଏହା ବିଳାସ ମୂଳକ ଓ ଭାବମଣ୍ଡିତ ଏକ ନୃତ୍ୟ । ନୃତ୍ୟ ମଧ୍ୟରେ ଚୁମ୍ବନ, ଆଲିଙ୍ଗନ, ସ୍ତନ ମର୍ଦ୍ଦନ ଆଦି କାମକଳା ଚର୍ଚ୍ଚାର ଆବଶ୍ୟକତା ରହିଥାଏ । ତେଣୁ ରାସଲୀଳା କାଳରେ ଶ୍ରୀକୃଷ୍ଣ ଅଙ୍ଗ, କର ଓ ପଦ ବିକ୍ଷେପନ ସହିତ ଗୋପାଙ୍ଗନାମାନଙ୍କ ସଙ୍ଗରେ ଅତ୍ୟନ୍ତ ଚତୁରତାର ସହିତ ନୃତ୍ୟ କରିଥାନ୍ତି । ଗୋପୀମାନଙ୍କର କର ସହିତ କର ଛନ୍ଦି ଦୀର୍ଘ, ଦ୍ରୁତ ଓ ମନ୍ଦଗତିର ଗାନ ସହିତ ତାନ ଦେଇ

ଶ୍ରୀକୃଷ୍ଣ ହଲ୍ଲୀଶକ ନୃତ୍ୟ ଆରମ୍ଭ କରିଥାନ୍ତି । ଏହି ନୃତ୍ୟରେ ମାୟାଶକ୍ତି ବଳରେ ଏକ କୃଷ୍ଣ ଅନେକରେ ପରିଣତ ହୋଇଥାନ୍ତି । ଗୋପୀ ଗୋଟିକେ କୃଷ୍ଣ ଗୋଟିଏ ହେବା ଫଳରେ ସେମାନଙ୍କ ମଧ୍ୟରେ ମହାଭାବର ଉଦ୍ରେକ ଘଟିଥାଏ । ନୃତ୍ୟ କାଳରେ କେବେ କେବେ ଗୋପାଙ୍ଗନାମାନେ କୃଷ୍ଣଙ୍କ ମେଳରେ ପ୍ରବେଶ କରନ୍ତି ତ କେତେବେଳେ କୃଷ୍ଣ ଗୋପାଙ୍ଗନାଙ୍କର ମଣ୍ଡଳରେ ପ୍ରବେଶ କରିଥାନ୍ତି । ଏହି ନୃତ୍ୟ ମଣ୍ଡଳାକାରରେ ଉତ୍କର୍ଷ ପ୍ରାପ୍ତ ହୋଇଥାଏ । ଏହି ନୃତ୍ୟରେ କୃଷ୍ଣ ନିଜେ ନାଚିବା ସହିତ ସଖୀମାନଙ୍କୁ ନଚାଇଥାଆନ୍ତି । କବି ଅଭିମନ୍ୟୁ 'ପ୍ରେମ ଚିନ୍ତାମଣି' କାବ୍ୟର ଚତୁଃଷଷ୍ଠୀ ଛାନ୍ଦରେ ଏହି ନୃତ୍ୟର ମନୋରମ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଏହାଛଡ଼ା ମଧ୍ୟଯୁଗୀୟ କୃଷ୍ଣକାବ୍ୟମାନଙ୍କରେ ଅନେକତ୍ର ଏହି ରାସନୃତ୍ୟର ବର୍ଣ୍ଣନା କରାଯାଇଛି ।

**ସଙ୍ଗୀତ**—ସଙ୍ଗୀତ ରାସର ଏକ ଗୁରୁତ୍ୱପୂର୍ଣ୍ଣ ଉପାଦ । ନୃତ୍ୟ ସହିତ ସଙ୍ଗୀତର ସମ୍ପର୍କ ଅତ୍ୟନ୍ତ ନିବିଡ଼ ହେତୁ ରାସରେ ସଙ୍ଗୀତର ଆବଶ୍ୟକତା ଏକାନ୍ତ ଜରୁରୀ ହୋଇଥାଏ । ନୃତ୍ୟ ସହିତ ରାଗ ଓ ତାଳର ଭାବପୂର୍ଣ୍ଣ ସଙ୍ଗୀତ ଗାନରେ ନାୟକନାୟିକା ଆତ୍ମହରା ହୋଇଥାନ୍ତି । ଶ୍ରୀମଦ୍‌ଭାଗବତର ରାସ ବର୍ଣ୍ଣନା ପ୍ରସଙ୍ଗରେ କୃଷ୍ଣ ଓ ଗୋପାଙ୍ଗନାମାନଙ୍କର ରାଗ ତାଳଯୁକ୍ତ ସଙ୍ଗୀତ ଗାନର ଉଲ୍ଲେଖ ରହିଛି । (୧୦/୩୩/୯) ଗୋପାଙ୍ଗନାମାନେ ଯେଉଁଭଳି ସଙ୍ଗୀତ ଦ୍ୱାରା କୃଷ୍ଣଙ୍କର ମନ କର୍ଣ୍ଣ ରସାପ୍ଳୁତ କରିଥାନ୍ତି, ସେହିଭଳି ରାସର ପ୍ରାରମ୍ଭରେ ଶ୍ରୀକୃଷ୍ଣଙ୍କ ବଂଶୀବାଦନରେ ଗୋପାଙ୍ଗନା ମାନଙ୍କର ଚିତ୍ତ ଆକର୍ଷିତ ହୋଇଥାଏ । ଏହି ବଂଶୀବାଦନ ହିଁ ସଙ୍ଗୀତର ରାଗ, ତାଳ ଓ କୃଷ୍ଣଙ୍କର ଅନ୍ତଃସ୍ଥ ଧ୍ୱନିର ପ୍ରକାଶକ । ମଧ୍ୟଯୁଗୀୟ କୃଷ୍ଣ କାବ୍ୟମାନଙ୍କରେ ଶ୍ରୀକୃଷ୍ଣଙ୍କର ମୋହନବଂଶୀର ମାଧୁର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ରାସଲୀଳାରେ ସଙ୍ଗୀତର ଭୂମିକାକୁ ସ୍ୱୀକାର କରାଯାଇଛି । ବଂଶୀବାଦନ ସହିତ ବହୁଳ ସଙ୍ଗୀତ ଗାନର ମଧ୍ୟ ଉଲ୍ଲେଖ ସେହି କାବ୍ୟମାନଙ୍କରେ ରହିଛି । କବି ଅଭିମନ୍ୟୁ ତାଙ୍କର 'ପ୍ରେମ ଚିନ୍ତାମଣି' କାବ୍ୟରେ ଏହି ସଙ୍ଗୀତ ଗାନର ମହତ୍ତ୍ୱ ସ୍ୱୀକାର କରି ଲେଖିଛନ୍ତି—ଅନବଦ୍ଧ ବଦ୍ଧସ୍ୱର ତାନମାନ ଶୁଣି ଚରାଚର ଆକର୍ଷିତ ହେଲେ । 'ସାରିଗାମା ପାଧାନିସା'ର ସପ୍ତସ୍ୱର

ସହିତ ବହୁବିଧ ବାଦ୍ୟର ପ୍ରଳାପ, ଛ' ରାଗ ଛତିଶ ରାଗିଣୀର ବିଭିନ୍ନ ଗୀତ, ସପ୍ତସ୍ୱରର ଆଳାପ, ଏକାଦଶ ବିକର୍ତ୍ତୀ ଓ ଦ୍ୱାବିଂଶ ପ୍ରକାର ତାନାଦି ମିଶି ପରିୂଣ ପ୍ରକାର ସଙ୍ଗୀତ ଧ୍ୱନି ରାସସ୍ଥଳକୁ ମୁଖରିତ କଲା ।" (୬୪/୩୪-୩୭)

**ଛନ୍ଦ**— ରାସରେ ନୃତ୍ୟ ଓ ସଙ୍ଗୀତର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିବାରୁ ଛନ୍ଦର ଆବଶ୍ୟକତା ରହିଛି । ଛନ୍ଦରେ ଗୀତଗାନ ଓ ଛନ୍ଦ ସହିତ ଛନ୍ଦ ଦେଇ ନୃତ୍ୟ ପରିବେଷଣ କରିବା ରାସ ଲୀଳାର ୨ ମୁଖ୍ୟ କୌଶଳ । ଛନ୍ଦ ସହିତ ନୃତ୍ୟ ଓ ଗୀତର ସମ୍ମେଳନ ଘଟିବାରୁ 'ରାସ'ରେ ଚମତ୍କାରିତା ଆସିଥାଏ ।

**ବାଦ୍ୟ** - ରାସର ନୃତ୍ୟ ଗୀତମୟ ପରିବେଶକୁ ଅଧିକ ଚଳଚଞ୍ଚଳ ଓ ମନୋମୁଗ୍‌ଧକର କରି ତୋଳେ ସେଥିରେ ବ୍ୟବହୃତ ବାଦ୍ୟ । ବଂଶୀ ବ୍ୟତୀତ ରାସରେ ବିଭିନ୍ନ ବାଦ୍ୟ ଯନ୍ତ୍ରର ଅପରିହାର୍ଯ୍ୟତା ସମ୍ପର୍କରେ ବୈଷ୍ଣବ କବିମାନେ ସେମାନଙ୍କର କାବ୍ୟରେ ଉଲ୍ଲେଖ କରିଛନ୍ତି । କବି ଅଭିମନ୍ୟୁ ତାଙ୍କର 'ପ୍ରେମ ଚିନ୍ତାମଣି' କାବ୍ୟରେ ରାସରେ ବ୍ୟବହୃତ ବାଦ୍ୟ ଯନ୍ତ୍ରଗୁଡିକର ବିଶଦ୍ ବିବରଣୀ ପ୍ରଦାନ କରିଥିବା ମନେହୁଏ । ସେ ରାସ ମଧ୍ୟରେ ବେଣୁ, ଘଣ୍ଟା, ମର୍ଦ୍ଦଳ, କଂସାଳ, ତାଳୀ, ତାଳ, ମୃଦଙ୍ଗ, ମୁରଜ, ନାଟେଶ୍ୱର, ମୁରଲୀ, ଝୁରଲି, ସିଙ୍ଘା, ମୁଚଳେ, କାହାଳୀ, ଡମ୍ବରୁ, ଫୁଙ୍ଗୁଙ୍ଗ, ଜଳତରଙ୍ଗ, ଶଙ୍ଖ ଓ ପଟହ ଆଦିର ବ୍ୟବହାରର ବର୍ଣ୍ଣନା କରିଛନ୍ତି । (୬୪/୩-୫) ।

**ନାୟକ ଓ ନାୟିକା**—ରାସର ନାୟକ ହେଉଛନ୍ତି ରସଘନ ବିଗ୍ରହ ଅଖିଳ-ରସାମୃତ-ମୂର୍ତ୍ତି ମାଧୁର୍ଯ୍ୟ ପୁରୁଷୋତ୍ତମ କିଶୋର କୃଷ୍ଣ ଏବଂ ନାୟିକାଗଣ ହେଉଛନ୍ତି ତାଙ୍କ ସ୍ୱରୂପ ଶକ୍ତି ହ୍ଲାଦିନୀର ବୃତ୍ତି ବିଶେଷ । ନାୟିକାମାନଙ୍କ ମଧ୍ୟରେ ଶ୍ରୀରାଧା ହେଉଛନ୍ତି ଶ୍ରେଷ୍ଠା । ନିତ୍ୟ ଗୋଲୋକ ସ୍ଥଳୀରେ ଯେଉଁ ମହାରାସ ଅନୁଷ୍ଠିତ ହୁଏ, ସେଥିରେ କେବଳ ଶ୍ରୀରାଧା କୃଷ୍ଣଙ୍କ ସହିତ ରାସକ୍ରୀଡା କରିଥାନ୍ତି । ଏହା ମହାରାସ ନାମରେ କଥିତ । ମାତ୍ର ମର୍ତ୍ତ୍ୟରେ କୃଷ୍ଣ-ଗୋପାଙ୍ଗନାମାନଙ୍କ ମଧ୍ୟରେ ଯେଉଁ ରାସଲୀଳା ହୁଏ । ତାହା ହେଉଛି ରାସ ।

## ରାସର ଆତ୍ମିକ ରୂପ—

ଶ୍ରୀଧର ସ୍ୱାମୀ ଶ୍ରୀମଦ୍‌ଭାଗବତ ଟୀକାରେ ରାସଲୀଳାର ବ୍ୟାଖ୍ୟା କରି ଲେଖିଛନ୍ତି—"ବ୍ରହ୍ମାଦି ପର୍ଯ୍ୟନ୍ତ ଜୟ କରିବାକୁ ଯାହାର ଦର୍ପ ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହୋଇଥିଲା, ସେହି କନ୍ଦର୍ପର ଦର୍ପହାରୀ ଗୋପୀଗଣଙ୍କ ଦ୍ୱାରା ରାସମଣ୍ଡଳରେ ମଣ୍ଡିତ ଶ୍ରୀପତି ଜୟଯୁକ୍ତ ହୁଅନ୍ତୁ।" ସେ ଅଧିକନ୍ତୁ ମଧ୍ୟ ରାସଲୀଳା ସମ୍ପର୍କରେ କହିଛନ୍ତି ଯେ, "କାମ ବିଜୟଖ୍ୟାପନାର୍ଥ ହିଁ ରାସଲୀଳା" ଶ୍ରୀଧର ସ୍ୱାମୀ ଶ୍ରୀମଦ୍‌ଭାଗବତରେ ପ୍ରଦତ୍ତ ରାସପଞ୍ଚାଧ୍ୟାୟୀରୁ ଯେଉଁ କେତେକ ବାକ୍ୟକୁ ଉଦ୍ଧାର କରି ବ୍ୟାଖ୍ୟା କରିଛନ୍ତି, ତନ୍ମଧ୍ୟରେ ରାସର ଆତ୍ମିକ ରୂପ ଉନ୍ମୋଚିତ ହୋଇଛି। ସେହି ବାକ୍ୟଗୁଡିକ ହେଲା—

'ଯୋଗମାୟା ସମୁପାଶ୍ରିତଃ'—ଅର୍ଥାତ୍ ଶ୍ରୀକୃଷ୍ଣ ନିଜର ସ୍ୱରୂପଶକ୍ତିର ବୃତ୍ତି ବିଶେଷ। ଅଘଟନ ଘଟନ ପଟିୟସୀ ଯୋଗମାୟାଙ୍କୁ ସାନ୍ନିଧ୍ୟରେ ରଖି ସେ ରାସଲୀଳା ନିର୍ବାହ କରିଥିଲେ।

'ଆତ୍ମାରାମୋଽପ୍ୟରୀରମତ୍'—ଅର୍ଥାତ୍ ଶ୍ରୀକୃଷ୍ଣ ଆତ୍ମାରାମ ହୋଇ ଯେ କାମ ଦେବର ମନ୍ଥନକାରୀ, ସେ କାମ ଦେବ ଦ୍ୱାରା ବିଜିତ ହୋଇ ନ ପାରେ।

'ଆତ୍ମନ୍ୟବରୁଦ୍ଧ ସୌରତଃ'—ଅର୍ଥାତ୍ ସୁରତ ସମ୍ବନ୍ଧିତ ଭାବ ସମୂହକୁ ଯେ ନିଜ ମଧ୍ୟରେ ଅବରୁଦ୍ଧ କରି ରଖିଥିଲେ। ସୁତରାଂ ଶ୍ରୀକୃଷ୍ଣ ସୁରତ ଭାବରେ ବିଚଳିତ ହୋଇ ନଥିଲେ।

ଏହି ବାକ୍ୟଗୁଡ଼ିକୁ ପ୍ରଦାନ କରି ଶ୍ରୀଧର ସ୍ୱାମୀ ବୁଝାଇ ଦେବାକୁ ଚାହିଁଛନ୍ତି ଯେ ରାସଲୀଳା ହେଉଛି ଶ୍ରୀକୃଷ୍ଣଙ୍କର ଏକ କାମ ବିକାର ଜନିତ ଚିତ୍ତଗ୍ରନ୍ଥି ବର୍ଜିତ ଲୀଳା। ଏଥିରେ ହୃଦୟ ଭୋଗବାସନା ବା କାମ ପ୍ରବୃତ୍ତି ଦ୍ୱାରା କଳୁଷିତ ହୋଇ ନଥାଏ ବରଂ ଏହିଭାବ ତିରୋହିତ ହୋଇଥାଏ। ଏହି ଭାବକୁ ଶ୍ରୀଧର ସ୍ୱାମୀ ରାସଲୀଳାର ତଟସ୍ଥ ଲକ୍ଷଣ ବୋଲି ଅଭିହିତ କରିଛନ୍ତି।

ଶ୍ରୀଜୀବ ଗୋସ୍ୱାମୀ ମଧ୍ୟ 'ବୈଷ୍ଣବ ତୋଷିଣୀ' ଗ୍ରନ୍ଥରେ ରାସରେ ବ୍ୟାଖ୍ୟା କରି ଏହାକୁ 'ପରମ ରସ କଦମ୍ବମୟ' ବୋଲି କହିଛନ୍ତି। ଏହି

ଉକ୍ତି ମଧ୍ୟରେ ସେ ପରବ୍ରହ୍ମ ଯେ ସଚ୍ଚିଦାନନ୍ଦ ବିଗ୍ରହ ଓ ରସ ସ୍ୱରୂପ, ତାଙ୍କୁ ପରମ ରସ ଭାବେ ସ୍ୱୀକାର କରିଛନ୍ତି । ତେଣୁ ରାସ ଲୀଳାରେ ଜାତ ରସ ସାଧାରଣ ରସ ଠାରୁ ଭିନ୍ନ ଓ ବହୁ ଊର୍ଦ୍ଧ୍ୱରେ । 'କଦମ୍ବ' ଅର୍ଥ ସମୂହ । ତେଣୁ ଉପର୍ଯ୍ୟୁକ୍ତ ଉକ୍ତିରୁ ସ୍ପଷ୍ଟ ହୁଏ ଯେ ଯେଉଁ ନୃତ୍ୟରେ ପରମ ରସ ସମୂହ ପ୍ରକାଶିତ ହୁଏ, ତାହା ରାସ । ଭଗବାନ୍ ଶ୍ରୀକୃଷ୍ଣଙ୍କର ହ୍ଲାଦିନୀ ଶକ୍ତି ବିଶେଷ ଗୋପାଙ୍ଗନାଗଣ ସେହି ପରମ ରସ ଶ୍ରୀକୃଷ୍ଣଙ୍କ ସହିତ ଯେଉଁ ରାସଲୀଳା କରିଥିଲେ ସେଥିରେ ଏହି ପରମ ରସ ବା ଅପ୍ରାକୃତ ଚିନ୍ମୟ ବସ୍ତୁ ପ୍ରେମ ରସର ପ୍ରବାହ ଘଟିଥିଲା । ସେଥିପାଇଁ ଅଭିମନ୍ୟୁଙ୍କର ଉକ୍ତି ହେଲା—

"ରାସ ଲୀଳା ଚକ୍ର ଯୋଗମାୟାର ଆଶ୍ରିତ
ଆତ୍ୟନ୍ତିକ ଅନନ୍ତ ପ୍ରଳୟ ନୋହେ ଅନ୍ତ ।"

(ପ୍ରେ. ଚ. ୭୪\୭)

'ଶ୍ରୀଚୈତନ୍ୟ ଚରିତାମୃତ'ର ମଧ୍ୟଲୀଳାରେ କୁହାଯାଇଛି ଯେ, ଶ୍ରୀକୃଷ୍ଣଙ୍କର ନିତ୍ୟଲୀଳା ଅପ୍ରକଟ ଓ ଏହା ଜ୍ୟୋତିଶ୍ଚକ୍ର ଭଳି ସର୍ବଦା ଘୂର୍ଣ୍ଣାୟମାନ । ବିଭିନ୍ନ ସମୟରେ ଏହି ଲୀଳା ବ୍ରହ୍ମାଣ୍ଡରେ ପ୍ରକଟ ହୋଇଥାଏ । ବୈଷ୍ଣବ କବି ଅଭିମନ୍ୟୁ ଶ୍ରୀକୃଷ୍ଣଙ୍କର ଏହି ନିତ୍ୟ ରାସଲୀଳାକୁ ଗୋଲୋକ ସ୍ଥଳୀର ରାସଲୀଳା ବର୍ଣ୍ଣନା ପ୍ରସଙ୍ଗରେ ଉପସ୍ଥାପିତ କରି କହିଛନ୍ତି— କାଳଚକ୍ର, ଯୋଗଚକ୍ର ଓ ଜ୍ୟୋତିଶ୍ଚକ୍ରଯୁକ୍ତ ଶିଶୁମାର ଚକ୍ର ଉପରେ ଚଉରାଅଶୀ ଚକ୍ର ବିଦ୍ୟମାନ । ଏହାର ମହିମା ବେଦ ଓ ଶେଷଦେବଙ୍କୁ ଅଗୋଚର । ଏଠାରେ ରାସସ୍ତମ୍ଭ ତଳକୁ ବିଭିନ୍ନ ଚକ୍ର ରହିଛି । ସପ୍ତାବରଣ ବିଶିଷ୍ଟ ପ୍ରଥମ ଚକ୍ର ସୁରଲୋକରେ ଅବସ୍ଥିତ । ତଦୁପରି ଶ୍ୱେତରତ୍ନ ନିର୍ମିତ ସାଧୁସିଦ୍ଧମାନଙ୍କର ଚକ୍ର ରହିଛି । ଏହାର ଆହୁରି ଉପରକୁ ନୀଳରତ୍ନ ନିର୍ମିତ ଚକ୍ର ଅବସ୍ଥିତ ଓ ଏହା କୃପାସିନ୍ଧୁ ଋଷିଗଣଙ୍କର ଆଶ୍ରୟସ୍ଥଳ ରୂପେ କଥିତ । ନୀଳରତ୍ନ ନିର୍ମିତ ଚକ୍ର ଉପରେ ଅବସ୍ଥିତ ପୀତ ରତ୍ନର ଚକ୍ର ମୁନିକନ୍ୟା ମାନଙ୍କ ନିବାସ ସ୍ଥଳ ଅଟେ । ତାହାର ଉପରି ଭାଗରେ ଦେବକନ୍ୟାମାନଙ୍କର ନିବାସ ସ୍ଥଳ ରୂପେ କଥିତ କୃଷ୍ଣରତ୍ନ ଚକ୍ର ରହିଛି । ତଦୁପରି ଯେଉଁ

ପଦ୍ମରାଗ ରତ୍ନରେ ତିଆରି ଚକ୍ର ଅଛି, ତାହା ଧନ୍ୟା ଆଦି କନ୍ୟା (ଗୋପକନ୍ୟା) ମାନଙ୍କର ସ୍ଥାନ । ତାହା ଉପରେ ସୂର୍ଯ୍ୟଜ୍ୟୋତିକୁ ଗଞ୍ଜନ କରି ନବବର୍ଣ୍ଣରେ ଉଦ୍ଭାସିତ ହେଉଥିବା ଏକ ଚକ୍ର ରହିଛି । ଏହି ଚକ୍ରର ପ୍ରଥମ ଆବରଣରେ ଯୂଥଯୂଥଶ୍ୱରୀବୃନ୍ଦ, ଦ୍ୱିତୀୟ ଆବରଣରେ ଅଷ୍ଟସଖୀ, ତୃତୀୟ ଆବରଣର ରତ୍ନ ପୀଠ ଉପରେ ରାଧାକୃଷ୍ଣ ବିରାଜମାନ । (ପ୍ରେ. ଚ. ୬୪/୭-୨୩) ଏହି ନିତ୍ୟ ରାସ ଅବ୍ୟକ୍ତ ଓ ସର୍ବଦା ଯୋଗମାୟାର ଆଶ୍ରିତ । ସୂର୍ଯ୍ୟ ଦେବତାଙ୍କର ରଥ ପରି ଏହା ଅନବରତ ଘୂର୍ଣ୍ଣାୟମାନ ଥାଏ । ଯେଉଁ ବ୍ରହ୍ମାଣ୍ଡମାନଙ୍କରେ ଦ୍ୱାପର ନାମକ ଦ୍ୱାପର ଯୁଗର ଆବିର୍ଭୂତ ହୁଏ ସେତେବେଳେ ସେହି ବ୍ରହ୍ମାଣ୍ଡମାନଙ୍କରେ ଏହି ରାସଲୀଳା ଚକ୍ରର ପ୍ରଭା ବିମ୍ବିତ ହୁଏ ଓ ତାହା ଜଳରେ ଚନ୍ଦ୍ରର ପ୍ରତିବିମ୍ବ ପରି ଉଦ୍ଭାସିତ ହୋଇଥାଏ । (ପ୍ରେ. ଚ. ୬୭/୬୩-୬୮)

ଏହି ନିତ୍ୟ ରାସଲୀଳା ଓ ପ୍ରାକୃତ ଜଗତ୍ ବା ମର୍ତ୍ତ୍ୟ ବୃନ୍ଦାବନର ରାସଲୀଳା ମଧ୍ୟରେ ଚୈତନ୍ୟ ପନ୍ଥୀ ବୈଷ୍ଣବମାନେ କୌଣସି ପାର୍ଥକ୍ୟ ଲକ୍ଷ୍ୟ କରିନାହାନ୍ତି ।

## (ଙ) ଗୁରୁବାଦ—

'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ କୁହାଯାଇଛି—

"କୃଷ୍ଣ, ଗୁରୁ, ଭକ୍ତ, ଶକ୍ତି, ଅବତାର, ପ୍ରକାଶ
କୃଷ୍ଣ ଏଇ ଛୟ ରୂପେ କରେନ ବିଳାସ ।"

(ଆଦ୍ୟଲୀଳା, ପ୍ରଥମ ପରିଚ୍ଛେଦ, ପୃ ୮)

ଏଠାରେ ଏହି ଉକ୍ତିଟିର ଉଦ୍ଧାର କରିବାର ତାତ୍ପର୍ଯ୍ୟ ହେଉଛି, ଗୁରୁଦେବ ଶ୍ରୀକୃଷ୍ଣଙ୍କ ତୁଲ୍ୟ ପୂଜନୀୟ । 'ଶ୍ରୀହରି ଭକ୍ତିବିଳାସ'ରେ ମଧ୍ୟ କୃଷ୍ଣ କହିଛନ୍ତି, ପ୍ରଥମେ ଶ୍ରୀଗୁରୁଦେବଙ୍କର ପୂଜା କରି ତତ୍ପରେ ମୋର ପୂଜା କରିବ । ଏହା ଦ୍ୱାରା ଭକ୍ତି ଯୋଗରେ ସିଦ୍ଧି ଆସେ । ଏତଦ୍‌ବ୍ୟତୀତ ସାଧକର ସମସ୍ତ ଭକ୍ତି ନିଷ୍ଫଳ ହୋଇଥାଏ ।" (୪।୧-୩୪ ଅନୁରୂପ ଉକ୍ତିମାନଙ୍କୁ ଉପନିଷଦରେ ମଧ୍ୟ ଲକ୍ଷ୍ୟ କରାଯାଇଥାଏ । ଶ୍ୱେତାଶ୍ୱତର ଉପନିଷଦ୍ କହେ--

"ଯସ୍ୟ ଦେବେ ପରା ଭକ୍ତିର୍ଯଥା ଦେବେ ତଥା ଗୁରୌ
ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ ।" (୬\୨୩)

ପୁନଶ୍ଚ ଶ୍ରୀମଦ୍ ଭାଗବତରେ ଅନୁରୂପ ମତର ଘୋଷଣା କରାଯାଇଛି ।

ଯଥା- "ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ନାବମନ୍ୟେତ କର୍ହିଚିତ
ନ ମର୍ତ୍ତ୍ୟ ବୁଦ୍ଧ୍ୟା ସୂୟେତ ସର୍ବ ଦେବ ମୟୋ ଗୁରୁଃ ।"
(୧୧।୧୭।୨୭)

ଏହିସବୁ ଉକ୍ତିମାନଙ୍କରୁ ପ୍ରତିପନ୍ନ ହୁଏ ଯେ ଦେବତା ଓ ଗୁରୁଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ମହାତ୍ମାମାନେ କୌଣସି ପ୍ରଭେଦ ନ ଦେଖି ଗୁରୁଦେବଙ୍କୁ ଦେବତା ତୁଲ୍ୟ ପୂଜା କରଥାନ୍ତି । ସେଥିପାଇଁ ଶ୍ରୀଜୀବ ଗୋସ୍ୱାମୀ 'ଭକ୍ତି ସନ୍ଦର୍ଭ'ରେ କହିଛନ୍ତି, "ଅନ୍ୟଦା ସଦ୍ଗୁରୌ କର୍ମିଭିରପି ଭଗବଦ୍ ଦୃଷ୍ଟି କର୍ତ୍ତବ୍ୟ ।" (୨୧୧।୧୨ ଅନୁଚ୍ଛେଦ) ଅର୍ଥାତ୍ ଅନ୍ୟଦା କର୍ମିଗଣଙ୍କ ପକ୍ଷରେ ଗୁରୁଦେବଙ୍କୁ ଭଗବତ୍ ଦୃଷ୍ଟିରେ ଦେଖିବା ଉଚିତ । ଶ୍ରୀଜୀବଗୋସ୍ୱାମୀ ଶ୍ରୀମଦ୍ଭାଗବତର ଉକ୍ତି ଗ୍ରହଣ କରି କହିଛନ୍ତି ଯେ, ଜ୍ଞାନାଲୋକପ୍ରଦ ଶ୍ରୀଗୁରୁଙ୍କ ଦୁର୍ବୁଦ୍ଧି ବଶତଃ ଯାହାର ମାନୁଷଜ୍ଞାନ ଆସିଥାଏ, ତାହାର ଶାସ୍ତ୍ର ଶ୍ରବଣ ହସ୍ତୀସ୍ନାନ ସଦୃଶ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଥାଏ । ଏହି ଭଗବାନ୍ ସାକ୍ଷାତ୍ ପ୍ରଧାନ ଓ ପୁରୁଷର ଈଶ୍ୱର । ଯୋଗେଶ୍ୱରଗଣ କର୍ତ୍ତୃକ ତାଙ୍କ ଚରଣ ଅନ୍ୱେଷଣୀୟ ଏବଂ ଏହି ଗୁରୁ ହିଁ ସାକ୍ଷାତ୍ ସେହି ଭଗବାନ୍ । ସଂସାରରେ ଯେଉଁ ବ୍ୟକ୍ତି ଏହାଙ୍କୁ ମନୁଷ୍ୟ ବୋଲି ମନେ କରେ, ତାହା ତାର ଭ୍ରମତାର ପରିଚୟ ଦେଇଥାଏ । [ଶ୍ରୀମଦ୍ଭାଗବତ, ୭।୧୫।୨୦-୨୧]

ଏ ଦୃଷ୍ଟିରୁ ଶ୍ରୀଜୀବ ଗୋସ୍ୱାମୀ ସ୍ୱମତ ପ୍ରଦାନ କରି କହିଛନ୍ତି--"ଏଇ ଗୁରୁ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ । ଅତଏବ ପ୍ରାକୃତ ଲୋକ ଯେଉଁ ମନୁଷ୍ୟ ଜ୍ଞାନ କରନ୍ତି, ତାଙ୍କର ସେହି ଦୃଷ୍ଟି ଭଗବତ୍ ତତ୍ତ୍ୱ ବିଷୟରେ ପ୍ରମାଣ ନୁହେଁ ।" (ଭକ୍ତି ସନ୍ଦର୍ଭ, ୨ମ ଅନୁଚ୍ଛେଦ)

ଶ୍ରୀମଦ୍ ଭାଗବତରେ ଗୁରୁଙ୍କର ଲକ୍ଷଣ ନିର୍ଦ୍ଦେଶ କରାଯାଇ କୁହାଯାଇଛି--"ତସ୍ମାଦ୍ ଗୁରୁଂ ପ୍ରପଦ୍ୟେତ ଜିଜ୍ଞାସୁଃ ଶ୍ରେୟ ଉତ୍ତମମ୍ ।

ଶାସ୍ତ୍ରେ ପରେ ତ ନିଷ୍ଣାତଂ ବ୍ରାହ୍ମଣ୍ୟୁପଶମାଶ୍ରୟମ୍" [୧୧।୩।୨୧] ଅର୍ଥାତ୍ ଯେ ବେଦାଦି ଶାସ୍ତ୍ରରେ ତତ୍ତ୍ୱଜ୍ଞ, ପରବ୍ରହ୍ମଙ୍କ ବିଷୟରେ ଯାହାର ପ୍ରତ୍ୟକ୍ଷ ଅନୁଭୂତି ଅଛି, ଜିଜ୍ଞାସୁ ବ୍ୟକ୍ତି ତଦନୁରୂପ ଶ୍ରୀଗୁରୁଙ୍କର ଆଶ୍ରୟ ଗ୍ରହଣ କରିବା ବିଧେୟ । 'ଭକ୍ତି ରସାମୃତ ସିନ୍ଧୁ'ରେ ମଧ୍ୟ ଗୁରୁଙ୍କ ସମ୍ପର୍କରେ ଅନୁରୂପ ମତପୋଷଣ କରାଯାଇଅଛି । ଏଥିରେ କୁହାଯାଇଛି—"ଭକ୍ତ ଶ୍ରୀଗୁରୁଦେବଙ୍କୁ ନିଜର ହିତକାରୀ ପରମ ବାନ୍ଧବ ଓ ପରମାରାଧ୍ୟ ଶ୍ରୀହରିଙ୍କର ସ୍ୱରୂପ ବୋଲି ଜାଣି ନିଷ୍କପଟ ଭାବରେ ତାଙ୍କର ଆନୁଗତ୍ୟ ସ୍ୱୀକାର କରିବା ଉଚିତ୍ । ଏତଦ୍‌ବ୍ୟତୀତ ଯେଉଁ ସମସ୍ତ ଧର୍ମର ଅନୁଷ୍ଠାନରେ ଆତ୍ମପ୍ରଦ ହରି ସନ୍ତୁଷ୍ଟ ହୁଅନ୍ତି, ସେହି ସମସ୍ତ ଭାଗବତ ଧର୍ମକୁ ଭକ୍ତ ଶିକ୍ଷା କରିବା ଦରକାର ।" (ପୂର୍ବ ବିଭାଗ, ସାଧନଭକ୍ତି ଲହରୀ, ଶ୍ଳୋକ-୭୮) ବିଦଗ୍ଧ କବି ଅଭିମନ୍ୟୁ ଏହି କଥାକୁ ପ୍ରକାଶ କରି କହିଛନ୍ତି—

"ମନାଦି ଇନ୍ଦ୍ରିୟ ସ୍ୱବଶ । ସାଦଗୋଗବିନ୍ଦେ ଅଭିଳାଷ ॥
ଶୀଳାଦି ସଦଗୁଣ ଯହିଁ । ଉତ୍ତମ ସାଧୁ ସିନା ସେହି ॥
ଏମନ୍ତ ସାଧୁ ଆଶ୍ରା କରି । ନରେ ସଂସାରୁ ଯାନ୍ତି ତରି ॥"

(ଚ. ୭୭/୧୨୧-୧୨୩)

ଓଡ଼ିଆ ବୈଷ୍ଣବ କବିମାନେ ସେମାନଙ୍କର କାବ୍ୟରେ ସ୍ୱଗୁରୁଙ୍କର ବନ୍ଦନା କରିବା ସଙ୍ଗେ ସଙ୍ଗେ ଗୁରୁଙ୍କର ମହତ୍ତ୍ୱ ସ୍ୱୀକାର କରିଛନ୍ତି । ବୈଷ୍ଣବ କାବ୍ୟକର୍ତ୍ତାଙ୍କ ବ୍ୟତୀତ କ୍ଷୁଦ୍ର ଗୀତିକବିତାର କବିମାନେ ଗୁରୁଙ୍କର ବିସ୍ତୃତ ବନ୍ଦନା କରିବା ସଙ୍ଗେ ସଙ୍ଗେ ତାତ୍ତ୍ୱିକ ଦିଗରୁ ଗୁରୁ-ଗୌରବକୁ ମାନବ ସମାଜରେ ପ୍ରଚ୍ଛରିତ କରିଛନ୍ତି । ସେ ସବୁର ଉପସ୍ଥାପନା ଏଠେ ବିସ୍ତୃତ ଯେ କୌଣସି ଗୋଟିଏ କବିଙ୍କର ଉଦ୍ଧୃତି ପ୍ରଦାନ କରି ଏହାର ପ୍ରମାଣ ଦେବା ଅନାବଶ୍ୟକ । ବିଦଗ୍ଧ କବି ଅଭିମନ୍ୟୁଙ୍କର—

"ଶ୍ରୀଗୁରୁ କୃଷ୍ଣ ବଇଷ୍ଣବ । ଭେଦ ନୁହନ୍ତି ଏକ ଜୀବ ॥
ପ୍ରାଣୀଙ୍କ ନିସ୍ତାର ନିମନ୍ତେ । ତ୍ରିଧାୟ ମୂର୍ତ୍ତି ଏ ଜଗତେ ॥"

(ପ୍ରେ. ଚ. ୭୭।୧୧୯-୨୦)

ଉକ୍ତିଟି ଓଡ଼ିଆ ବୈଷ୍ଣବ ସାହିତ୍ୟରେ ସବୁ କବିମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା । ଚୈତନ୍ୟପନ୍ଥୀ ବୈଷ୍ଣବ ସାହିତ୍ୟରେ ଗୁରୁଙ୍କର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ଓ ତାହା ବଙ୍ଗୀୟ ତତ୍ତ୍ୱ ଦୃଷ୍ଟିରୁ ଯେ ସୁସମ୍ବନ୍ଧ—ଏହା ଉକ୍ତ ଆଲୋଚନାରୁ ସ୍ପଷ୍ଟ ହୋଇଥାଏ ।

## (ଚ) ଅନ୍ତର ସାଧନତତ୍ତ୍ୱ—

ରାଗାନୁଗା ଭକ୍ତିର ବାହ୍ୟ ସାଧନ ଓ ଅନ୍ତର ସାଧନ ରହିଛି । ଶ୍ରୀଚୈତନ୍ୟ ଏହି ଦୁଇ ସାଧନ ମାର୍ଗ ସମ୍ପର୍କରେ ସ୍ୱମତ ପ୍ରଦାନ କରି କହିଛନ୍ତି—

"ବାହ୍ୟ-ଆନ୍ତର ଇହା ଦୁଇତ ସାଧନ ।
ବାହ୍ୟ ସାଧକ ଦେହେ କରେ ଶ୍ରବଣ କୀର୍ତ୍ତନ ।
ମନେ ନିଜ ସିଦ୍ଧ ଦେହ କରିଯା ଭାବ·
ରାତ୍ରି ଦିନ କରେ ବ୍ରଜେ କୃଷ୍ଣେର ସେବନ"
(ଶ୍ରୀଚୈ· ଚ: ମଧ୍ୟଲୀଳା, ୨୨ାପୃ·୭୨୮)

ବାହ୍ୟ ସାଧନ ଅପେକ୍ଷା ଚୈତନ୍ୟପନ୍ଥୀ ବୈଷ୍ଣବମାନେ ଅନ୍ତର ସାଧନକୁ ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ଏହି ଅନ୍ତର ସାଧନ ହେଉଛି ମନର ସାଧନ । ଅନ୍ତର ସାଧନ ମଧ୍ୟରେ ଭକ୍ତ ଶୀଘ୍ର ଫଳପ୍ରାପ୍ତ ହୋଇଥାଏ । ମାତ୍ର ବାହ୍ୟ ସାଧନର ଫଳ ସୁଦୂର ଲଭ୍ୟ । ସେଥିପାଇଁ ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ କୁହାଯାଇଛି—

"ବହୁ ଜନ୍ମ କରେ ଯଦି ଶ୍ରବଣ କୀର୍ତ୍ତନ
ତଥାପି ନା ପାଯ କୃଷ୍ଣ ପଦେ ପ୍ରେମଧନ ।"
(ଆଦିଲୀଳା, ୮ାପୃ ୧୧୧)

ତେଣୁ ଏହି ଗ୍ରନ୍ଥରେ ଅନ୍ତର ସାଧନର ଅଗ୍ରାଧିକାର ଉଦ୍‌ଘୋଷିତ ହୋଇଛି ।

"ଏଇ ମତ କରେ ଯେବା ରାଗାନୁଗା ଭକ୍ତି
କୃଷ୍ଣେର ଚରଣେ ତା'ର ଉପଜୟ ପ୍ରୀତି ।

ସ୍ତ୍ରୀଚିହ୍ନଙ୍କୁରେର 'ରତି ଭାବ' ଏଇ ଦୁଇନାମ
ଯାହା ହୈତେ ବଶ ହୟ ଶ୍ରୀଭଗବାନ୍
ଯାହା ହୈତେ ପାଇ କୃଷ୍ଣେର ପ୍ରେମଧନ ।"
(ମଧ୍ୟଲୀଳା ୨ୟଖ ୬୨୯)

ରାୟ ରାମାନନ୍ଦ ମଧ୍ୟ ଅନୁରୂପ ଭାବରେ ଶ୍ରୀଚୈତନ୍ୟଙ୍କୁ କହିଛନ୍ତି — "ଅତଏବ, ଗୋପୀଭାବ ଅଙ୍ଗୀକାର ପୂର୍ବକ ସିଦ୍ଧ ଦେହ ଧାରଣ କରି ଯିଏ ରାଧାକୃଷ୍ଣ ଏବଂ ତାଙ୍କର ଲୀଳାକୁ ମନ ମଧ୍ୟରେ ଚିନ୍ତା କରି ତାଙ୍କର ସେବା କରେ, ସେ ସଖୀ ଭାବରେ ରାଧାକୃଷ୍ଣଙ୍କର ଚରଣରେ ସ୍ଥାନ ପାଇଥାଏ । (ଶ୍ରୀଚୈତନ୍ୟ ଚରିତାମୃତ, ୮/ପୃ ୩୩୬)

ସାଧକର ବାହ୍ୟ ସାଧନରେ ସିଦ୍ଧି ଆସିଲେ ସେ ନିଜର ଅଭୀଷ୍ଟ ପ୍ରେମ ଦ୍ୱାରା ଶ୍ରୀକୃଷ୍ଣଙ୍କର ସେବା କରିବା ପାଇଁ ଇଚ୍ଛା କରିଥାଏ ଓ ଏଥିପାଇଁ ସେ ଉପଯୋଗୀ ଦେହ ଗ୍ରହଣ କରିଥାଏ । ଏହି ସିଦ୍ଧ ଦେହ ଧାରଣ ନିମିତ୍ତ ସାଧକ ଗୁରୁଙ୍କର ଆଶ୍ରୟ ଗ୍ରହଣ କରିଥାଏ । ଗୁରୁଦେବ ତାଙ୍କୁ ପ୍ରଣାଳିକାର ବର୍ଣ୍ଣ, ବୟସ, ବେଶ, ଭୂଷା ଓ ସେବା ଇତ୍ୟାଦିର ସୂଚନା ଦେଇ ତାହାର ସିଦ୍ଧ ଦେହର ସ୍ୱରୂପଙ୍କୁ ବତାଇ ଦେଇଥାନ୍ତି । ଏହା ସାଧକର ଅନ୍ତଶ୍ଚିନ୍ତିତ ଦେହ । ସାଧକ ଏହି ନିର୍ଦ୍ଦିଷ୍ଟ ଅନ୍ତଶ୍ଚିନ୍ତିତ ଦେହ ବା ସିଦ୍ଧ ଦେହ ଦ୍ୱାରା ମନ ମଧ୍ୟରେ ବ୍ରଜବନ ଶ୍ରୀକୃଷ୍ଣଙ୍କର ସେବା କରିଥାଏ ।

ଚତୁର୍ବିଧ ରାଗାନୁଗା ଭକ୍ତିରେ ଏହି ସିଦ୍ଧ ଦେହ ଚାରି ପ୍ରକାରର ହୋଇଥିଲେ ହେଁ ଚୈତନ୍ୟପନ୍ଥୀ ବୈଷ୍ଣବମାନେ କାନ୍ତାଭାବର ଉପାସକ ହୋଇଥିବାରୁ ସେମାନେ ସିଦ୍ଧ ଦେହ ବା ଅନ୍ତଶ୍ଚିନ୍ତିତ ଦେହ ଭାବରେ ଗୋପୀ ଦେହ ବା ସଖୀ ଦେହକୁ ଗ୍ରହଣ କରିଥାନ୍ତି । ମାତ୍ର ସିଦ୍ଧ ଦେହର ଅନୁରୂପ ବେଶଭୂଷା ଧାରଣ କରିବାର ପରମ୍ପରା ଏହି ସମ୍ପ୍ରଦାୟରେ ନାହିଁ । କାରଣ ଏହି ଦେହ ହେଉଛି ଏକ ଭାବମୟ ଦେହ । ଏହି ଅନ୍ତଶ୍ଚିନ୍ତିତ ଦେହ ଧାରଣ ପରମ୍ପରାରେ ରାୟ ରାମାନନ୍ଦଙ୍କ ସିଦ୍ଧ ଦେହ ଥିଲା ଲଳିତା, ସ୍ୱରୂପ ଦାମୋଦରଙ୍କର ସିଦ୍ଧ ଦେହ ଥିଲା ବିଶାଖା ଓ ଶ୍ରୀରୂପ ଗୋସ୍ୱାମୀ ରୂପମଞ୍ଜରୀଙ୍କର ଶରୀର ଗ୍ରହଣ କରିଥିଲେ ।

ଏହି ସିଦ୍ଧ ଦେହଧାରୀ ବୈଷ୍ଣବମାନଙ୍କର ମୁଖ୍ୟ ଲକ୍ଷ୍ୟ ହେଉଛି; ମନ ମଧ୍ୟରେ ଚିନ୍ତା ଦ୍ୱାରା ନିଜକୁ ଶ୍ରୀରାଧାଙ୍କର କିଙ୍କରୀ ମନେକରି ତାହାଙ୍କର ସେବା କରିବା ଓ ଶ୍ରୀକୃଷ୍ଣଙ୍କ ଅପେକ୍ଷା ଶ୍ରୀରାଧାଙ୍କ ପ୍ରତି ଅଧିକ ପ୍ରୀତି ପୋଷଣ କରିବା ପ୍ରତ୍ୟେକ ଦିନ (ପୂର୍ବ ଦିନ ନିଶାନ୍ତରୁ ପରଦିନ ନିଶାନ୍ତ ପର୍ଯ୍ୟନ୍ତ ଅଷ୍ଟପ୍ରହର ସକାଳ) ଯତ୍ନେ ରାଧାକୃଷ୍ଣଙ୍କର ମିଳନ ସମ୍ପାଦନ କରାଇ ଓ ସେବା କରି ଆନନ୍ଦରେ ବିହ୍ୱଳ ହେବା । ଏହି ସାଧନାରେ ସାଧକ ନିଜକୁ ଗୋପୀଗଣ ମଧ୍ୟବର୍ତ୍ତିନୀ ରୂପଯୌବନସମ୍ପନ୍ନା ମନୋରମା ରମଣୀ ରୂପେ ଚିନ୍ତା କରିବା ସହିତ କୃଷ୍ଣ କର୍ତ୍ତୃକ ପ୍ରାର୍ଥିତ ହେଲେ ମଧ୍ୟ ସମ୍ଭୋଗ ପରାଙ୍ମୁଖ ହେବା ବିଧେୟ ବୋଲି ପଦ୍ମପୁରାଣରେ କୁହାଯାଇଛି । [ପାତାଳ ଖଣ୍ଡ ୫୨।୭-୧୨] ଏହା ମଧ୍ୟ ଚୈତନ୍ୟ ପରମ୍ପରାରେ ସ୍ୱୀକୃତ ।

ପୂର୍ବରୁ କୁହାଯାଇଛି ଅନ୍ତର ସାଧନ ବା ସିଦ୍ଧ ଦେହର ସାଧନରେ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ କାନ୍ତା—ଏହି ଚତୁର୍ବିଧ ଭକ୍ତି ମଧ୍ୟରୁ ଯେ କୌଣସି ରାଗାତ୍ମିକା ଭକ୍ତିକୁ ଅନୁସରଣ କରାଯାଇଥାଏ । ମାତ୍ର ଶ୍ରୀଚୈତନ୍ୟ ଚରିତାମୃତରେ ଏମାନଙ୍କ ମଧ୍ୟରେ ଅନ୍ତର ସାଧନ ପାଇଁ କାନ୍ତା ଭକ୍ତି ଅଧିକ ଉପଯୁକ୍ତ ବୋଲି କୁହାଯାଇଛି । "ଶ୍ରୀଚୈତନ୍ୟ ଚରିତାମୃତ" ଗ୍ରନ୍ଥାନୁଯାୟୀ ଶାନ୍ତରସରେ ଶାନ୍ତରତି ପ୍ରେମ ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥାଏ । ଦାସ୍ୟ ରସରେ ଦାସ୍ୟ ରତି ରାଗ ପର୍ଯ୍ୟନ୍ତ, ସଖ୍ୟ ଓ ବାତ୍ସଲ୍ୟ ରସରେ ଅନୁରାଗ ପର୍ଯ୍ୟନ୍ତ ବର୍ଦ୍ଧିତ ହେଉଥିବା ସମୟରେ କାନ୍ତାରତି ମହାଭାବ ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥାଏ ।" (ମଧ୍ୟଲୀଳା, ୨୩ାଧୃ ୨୩୫-୩୭) ଭଗବାନ୍‌ଙ୍କ ସ୍ୱରୂପ ଶକ୍ତିର ଶ୍ରେଷ୍ଠ ବୃତ୍ତି ଏହି ମହାଭାବ ଚୈତନ୍ୟପନ୍ଥୀ ବୈଷ୍ଣବମାନଙ୍କର ଚରମ ଲକ୍ଷ୍ୟ ହୋଇଥିବାରୁ ସେମାନେ ଏହି କାନ୍ତା ଭକ୍ତି ମାଧ୍ୟମରେ ଅନ୍ତର ସାଧନ କରିବାକୁ ଯାଇ କିଙ୍କରୀ ରୂପେ ଅନ୍ତଶ୍ଚିନ୍ତିତ ଦେହ ଧାରଣ କରିଥାନ୍ତି ।

ସାଧକର ଅନ୍ତଶ୍ଚିନ୍ତିତ ଶରୀରରେ ଯେଉଁ ଚିନ୍ତା କରାଯାଏ, ତାହା ପ୍ରାକୃତ ଜଗତର ନୁହେଁ, ଅପ୍ରାକୃତ ଜଗତର ବସ୍ତୁ । ଏହି ଅପ୍ରାକୃତ ଚିନ୍ମୟ ଦେହ ଭଗବାନ୍‌ଙ୍କର ସ୍ୱରୂପ ଶକ୍ତିର ବୃତ୍ତି ବିଶେଷ ସମନ୍ୱିତ ଚିନ୍ମୟୀ ଚିନ୍ତା ସମ୍ଭବ ହୋଇଥାଏ ଓ ଏହି ଚିନ୍ତା ଦ୍ୱାରା ଭକ୍ତକୁ ଯେଉଁ ଦେହ ପ୍ରାପ୍ତି ହୁଏ,

ତାହା ପ୍ରାକୃତ ହୋଇପାରିବ ନାହିଁ । ତାହା ହେବ ଅପ୍ରାକୃତ ଚିନ୍ମୟ ଓ ଶୁଦ୍ଧ ସତ୍ତ୍ୱାତ୍ମକ ।" (ଗୌଡୀୟ ବୈଷ୍ଣବ ଦର୍ଶନ, ସାଧନତତ୍ତ୍ୱ, ପୃ ୧୮୯)

ଏହି ଦୃଷ୍ଟିରୁ ଚୈତନ୍ୟପନ୍ଥୀ ସାଧକ ବୃନ୍ଦ ସର୍ବଦା ଗୋପାଙ୍ଗନାଙ୍କର ଅନ୍ତର୍ଶ୍ଚିନ୍ତିତ ଶରୀର ଧାରଣ କରି ଅନ୍ତରରେ ଶ୍ରୀରାଧାଙ୍କର କିଙ୍କରୀ ଭାବ ପୋଷଣ ପୂର୍ବକ ରାଧାକୃଷ୍ଣଙ୍କର ସେବାରେ ନିଜକୁ ଅନବରତ ନିୟୋଜିତ କରିଥାନ୍ତି । ଅଂତର୍ଶ୍ଚିନ୍ତିତ ସିଦ୍ଧ ଦେହରେ ସାଧନାରତ ଥିବା ଭକ୍ତକବି ଅଭିମନ୍ୟୁ ସେଥିପାଇଁ 'ବିଦଗ୍ଧ ଚିଂତାମଣି'ରେ କହିଛନ୍ତି—"ମୋ କରିବ ଆଳେ ଦାସୀ ଡାକିଲେ କନ୍ଦୋଳୀ ।" ଦାସୀ ଭାବରେ ସେବା କରିବା ପାଇଁ କବି ଅଭିମନ୍ୟୁଙ୍କର ଯେଉଁ ଆକୁଳତା ପ୍ରକାଶ ପାଇଛି, ତାହାର ଦୃଷ୍ଟାଂତ ଏଠାରେ ପ୍ରଣିଧାନଯୋଗ୍ୟ । କବି ଅଭିମନ୍ୟୁ ବିଦଗ୍ଧ ଚିଂତାମଣିରେ କହିଛନ୍ତି, "ହେ ବୃନ୍ଦାଦେବି ! ଲଳିତେ, ବିଶାଖିକେ, ରଙ୍ଗ ଦେବି, ଚନ୍ଦ୍ରେ, ଚମ୍ପକଲତେ, ସୁଦେବି, ଧନିଷ୍ଠା, ତୁଙ୍ଗବିଦ୍ୟା, ଶ୍ରୀରୂପମଞ୍ଜରି, ରସମଞ୍ଜରି, ଅନଙ୍ଗମଞ୍ଜରି, କସ୍ତୁରି, ତୁଳସି । ଏ ଦିନ ଆପଣଙ୍କ ପାଖରେ ପ୍ରାଣ ବିକି ଦେଇଛି । ଏ ଦିନ ପ୍ରତି କରୁଣା ବିସ୍ତାର କର, ଯେପରି ମୁଁ କିଙ୍କରୀ ହୁଏ । ମୋର ଇଚ୍ଛା; ଶ୍ରୀବୃନ୍ଦାବନରେ ଶ୍ରୀରାସ ମଣ୍ଡଳରେ ପ୍ରେମ ଶୁଦ୍ଧ ତନ୍ମୟ ଭାବରେ ଯେପରି ମୋର ଜୀବନ ଯାଏ ।" (୬୦।୪୯-୫୧) କବିଙ୍କର ଅନୁରୂପ ବ୍ୟାକୁଳତା ତାଙ୍କର 'ପ୍ରେମ ଚିଂତାମଣି' କାବ୍ୟରେ ରୂପ ନେଇଛି । ଏହି ଭାବରେ କବି ଗୋପାଳକୃଷ୍ଣ ମଧ୍ୟ ବୃନ୍ଦାବନେଶ୍ୱରୀଙ୍କର ସେବିକା ହେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । କବି ବନମାଳୀ, ଗୌରଚରଣ, କବିସୂର୍ଯ୍ୟ ପ୍ରଭୃତି ଗୀତିକାରଙ୍କର କବିତାମାନଙ୍କରେ ଏହି ଭାବର ସରସ ଅଭିବ୍ୟକ୍ତି ଘଟିଛି । ଏହାଛଡା ବୈଷ୍ଣବ କବିମାନେ ଏହି ଅନ୍ତର ସାଧନର ତାତ୍ତ୍ୱିକ ବର୍ଣ୍ଣନା ସେମାନଙ୍କର କାବ୍ୟମାନଙ୍କରେ ପ୍ରଦାନ କରି ଏହାର ମହତ୍ତ୍ୱ ପ୍ରତିଷ୍ଠା କରିଛନ୍ତି । ସେଥିପାଇଁ କବି ଅଭିମନ୍ୟୁ କହିଛନ୍ତି--"ଶ୍ରୀଗୁରୁଙ୍କର ଆଜ୍ଞା ପ୍ରମାଣରେ ତଟସ୍ଥ ଦେହକୁ ଦହି ସିଦ୍ଧ ଦେହ ଧାରଣ କରିବ ଏବଂ ଅଷ୍ଟକାଳ ସେବା କରିବ । ଏହାକୁ ଉତ୍ତମ ବ୍ୟକ୍ତି କେବଳ ଜାଣନ୍ତି ।" (ପ୍ରେ. ଚି. ୬୨।୧୩୫-୧୪୧) ତେଣୁ ଅଷ୍ଟକାଳ ଲୀଳା ମାଧ୍ୟମରେ ଅନ୍ତର ସାଧନା କରାଯାଇଥାଏ । ପରମ ବୈଷ୍ଣବମାନେ ଏହି

ଅଷ୍ଟକାଳ ସେବାକୁ ମନନ କରିଥାନ୍ତି । ଏହା କାଳ ନିୟମ ରହିତ ଓ ସେଉଁଠାରେ ସେପରି ସ୍ୱଭାବରେ ସ୍ମରଣ ହୁଏ, ସେଥିରେ ଭକ୍ତମାନେ ମଗ୍ନ ରହି ନିଜର ଦେହକୁ ପାର୍ଷଦ ଅନ୍ତଶ୍ଚିନ୍ତିତ ଶରୀର ମାଧ୍ୟମରେ ଚିନ୍ତାମଣି ରହିକୁ ପ୍ରାପ୍ତ ହୋଇଥାନ୍ତି । ଏ ସମୟରେ ବ୍ରହ୍ମଚର୍ଯ୍ୟାଦି ପଥ ତାଙ୍କ ନିକଟରେ ତୁଚ୍ଛ ମନେ ହୋଇଥାଏ ।

## ଅଷ୍ଟକାଳ ଲୀଳା ତତ୍ତ୍ୱ--

ମଞ୍ଜରୀ ଭାବରେ ଭାବିତ ଅନ୍ତର ସାଧକଙ୍କ ପାଇଁ ରାଧାକୃଷ୍ଣଙ୍କର ଅଷ୍ଟକାଳ ଲୀଳା ସ୍ମରଣ ଏକାନ୍ତ ଅପରିହାର୍ଯ୍ୟ । ଏହାକୁ ସ୍ୱାରସିକୀ ଲୀଳା କୁହାଯାଇଥାଏ । ଏହି ଲୀଳାର ଗୁରୁତ୍ୱ ସ୍ୱୀକାର କରି ରାୟ ରାମାନନ୍ଦ ଶ୍ରୀଚୈତନ୍ୟଙ୍କୁ ନିର୍ଦ୍ଦେଶ ଦେଇ କହିଥିଲେ, ''କୃଷ୍ଣ ନାମ ଗୁଣ ଓ ଲୀଳାକୁ ଅନୁକ୍ଷଣ ସ୍ମରଣକରିବା ଜୀବର କର୍ତ୍ତବ୍ୟ ।'' (ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ୮/ପୃ ୩୩୮)

ଏକ ଦିନ ନିଶାନ୍ତରୁ ପରଦିନ ନିଶାନ୍ତ ପର୍ଯ୍ୟନ୍ତ ଅଷ୍ଟପ୍ରହର ମଧ୍ୟରେ ସଂଘଟିତ ରାଧାକୃଷ୍ଣଙ୍କର ଆଠ ପ୍ରକାର ବିଭିନ୍ନ ପ୍ରେମଲୀଳାକୁ ବୈଷ୍ଣବ ଶାସ୍ତ୍ରରେ ଅଷ୍ଟକାଳ ଲୀଳା କୁହାଯାଇଛି । ଏହାର ପରିଚୟ ଦେଇ ଅଭିମନ୍ୟୁ ସ୍ୱକୃତ 'ପ୍ରେମ ଚିନ୍ତାମଣି' ଗ୍ରନ୍ଥରେ କହିଛନ୍ତି—

''କହିବା ଦିନକ ଚରିତ । ଯେ ରାଗମାର୍ଗ ଅଭିମତ ॥
ନିତ୍ୟ ନୈମିତ୍ତ୍ୟ ପରିଚର୍ଯ୍ୟା । ଯେ ଉପାସକ ମନରଞ୍ଜା ॥
ପ୍ରାତରୁ ପୁଣ ପ୍ରାତ ଯାଏ । କହିବା ସକଳ ନିର୍ଣ୍ଣୟେ ॥
ଦିନେକ କଥା ମଧ୍ୟେ ତହିଁ । ସବୁର ଭାବ ଥିବ ରହି ॥
(୩\୨୭-୨୯)

ବ୍ରଜ ବୋଲି ଭାଷାରେ ରଚିତ ରାୟ ରାମାନନ୍ଦଙ୍କର 'ଶ୍ରୀକୃଷ୍ଣଲୀଳା' ହେଉଛି ଅଷ୍ଟକାଳଲୀଳାମୂଳକ ପ୍ରଥମ ଗ୍ରନ୍ଥ । ଏହାପରେ ଶ୍ରୀରୂପ ଗୋସ୍ୱାମୀ ଏକାଦଶଟି ଶ୍ଳୋକ ମଧ୍ୟରେ ଏହି ଲୀଳାକୁ ବର୍ଣ୍ଣନା କରି ତାର ନାମ 'ସ୍ମରଣ ମଙ୍ଗଳ ଏକାଦଶ' ରଖିଥିଲେ । ରୂପ ଗୋସ୍ୱାମୀ ତାଙ୍କର ଏହି ଗ୍ରନ୍ଥରେ

ଅଷ୍ଟକାଳ ଲୀଳାର ସଂକ୍ଷିପ୍ତ ପରିଚୟ ଦେଇ କହିଛନ୍ତି- ନିଶାନ୍ତରେ କୃଷ୍ଣକୁଞ୍ଜରୁ ଗୋଷ୍ଠକୁ ପ୍ରବେଶ କରନ୍ତି ଓ ଗୋଦୋହନ ଭୋଜନାଦି କାର୍ଯ୍ୟ କରନ୍ତି । ପ୍ରାତଃ ଏବଂ ସାୟଂ (ସୂର୍ଯ୍ୟାସ୍ତ ପୂର୍ବ ସମୟ)ରେ ସଖାମାନଙ୍କ ସଙ୍ଗରେ ଗୋଚାରଣ ବିହାର କରନ୍ତି । ମଧ୍ୟାହ୍ନ, ନକ୍ତ [ମଧ୍ୟରାତ୍ରି], ପୂର୍ବାହ୍ନ ଓ ଅପରାହ୍ନରେ ରାଧାଙ୍କ ସହିତ ବିପିନରେ ବିଳାସ କରନ୍ତି ଓ ପ୍ରଦୋଷରେ ଗୋଷ୍ଠକୁ ଫେରି ସୁହୃଦମାନଙ୍କୁ ଆନନ୍ଦ ପ୍ରଦାନ କରନ୍ତି ।" [୪୧]

ଏହି 'ସ୍ମରଣ ମଙ୍ଗଳ ଏକାଦଶ' ଗ୍ରନ୍ଥ ଅନୁକରଣରେ କୃଷ୍ଣଦାସ କବିରାଜ ଗୋସ୍ୱାମୀ 'ଗୋବିନ୍ଦ ଲୀଳାମୃତ' ନାମକ ତ୍ରୟୋବିଂଶ ସର୍ଗ ବିଶିଷ୍ଟ ଏକ ଅଷ୍ଟକାଳ ଲୀଳାମୂଳକ ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ ଏବଂ ଏହି ଗ୍ରନ୍ଥର ଆଧାରରେ ଅଭିମନ୍ୟୁଙ୍କ 'ପ୍ରେମ ଚିନ୍ତାମଣି' ରଚିତ ହୋଇଅଛି । ଏତଦ୍‌ବ୍ୟତୀତ ଓଡିଆ ଭାଷାରେ ରଚିତ ଓ ମଧ୍ୟ ଅଷ୍ଟକାଳ ଲୀଳାମୂଳକ କେତେକ ଗ୍ରନ୍ଥ ରଚିତ ହୋଇଥିଲା । ସେଗୁଡିକ ମଧ୍ୟରେ କୃପାସିନ୍ଧୁ ଦାସଙ୍କ 'ଉପାସନା ଦୀପିକା', ନାରାୟଣ ଦାସଙ୍କ 'ପଞ୍ଚାମୃତ ସିନ୍ଧୁ ବିନ୍ଦୁ' ଓ 'ବାରିଧି ଅମୃତ', ଦାଶରଥି ଦାସଙ୍କର 'ସାଧନ ସୁଧାକର' ଭକ୍ତ ଚରଣ ଦାସଙ୍କର 'ମନଃ ଶିକ୍ଷା' ଏବଂ ପଟିଆରାଜା ଦିବ୍ୟସିଂହ ଦେବଙ୍କର 'ଚତୁଃଷଷ୍ଟି ଦଣ୍ଡାତ୍ମିକା' ପ୍ରଣିଧାନ ଯୋଗ୍ୟ । କବି ଅଭିମନ୍ୟୁଙ୍କର 'ପ୍ରେମ ଚିନ୍ତାମଣି' ମଧ୍ୟ ଏହି ଗ୍ରନ୍ଥ ପର୍ଯ୍ୟାୟଭୁକ୍ତ ।

ଦଣ୍ଡ ଭେଦରେ ରାଧାକୃଷ୍ଣଙ୍କର ଏହି ଅଷ୍ଟକାଳଲୀଳାର ବିଶେଷ ଅନୁଶୀଳନ ପାଇଁ ଏଠାରେ ଦାଶରଥି ଦାସଙ୍କର 'ସାଧନ ସୁଧାକର' ଗ୍ରନ୍ଥକୁ ଗ୍ରହଣ କରାଯାଇପାରେ । ଏହି ଗ୍ରନ୍ଥରେ ନିମ୍ନୋକ୍ତ ପ୍ରକାରେ ଅଷ୍ଟକାଳ ଲୀଳାର ବର୍ଣ୍ଣନା କରାଯାଇଛି ।

**ନିଶାନ୍ତ ଦୁଇ ଦଣ୍ଡ ଲୀଳା**—ଏହି ଲୀଳାରେ ବୃନ୍ଦା ଶୁକ, ସାରି ଓ କକ୍‌ଖଟୀ ବାନରୀ ସାହାଯ୍ୟରେ କୃଷ୍ଣଙ୍କର ନିଦ୍ରାଭଙ୍ଗ କରାଇବା ପରେ ସମସ୍ତେ ସ୍ୱପୁର ପ୍ରତ୍ୟାବର୍ତ୍ତନ କରନ୍ତି ।

**ପ୍ରାତଃ ଦୁଇଦଣ୍ଡ ଲୀଳା**—ସ୍ୱପୁରକୁ ଯାଇ ଶୟନ କରିଥିବା ଶ୍ରୀକୃଷ୍ଣ ପୌର୍ଣ୍ଣମାସୀଙ୍କ ଡାକରେ ନିଦ୍ରାତ୍ୟାଗ କରି ପୌର୍ଣ୍ଣମାସୀ ଓ ଯଶୋଦାଙ୍କୁ

ପ୍ରଣାମ କରନ୍ତି । ତତ୍ପରେ ଗୋଦୋହନ କାର୍ଯ୍ୟ ଆରମ୍ଭ ହୁଏ । ଏକାଳରେ ତେଣେ ଶ୍ରୀରାଧା ମଧ୍ୟ ସ୍ୱପୁରରେ ଶଯ୍ୟା ତ୍ୟାଗ କରି ସ୍ନାନାନ୍ତେ ବସ୍ତ୍ର ଅଳଙ୍କାରରେ ବିଭୂଷିତା ହୁଅନ୍ତି । ପରବର୍ତ୍ତୀ ଦୁଇଦଣ୍ଡରେ କୁନ୍ଦଲତା ଜଟିଳାଙ୍କପୁରରୁ ଶ୍ରୀରାଧାଙ୍କୁ କୃଷ୍ଣଙ୍କ ନିମିତ୍ତ ପାକପ୍ରସ୍ତୁତି ପାଇଁ ସଙ୍ଗରେ ଆଣନ୍ତି । ପାକ ପ୍ରସ୍ତୁତ ପରେ କୃଷ୍ଣ ସ୍ନାନସମାପନାନ୍ତେ ଭୋଜନ ମନ୍ଦିରରେ ପ୍ରବେଶ କରନ୍ତି । ଶ୍ରୀରାଧା ରୋହିଣୀଙ୍କ ହସ୍ତରେ କୃଷ୍ଣଙ୍କ ନିମିତ୍ତ ପାକଦ୍ରବ୍ୟ ପଠାନ୍ତି । କୃଷ୍ଣ ବଳରାମଙ୍କ ଭୋଜନାନ୍ତେ ଶ୍ରୀରାଧା ଯଶୋଦାଙ୍କଠାରୁ ବସ୍ତ୍ର-ଅଳଙ୍କାର ଉପହାର ରୂପେ ଗ୍ରହଣ କରି ସ୍ୱପୁରକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ପ୍ରାତଃର ଶେଷ ଦଣ୍ଡରେ କୃଷ୍ଣବଳରାମ ସଖାମାନଙ୍କ ସହ ଗୋଚାରଣକୁ ଯିବା ବାଟରେ ରାଧାକୃଷ୍ଣ ପରସ୍ପର ଦର୍ଶନରେ ଆନନ୍ଦିତ ହୁଅନ୍ତି । ଅଷ୍ଟମ ଦଣ୍ଡରେ ଶ୍ରୀରାଧା ବିଭିନ୍ନ ଅମୃତ ମଣୋହି, ତାମ୍ବୁଳ, ଚନ୍ଦନ ଓ ମାଳାଦି ସଜାଡ଼ି ନବମ ଦଣ୍ଡରେ ଧନିଷ୍ଠାଙ୍କ ହାତରେ ସେସବୁ କୃଷ୍ଣଙ୍କ ନିକଟକୁ ପ୍ରେରଣ କରନ୍ତି ଓ ନିଜେ ସୂର୍ଯ୍ୟପୂଜା ନିମିତ୍ତ ପ୍ରସ୍ତୁତ ହୁଅନ୍ତି । ଦଶମ ଦଣ୍ଡରେ ଶ୍ରୀକୃଷ୍ଣ ସଖାମାନଙ୍କ ସହିତ ଗୋବର୍ଦ୍ଧନ ଉପକଣ୍ଠରେ ବିହାର କରନ୍ତି ଓ ଏକାଦଶ ଦଣ୍ଡରେ ତୁଳସୀ କୃଷ୍ଣଙ୍କ ଠାରୁ ସଙ୍କେତ ନେଇ ଶ୍ରୀରାଧାଙ୍କୁ ଦିଅନ୍ତି । ଦ୍ୱାଦଶ ଦଣ୍ଡରେ ଶ୍ରୀରାଧାଙ୍କର ସୂର୍ଯ୍ୟପୂଜାପାଇଁ ବୃନ୍ଦାବନ ଯାତ୍ରା ହୁଏ । ତ୍ରୟୋଦଶ ଦଣ୍ଡରେ ମଧ୍ୟାହ୍ନ ଲୀଳା ଆରମ୍ଭ ହୁଏ, ଅର୍ଥାତ୍ କୃଷ୍ଣ ଓ ଶ୍ରୀରାଧାଙ୍କର ସାକ୍ଷାତରେ ଭାବ ବିନିମୟ ହୁଏ । ଚତୁର୍ଦ୍ଦଶ ଦଣ୍ଡରେ ଶ୍ରୀକୃଷ୍ଣ କାମ ବିହ୍ୱଳ ହୋଇ ଶ୍ରୀରାଧାଙ୍କୁ ବିଭିନ୍ନ ଗୂଢ଼ବାଣୀ କହିବା ସହିତ ତାଙ୍କର ଅଧର ଚୁମ୍ବନ୍ତି । ପଞ୍ଚଦଶ ଦଣ୍ଡରେ ବଂଶୀଚୋରି ଲୀଳା ହୁଏ । ଷୋଡଶ ଦଣ୍ଡରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ଆଲିଙ୍ଗନ ପୂର୍ବକ ବଂଶୀ ମାଗନ୍ତି । ସପ୍ତଦଶ ଦଣ୍ଡରେ କୁଞ୍ଜ ମନ୍ଦିରରେ ରାଧା ପ୍ରବେଶ କଲାରୁ କୃଷ୍ଣ କେଳିକରି ରାଧାଙ୍କର ବେଶ ବିନ୍ୟାସ କରନ୍ତି । ଅଷ୍ଟାଦଶ ଦଣ୍ଡରେ ଉଭୟେ ଭ୍ରମଣ କରି ବୃନ୍ଦାବନ ଶୋଭା ଉପଭୋଗ କରନ୍ତି । ଊନବିଂଶ ଦଣ୍ଡରେ ରାଧାକୃଷ୍ଣଙ୍କର ଜଳକ୍ରୀଡ଼ା ହୁଏ । ବିଂଶ ଦଣ୍ଡରେ ଜଳକ୍ରୀଡ଼ା ଅନ୍ତେ ବେଶ ରଚନା ହୁଏ ଓ ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ଭୋଜନ କରାଇ ଅବଶେଷାଂଶ ଭୋଜନ କରନ୍ତି । ଏକବିଂଶ ଦଣ୍ଡରେ ଉଭୟେ କୁଞ୍ଜରୁ ଦୂର ହୋଇ ଯାଆନ୍ତି । ଦ୍ୱାବିଂଶ ଦଣ୍ଡରେ କୃଷ୍ଣ ରାଧାଙ୍କ ସହିତ ଚତୁଃଷଷ୍ଠୀ ବନ୍ଧରେ ଉନ୍ମତ୍ତ

ରତିକୀଡ଼ା କରନ୍ତି । ତ୍ରୟୋଦଶ ଦଣ୍ଡରେ ରାଧା ଓ କୃଷ୍ଣଙ୍କ ମଧ୍ୟରେ ପଶାଖେଳ ହୁଏ ଓ ଚତୁର୍ବିଂଶ ଦଣ୍ଡରେ ଶ୍ରୀକୃଷ୍ଣ କପଟ ପୂଜକ ହୋଇ ରାଧାଙ୍କର ସୂର୍ଯ୍ୟପୂଜା ସମାପନ କରନ୍ତି । ପଞ୍ଚବିଂଶତି ଦଣ୍ଡରେ ଶ୍ରୀକୃଷ୍ଣ ଗୋଚାରଣ କରନ୍ତି ଓ ଷଡ୍‌ବିଂଶତି ଦଣ୍ଡରେ ରାଧା ସ୍ୱପୁର ପ୍ରତ୍ୟାବର୍ତ୍ତନ କରି ସପ୍ତବିଂଶ ଦଣ୍ଡରେ ସ୍ନାନ କରନ୍ତି । ଅଷ୍ଟବିଂଶତି ଦଣ୍ଡରେ ଶ୍ରୀକୃଷ୍ଣ ଗୋଚାରଣ ସମାପ୍ତ କରି ଗୃହକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଊନତ୍ରିଂଶ ଦଣ୍ଡରେ ରାଧା କୃଷ୍ଣଙ୍କ ପାଇଁ ସୁଧାଲଡୁ ଓ କୁସୁମ ମାଳ ସଜାଡ଼ି ରଖନ୍ତି ଓ ତ୍ରିଂଶ ଦଣ୍ଡରେ ଶ୍ରୀକୃଷ୍ଣ ନନ୍ଦୀଶ୍ୱର ନିକଟରେ ପହଞ୍ଚିବା ବେଳେ ରାଧା ଅଟ୍ଟାଳିକା ଉପରୁ ତାଙ୍କୁ ଦର୍ଶନ କରନ୍ତି ।

ସେହିପରି ପ୍ରଦୋଷ ଲୀଳାର ପ୍ରଥମ ଦଣ୍ଡରେ ଶ୍ରୀକୃଷ୍ଣ ସ୍ନାନ କରି ବେଶଭୂଷଣ ଓ ଗୋଦୋହନ କରନ୍ତି । ଦ୍ୱିତୀୟ ଦଣ୍ଡରେ ଶ୍ରୀକୃଷ୍ଣ ତୁଳସୀଙ୍କ ଦ୍ୱାରା ଶ୍ରୀରାଧାଙ୍କ ନିକଟକୁ ସଙ୍କେତ ପ୍ରେରଣ କରନ୍ତି । ତୃତୀୟ ଓ ଚତୁର୍ଥ ଦଣ୍ଡରେ ରାଧା ସଖୀମାନଙ୍କୁ ମଣିପୀଠରେ ନୃତ୍ୟ କରିବାକୁ ଆଦେଶ ଦିଅନ୍ତି । ପଞ୍ଚମ ଦଣ୍ଡରେ ଜଟିଳା ଭୋଜନ କରେ ଓ ଷଷ୍ଠ ଦଣ୍ଡରେ ରାଧା ଭୋଜନାନ୍ତେ ତାମ୍ବୁଲ ସଜାଡ଼ନ୍ତି । ସପ୍ତମ ଦଣ୍ଡରେ କୃଷ୍ଣ ନନ୍ଦଙ୍କ କୋଳରେ ବସି ନୃତ୍ୟଗୀତ ଉପଭୋଗ କରନ୍ତି ଓ ତତ୍ପରେ ଅଷ୍ଟମ ଦଣ୍ଡରେ ଯଶୋଦା ତାଙ୍କୁ ଭୋଜନ କରାନ୍ତି । ନବମ ଦଣ୍ଡରେ ରାଧାଙ୍କର କୁଞ୍ଜାଭିସାର ହୁଏ । ସେ ଶୁକ୍ଳପକ୍ଷରେ ଶୁକ୍ଳାଭିସାରିକା ଓ କୃଷ୍ଣପକ୍ଷରେ କୃଷ୍ଣାଭିସାରିକା ବେଶ ଧାରଣ କରିଥାନ୍ତି । ଦଶମ ଦଣ୍ଡରେ ଅଭିସାର ରଚନା ଶେଷ ହୁଏ । ଏକାଦଶ ଦଣ୍ଡରେ ଅଭିସାରିକା ଶ୍ରୀରାଧା କୁଞ୍ଜରେ ପ୍ରବେଶ କରନ୍ତି ଓ ଦ୍ୱାଦଶ ଦଣ୍ଡରେ ରାଧା ଓ କୃଷ୍ଣଙ୍କର ମିଳନ ହେବାରୁ ସଖୀମାନେ ନୃତ୍ୟଗୀତ ସହିତ ବିଭିନ୍ନ ସେବାରେ ଲାଗିପଡ଼ନ୍ତି । ଏହାପରେ ମଧ୍ୟରାତ୍ରି ଲୀଳାରେ ରାଧାକୃଷ୍ଣ ରତିକୀଡ଼ା କରି କୁଞ୍ଜରେ ସୁଖ ନିଦ୍ରା କରନ୍ତି । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଏହା ହେଉଛି ଗୋଟିଏ ଦିନର ନିଶାନ୍ତରୁ ପରଦିନ ନିଶାନ୍ତ ପୂର୍ବ ପର୍ଯ୍ୟନ୍ତ ଅଷ୍ଟକାଳ ଲୀଳା । ଚୈତନ୍ୟ ସମ୍ପ୍ରଦାୟର ସମସ୍ତ କବିମାନେ ଏହି ଅଷ୍ଟକାଳଲୀଳାକୁ ସେମାନଙ୍କର ସୃଷ୍ଟି ସମୂହରେ ଅଳ୍ପ ବହୁତେ ବର୍ଣ୍ଣନା କରିଥିବା ଦେଖାଯାଏ ।

## (ଛ) ସଖୀତତ୍ତ୍ୱ :-

ବୈଷ୍ଣବ ସାହିତ୍ୟରେ ସଖୀମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସଖୀମାନେ ହେଉଛନ୍ତି ରାଧା ଓ କୃଷ୍ଣଙ୍କର ଲୀଳା ସହାୟିକା । ରାଧା ଓ କୃଷ୍ଣଙ୍କ ସହିତ ଏମାନଙ୍କର ସମ୍ପର୍କ ଅତି ଅନ୍ତରଙ୍ଗ । ସଖୀମାନଙ୍କର ସାହଚର୍ଯ୍ୟ ବିନା ରାଧା ଓ କୃଷ୍ଣଙ୍କର ପ୍ରେମଲୀଳା ସାଧିତ ହୋଇ ପାରେ ନାହିଁ । ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ସଖୀମାନଙ୍କର ଏହି ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କକୁ ଉଲ୍ଲେଖ କରାଯାଇଛି । ଏଥିରେ କୁହାଯାଇଛି—

ସଖୀବିନୁ ଏହି ଲୀଳାର ପୁଷ୍ଟି ନାହିଁ ହୟ
ସଖୀ ଲୀଳା ବିସ୍ତାରୟା ସଖୀ ଆସ୍ୱାଦୟ
ସଖୀବିନୁ ଏହି ଲୀଳାୟ ଅନ୍ୟେର ନାହିଁ ଗତି
ସଖୀଭାବେ ଯେଇ ତାରେ କରେ ଅନୁଗତି
ରାଧାକୃଷ୍ଣ କୁଞ୍ଜ ସେବା ସାଧ୍ୟ ସେଇ ପାୟ
ସେଇ ସାଧ୍ୟ ପାଇତେ ଆର ନାଇତ ଉପାୟ
ସଖୀର ସ୍ୱଭାବ ଏକ ଅକଥ୍ୟ କଥନ
କୃଷ୍ଣ ସହ ନିଜ ଲୀଳା ନାହିଁ ସଖୀର ମନ
କୃଷ୍ଣ ସହ ରାଧିକାର ଲୀଳା ଯେ କରାୟ
ନିଜ କେଳି ହୈତେ ତାହେ କୋଟି ସୁଖପାୟ
ରାଧାର ସ୍ୱରୂପ କୃଷ୍ଣ ପ୍ରେମ କଳ୍ପଲତା
ସଖୀଗଣ ହୟ ତା'ର ପଲ୍ଲବ ପୁଷ୍ପପାତା''

(ମଧ୍ୟଲୀଳା, ୮, ପୃ ୩୩୩ ୩୩୪)

ସଖୀମାନଙ୍କର ଏହି ବର୍ଣ୍ଣନା ବିଭିନ୍ନ ଗ୍ରନ୍ଥରେ ଭିନ୍ନ ଭିନ୍ନ ଭାବରେ ପରିବେଷିତ ହୋଇଛି । ଶ୍ରୀରୂପ ଗୋସ୍ୱାମୀଙ୍କ "କୃଷ୍ଣଗଣୋଦ୍ଦେଶ ଦୀପିକା" ଗ୍ରନ୍ଥରେ ଅଷ୍ଟସଖୀମାନଙ୍କର ଠିକ ନିଖି ବର୍ଣ୍ଣନା ଦେଖିବାକୁ ମିଳେ । ପୁନଶ୍ଚ ତାଙ୍କର ଉଜ୍ଜ୍ୱଳ ନୀଳମଣି ଗ୍ରନ୍ଥର କୃଷ୍ଣବଲ୍ଲଭା ପ୍ରକରଣରେ ପାଞ୍ଚପ୍ରକାର ସଖୀମାନଙ୍କର ବର୍ଣ୍ଣନା ଦିଆ ଯାଇଛି । ଯଥା—

୧ । ସଖୀ-କୁସୁମିକା, ବିନ୍ଧ୍ୟା ଓ ଧନିଷ୍ଠା ଆଦି ।
୨ । ନିତ୍ୟସଖୀ-କର୍ପୂର ମଞ୍ଜରୀ, ମଣି ମଞ୍ଜରୀ ଆଦି ।
୩ । ପ୍ରାଣସଖୀ ଶଶିମୁଖୀ, ବାସନ୍ତୀ ଓ ଲସିକାଦି ।
୪ । ପ୍ରିୟସଖୀ-କମଳା, ମଧୁରୀ, ମଞ୍ଜୁକେଶୀ, କନ୍ଦର୍ପ ସୁନ୍ଦରୀ, ମାଧବୀ, ମାଳତୀ ଆଦି ।
୫ । ପରମ ଶ୍ରେଷ୍ଠ ସଖୀ-ଲଳିତା, ବିଶାଖା, ଚିତ୍ରା, ଚମ୍ପକଲତା, ତୁଙ୍ଗ ବିଦ୍ୟା, ରଙ୍ଗଦେବୀ, ଇନ୍ଦୁଲେଖା ଓ ସୁଦେବୀ ।

ଏହି ଶେଷୋକ୍ତ ପରମ ଶ୍ରେଷ୍ଠ ଆଠଜଣ ସଖୀ ହେଉଛନ୍ତି ଶ୍ରୀରାଧାଙ୍କର ଅତ୍ୟନ୍ତ ଅନ୍ତରଙ୍ଗା । ବାସୁଦେବଙ୍କଠାରୁ ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଆଦି କାୟବ୍ୟୂହ ପ୍ରକାଶ ପରି, ସଖୀଗଣ ଶ୍ରୀରାଧାଙ୍କର କାୟବ୍ୟୂହ ସଦୃଶ । ଉକ୍ତ ବ୍ୟୂହ ମଧ୍ୟରେ ବାସୁଦେବଙ୍କର ଐଶ୍ୱର୍ଯ୍ୟ ପ୍ରକଟ ହେଲା ଭଳି ସଖୀମାନଙ୍କ ଦ୍ୱାରା ଶ୍ରୀରାଧାଙ୍କର ଦାସ୍ୟ, ଲାସ୍ୟ, ଛନ୍ଦ, ବିଳାସ, ମାନ, ପ୍ରେମ ଓ ମାଧୁର୍ଯ୍ୟାଦି ପ୍ରକାଶିତ ହୋଇଥାଏ । ତେଣୁ ରାଧା ପୂର୍ଣ୍ଣଚନ୍ଦ୍ର ସଦୃଶ ହେଲେ ସଖୀମାନେ ଚନ୍ଦ୍ରର ଜ୍ୟୋତିର୍ମଣ୍ଡଳ ଭଳି । ଆଲୋଚିତ ଅଷ୍ଟସଖୀଙ୍କ ଅଧୀନତାରେ ଆଠଜଣ ଲେଖାଏଁ ଯୁଥେଶ୍ୱରୀ ଓ ପ୍ରତ୍ୟେକ ଯୁଥେଶ୍ୱରୀଙ୍କ ଅଧୀନତାରେ ପୁନଶ୍ଚ ଆଠଜଣ ଲେଖାଏଁ ସଖୀ ରହିଥାନ୍ତି । ସେମାନଙ୍କର କାର୍ଯ୍ୟ ହେଲା ରାଧାକୃଷ୍ଣଙ୍କ ସେବା କାର୍ଯ୍ୟରେ ସଖୀମାନଙ୍କୁ ସହାୟତା କରିବା । ବୈଷ୍ଣବ ଗ୍ରନ୍ଥମାନଙ୍କରେ ଏହି ସଖୀମାନଙ୍କର ବର୍ଣ୍ଣନାରେ ବୈସାଦୃଶ୍ୟ ପରିଲକ୍ଷିତ ହେଉଥିବାରୁ ଏଠାରେ ବୈଷ୍ଣବ ଅଭିଧାନରେ ପ୍ରଦତ୍ତ ସଖୀ ସମ୍ପର୍କୀୟ ବର୍ଣ୍ଣନାକୁ ଗ୍ରହଣ କରାଯାଇଛି । ହରିଦାସ ବାବାଜୀ ମହାଶୟ ତାଙ୍କ 'ଗୌଡୀୟ ବୈଷ୍ଣବ ଅଭିଧାନ'ରେ ଯେଉଁଭଳି ସଖୀମାନଙ୍କର ବିବରଣୀ ପ୍ରଦାନ କରିଛନ୍ତି, ତାହାକୁ ଏଠାରେ ଏକ ସାରଣୀ ମଧ୍ୟରେ ପ୍ରକାଶ କରାଯାଇପାରେ । (ପୃଷ୍ଠା ୬୫ ଓ ୬୬)

ସଖୀମାନଙ୍କର ଏହି ରୂପ, ଗୁଣ, ବେଶ, ସେବା ପ୍ରଭୃତି ଉକ୍ତିଆ ବୈଷ୍ଣବ ସାହିତ୍ୟରେ ଉଲ୍ଲିଖିତ ଥିଲେ ହେଁ କବି ଅଭିମନ୍ୟୁ ସ୍ୱକୃତ 'ବିଦଗ୍ଧ ଚିନ୍ତାମଣି' ଓ 'ପ୍ରେମ ଚିନ୍ତାମଣି' କାବ୍ୟରେ ଏହାର ସବିଶେଷ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଏହାର ଅବଧାରଣା ନିମିତ୍ତ 'ବିଦଗ୍ଧ

| କ୍ର.ସଂ. | ସଖୀଙ୍କ ନାମ | ଦେହର ରଙ୍ଗ | ବସ୍ତ୍ର | ସେବା | ବୟସ | କୁଞ୍ଜରେ ଅବସ୍ଥିତ |
|---|---|---|---|---|---|---|
| ୧ | ଲଳିତା | ଗୋରଚନା ବର୍ଣ୍ଣ | ମୟୂରପୁଚ୍ଛ ବସ୍ତ୍ର | ତାମ୍ବୁଳ | ୧୪ ବର୍ଷ ୮ ମାସ ୨୭ ଦିନ | ଉତ୍ତରଦିଗ |
| ୨ | ବିଶାଖା | ବିଦ୍ୟୁତ୍‌ବର୍ଣ୍ଣ | ତାରବଳୀ ବସନ | ବସ୍ତ୍ରାଳଙ୍କାର | ୧୪ ବର୍ଷ ୨ ମାସ ୧୫ ଦିନ | ଈଶାନ୍ୟକୋଣ |
| ୩ | ଚିତ୍ରା | କାଶ୍ମୀର ବର୍ଣ୍ଣ | ରକ୍ତ ବସ୍ତ୍ର | ଲବଙ୍ଗମାଳ | ୧୪ ବର୍ଷ ୭ ମାସ ୨୧ ଦିନ | ପୂର୍ବ |
| ୪ | ଇନ୍ଦୁଲେଖା | ହରିତାଳ ବର୍ଣ୍ଣ | ଦାଡ଼ିମ୍ବ ପୁଷ୍ପ ବସ୍ତ୍ର | ଅମୃତାସନ | ୧୪ ବର୍ଷ ୨ ମାସ ୧୦ ଦିନ | ଅଗ୍ନିକୋଣ |
| ୫ | ଚମ୍ପକଲତା | ଚମ୍ପକ ବର୍ଣ୍ଣ | ଘୃସ ପକ୍ଷୀ ବସ୍ତ୍ର | ରତ୍ନମାଳା | ୧୪ ବର୍ଷ ୨ ମାସ ୧୦ ଦିନ | ଦକ୍ଷିଣ |
| ୬ | ରଙ୍ଗଦେବୀ | ପଦ୍ମକିଞ୍ଜଲ ବର୍ଣ୍ଣ | ଜବା ପୁଷ୍ପ ବସନ | ଚନ୍ଦନ | ୧୪ ବର୍ଷ ୨ ମାସ ୪ ଦିନ | ନୈରତ କୋଣ |
| ୭ | ତୁଙ୍ଗବିଦ୍ୟା | କୁଙ୍କୁମ ବର୍ଣ୍ଣ | ପାଣ୍ଡୁ ବସ୍ତ୍ର | ନୃତ୍ୟ | ୧୪ ବର୍ଷ ୧ ମାସ | ପଶ୍ଚିମ |
| ୮ | ସୁଦେବୀ | ପଦ୍ମକିଞ୍ଜଲ ବର୍ଣ୍ଣ | ଜବାପୁଷ୍ପ ବସନ | ଜଳଦାନ | ୧୪ ବର୍ଷ ୧ ମାସ ୪ ଦିନ | ବାୟୁକୋଣ |

❋ "ଗୌଡ଼ୀୟ ବୈଷ୍ଣବ ଅଭିଧାନ"ରେ ପ୍ରଦତ୍ତ ସଖୀମାନଙ୍କର ଏବଂବିଧ ବର୍ଣ୍ଣନା ବ୍ୟତୀତ ଶ୍ରୀ ହନୁମାନ ପ୍ରସାଦ ପୋଦ୍ଦାରଙ୍କର "ଶ୍ରୀରାଧାମାଧବ ଚିନ୍ତନ" ନାମକ ଗ୍ରନ୍ଥରେ "ସୁଧର୍ମାଧ୍ୱବୋଧ" ଗ୍ରନ୍ଥର ଉଦ୍ଧୃତି ସହ ଅଷ୍ଟସଖୀଙ୍କର ପର୍ଣ୍ଣ ପରିଚୟ ଉଲ୍ଲେଖ ଅଛି । ତାହାକୁ ସହଜରେ ବୁଝିବା ପାଇଁ ଏଠାରେ ତାହାର ଏକ ସାରିଣୀ ପ୍ରଦତ୍ତ ହେଲା ।

| କ୍ର.ସଂ. | ଅଷ୍ଟସଖୀଙ୍କ ନାମ | ଦେହର ବର୍ଣ୍ଣ | ବସ୍ତ୍ରର ରଙ୍ଗ | ସେବା | ପିତା, ମାତା, ସ୍ୱାମୀ | ସିଦ୍ଧହସ୍ତା ବିଦ୍ୟା | କୁଞ୍ଜରେ ଅବସ୍ଥିତି | ଯୂଥରେ ଥିବା ସଖୀ |
|---|---|---|---|---|---|---|---|---|
| ୧ | ଲଳିତା | ଗୋରଚନା କାନ୍ତି | ମୟୂରଚନ୍ଦ୍ରିକା ତୁଲ୍ୟ | ତାମ୍ବୁଳ ନିବେଦନ | ପିତା-ବିଶୋକ<br>ମାତା-ଶାରଦା | ସନ୍ଧିକେଳି | ବାମଭାଗ ବା<br>ଉତ୍ତରଦିଗ | ରତ୍ନପ୍ରଭ, ରତିକଳା, ସୁଭଦ୍ରା, ଭଦ୍ରରେଖା, ସୁମୁଖୀ, ମନ୍ମଥ-ମୋଦା, କଳହଂସୀ, କଳାପିନୀ |
| ୨ | ବିଶାଖା | ବିଦ୍ୟୁତ୍ ସଦୃଶ | ତାରାବଳୀ ଶୋଭିତ<br>ପଟ୍ଟବସନ | ଗନ୍ଧ ଚନ୍ଦନ<br>ଅର୍ପଣ | ପିତା-ବାହିକ | ସାମ,ଦାନ,ଭେଦ | ଐଶାନ୍ୟ କୋଣ | ମାଧବୀ, ମାଳତୀ,ଚନ୍ଦ୍ରଲେଖିକା କୁଞ୍ଜରୀ, ହରିଣୀ, ଚପଳା, ସୁରଭୀ, ଶୁଭାନନା |
| ୩ | ଚିତ୍ରା | କୁଙ୍କୁମ | କାଚତୁଲ୍ୟ | ବସନ ଅଳଙ୍କାର<br>ଅର୍ପଣ | ମାତା-ଚର୍ଚ୍ଚିକା<br>ସ୍ୱାମୀ-ପୀଠର | ଜ୍ୟୋତିଷ, ପଶୁବିଦ୍ୟା | ପୂର୍ବଦିଗ | କୁରଙ୍ଗାକ୍ଷୀ ମଣ୍ଡନୀ, ସୁରୁଚିର, ମଣିକୁଣ୍ଡଳା, ଚନ୍ଦ୍ରିକା, ଚନ୍ଦ୍ର-ଲତିକା, କନ୍ଦୁକାକ୍ଷୀ, ସୁମନ୍ଦିର |
| ୪ | ଚମ୍ପକଲତା | ଚମ୍ପାଫୁଲ | ନୀଳ | ଚାମର ସେବା | ପିତା-ଆରାମ<br>ମାତା-ବାଟିକା | — | ଅଗ୍ନିକୋଣ | ରସାଳିକା, ତିଳକିନୀ, କାମିନୀ, କାମନାଗରୀ, ନାଗରୀ,ଶୂରସେନା, ନାଗବଲ୍ଲିକା |
| ୫ | ତୁଙ୍ଗବିଦ୍ୟା | କୁଙ୍କୁମ ଓ ଚନ୍ଦନର<br>ମିଶ୍ରିତ ବର୍ଣ୍ଣ | ଶ୍ୱେତ | ବୀଣାବାଦକ | ପିତା-ପୁଷ୍କର<br>ମାତା-ମେଧା | — | ଦକ୍ଷିଣ | ମଞ୍ଜୁମେଧା, ସୁମେଧା, ମଧୁ-ଲକ୍ଷଣା, ମଧୁସ୍ୟନ୍ଦା, ସୁମଧ୍ୟା, ବରାଙ୍ଗନା, ଗୁଣଚୂଡ଼ା |
| ୬ | ଇନ୍ଦୁଲେଖା | ହରିତାଳ | ଡ଼ାଳିମ୍ବଫୁଲ | ନୃତ୍ୟ | ପିତା-ସାଗର<br>ମାତା-ବେଳା | କୋକଶାସ୍ତ୍ର | ନୈଋତ କୋଣ | ତୁଙ୍ଗଭଦ୍ରା, ରସତୁଙ୍ଗା, ସୁମଙ୍ଗଳ; ଚିତ୍ରଲେଖା,ମଦନାଳସା,ବିଚିତ୍ରାଙ୍ଗୀ |
| ୭ | ରଙ୍ଗଦେବୀ | ପଦ୍ମକେଶର | ଜବାକୁସୁମ | ତାଳଗାୟକ | ପିତା-ରଙ୍ଗସାଗର<br>ମାତା-କରୁଣା | ଅନ୍ନଲେଖ | ପଶ୍ଚିମ ଦିଗ | କଳକଣ୍ଠୀ, କମଳା, ଶଶିକଳା, ଲନ୍ଦିର, ମଧୁରୀକା,କନ୍ଦର୍ପସୁନ୍ଦରୀ ବାମଲତିକା, ପ୍ରେମମଞ୍ଜରୀ |
| ୮ | ସୁଦେବୀ | ଦୁଗ୍ଧ ସୁବର୍ଣ୍ଣ | ପ୍ରବାଳ | ନୃତ୍ୟ<br>ଜଳଦାନ | — | ଶୁକଶାରୀଙ୍କୁ ପଢ଼ାଇବା ଓ କନ୍ଦୁକ କ୍ରୀଡ଼ା | ବାୟୁକୋଣ | କାବେରୀ, ସୁରୁକବରୀ, ମଞ୍ଜୁ-କେଶୀ, ସୁବେଶିକା, ହାରକଣ୍ଠୀ ମନୋହରା । |

ଚିନ୍ତାମଣି'ର ଏକ ଷଷ୍ଠୀ ଗ୍ରନ୍ଥ ଓ 'ପ୍ରେମ ଚିନ୍ତାମଣି' କାବ୍ୟର ବଂଶ ଗ୍ରନ୍ଥ ଅନୁଧ୍ୟାନ ଯୋଗ୍ୟ । କେବଳ କାବ୍ୟକର୍ତ୍ତା ଭିନ୍ନ । ବୈଷ୍ଣବଗୀତିକବିମାନେ ମଧ୍ୟ ମଞ୍ଜରୀ ଭାବରେ ଉଦ୍‌ବୁଦ୍ଧ ହୋଇ ଏହି ସଖୀମାନଙ୍କର ପରିଚୟ ଓ ସେବା ପ୍ରଭୃତିର ଉଲ୍ଲେଖ କରିଛନ୍ତି । ବିଭିନ୍ନ ଗ୍ରନ୍ଥମାନଙ୍କରେ ସଖୀମାନଙ୍କର ଏହି ବର୍ଣ୍ଣନା ମଧ୍ୟରେ ଅସାଦୃଶ୍ୟ ପରିଲକ୍ଷିତ ହୋଇଥିଲେ ହେଁ ରାଧାଙ୍କର ଯେ ସେମାନେ ଏକାନ୍ତ ଆତ୍ମୀୟ ଓ କୃଷ୍ଣ ସେବାରେ ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ସେମାନଙ୍କର ଯେ ସୃଷ୍ଟି ଏଥିରେ ଦ୍ୱିଧା ମତ ନାହିଁ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ମଞ୍ଜରୀ ଦୀକ୍ଷା ପ୍ରାପ୍ତ ବୈଷ୍ଣବ କବିମାନେ ସେମାନଙ୍କର କଳ୍ପନାନୁଯାୟୀ ସଖୀମାନଙ୍କର ବର୍ଣ୍ଣ, ବେଶ, ଅବସ୍ଥିତି ଓ ସେବାଦି ପରିକଳ୍ପନା କରିଥାନ୍ତି ଓ ତାହା ତାଙ୍କର ଶିଷ୍ୟପ୍ରଶିଷ୍ୟଙ୍କ ଦ୍ୱାରା ମଧ୍ୟ ଗୃହୀତ ହୋଇଥାଏ । ଏ ଦୃଷ୍ଟିରୁ ସେଥି ମଧ୍ୟରେ ବୈସାଦୃଶ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ । ଶ୍ରୀଚୈତନ୍ୟ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ବୈଷ୍ଣବ ପରିବାରରେ ସେଥିପାଇଁ ସଖୀସେବାର ପରିକଳ୍ପନା ବିଭିନ୍ନ ପ୍ରକାରର ହୋଇଥାଏ ଓ ତାହା ମଞ୍ଜରୀ ଦୀକ୍ଷା ପ୍ରାପ୍ତ ବୈଷ୍ଣବମାନେ ଗୋପନ ରଖିଥାନ୍ତି ।

## (ଜ) ଭକ୍ତି ଓ ପ୍ରେମତତ୍ତ୍ୱ :

ବୈଷ୍ଣବ ସାହିତ୍ୟର ପ୍ରଧାନ ବର୍ଣ୍ଣନୀୟ ବସ୍ତୁ ହେଉଛି ପ୍ରେମ । ଏହାଦ୍ୱାରା ସାହିତ୍ୟର କଳାଗତ ସୌନ୍ଦର୍ଯ୍ୟ ଯେପରି ଆସ୍ୱାଦ୍ୟ ହୋଇଥାଏ, ସେହିପରି ଏହା ପାଠକକୁ ଆଧ୍ୟାତ୍ମିକ ଉତ୍ତରଣପାଇଁ ଏକ ମାର୍ଗ ନିର୍ଦ୍ଦେଶ କରିଥାଏ । ଜୟଦେବ ଶ୍ରୀଗୀତଗୋବିନ୍ଦରେ ଲେଖିଛନ୍ତି--

"ଯଦି ହରି ସ୍ମରଣେ ମନୋଯଦି ବିଳାସକଳାକୁତୂହଳମ୍
ଶୃଣୁ ତଦା ଜୟଦେବ କୋମଳକାନ୍ତ ପଦାବଳୀମ୍ ।

ମଧ୍ୟଯୁଗୀୟ ଓଡ଼ିଆ କୃଷ୍ଣକାବ୍ୟମାନଙ୍କରେ ରାଧାକୃଷ୍ଣ ତଥା ଗୋପୀ କୃଷ୍ଣଙ୍କର ମଧୁର ପ୍ରେମଲୀଳା ରୂପାୟିତ ହୋଇ ଏହି କାବ୍ୟମାନଙ୍କୁ ରସସିକ୍ତ କରିଅଛି । କୃଷ୍ଣକାବ୍ୟରେ ବର୍ଣ୍ଣିତ ପ୍ରେମରେ ଶୃଙ୍ଗାରିକତାର ଆଭାସ ରହିଥିଲେ ହେଁ ଏହି ଶୃଙ୍ଗାରିକତା ପାର୍ଥିବଶୃଙ୍ଗାରରସଦ୍ୟୋତକ ନ ହୋଇ ଅପ୍ରାକୃତ ଶୃଙ୍ଗାର ରସ ବା ଉଜ୍ଜ୍ୱଳରସ ବା ମଧୁରରସର ପରିପ୍ରକାଶକ

ହୋଇଥାଏ । ଭଗବାନ୍ ଶ୍ରୀକୃଷ୍ଣ ହେଉଛନ୍ତି ରସମୟ ଏବଂ ମଧୁମୟ । ବୈଷ୍ଣବ ଦର୍ଶନ ଶାସ୍ତ୍ରରେ ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱରୂପକୁ ରସାଂଶ ଓ ବୈଭବାଂଶ--ଏମନ୍ତ ଦୁଇ ଅଂଶର ସମ୍ମିଶ୍ରଣ ରୂପେ ବର୍ଣ୍ଣନା କରାଯାଇଛି । ତାହାଙ୍କର ବୈଭବାଂଶରେ ଅପ୍ରାକୃତ ଜଗତର ବିଭିନ୍ନ ଭଗବଦ୍ଧାମ ଓ ତାଙ୍କର ବିଭିନ୍ନ ବିଳାସ, ସ୍ୱାଂଶରୂପ ଓ ଲୀଳାରୂପ ତଥା ତାଙ୍କର ଭିନ୍ନ ଭିନ୍ନ ଐଶ୍ୱର୍ଯ୍ୟଲୀଳା ପ୍ରକାଶ ପାଇଥାଏ । ଏହାର ତାଙ୍କର ପ୍ରକୃତ ସ୍ୱରୂପର ବାହ୍ୟ ପ୍ରକାଶ । ତାଙ୍କର ପ୍ରକୃତ ସ୍ୱରୂପ ହେଉଛି ରସାଂଶ । ତୈତ୍ତିରୀୟ ଉପନିଷଦ୍‌ରେ ମଧ୍ୟ କୁହାଯାଇଛି ସେ ହେଉଛନ୍ତି 'ରସୋ ବୈ ସଃ' ରସଂହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି ସ ଏବ ଆନନ୍ଦାସ୍ୱତ ।' ଭଗବାନ୍ ଶ୍ରୀକୃଷ୍ଣଙ୍କର ଏହି ରସମୟ ରୂପ ହେଉଛି ତାଙ୍କର ମୂଳରୂପ ଏବଂ ଏହା ନିତ୍ୟ ଗୋଲୋକ ଧାମରେ ପ୍ରକାଶିତ । ସେ ନିଜକୁ ଆସ୍ୱାଦନ କରିବାକୁ ନିଜ ଇଚ୍ଛାରେ ଦୁଇଭାଗରେ ବିଭକ୍ତ ହୁଅନ୍ତି । ତାଙ୍କର ରସମୟ ରୂପର ଗୋଟିଏ ଅଂଶ ଭୋକ୍ତା ଓ ଅନ୍ୟଟି ଭୋଗ୍ୟରୂପରେ ପ୍ରକଟିତ ହୋଇଥାଏ । ଭୋକ୍ତା ହେଉଛନ୍ତି ସେ ନିଜେ ଓ ଭୋଗ୍ୟ ହେଉଛନ୍ତି ଶ୍ରୀରାଧା । ଶ୍ରୀରାଧା ହେଉଛନ୍ତି ରସମୟୀ । କୃଷ୍ଣଙ୍କୁ ରସଲୀଳାରେ ଆନନ୍ଦିତ କରିବା ପାଇଁ ସେ ତାଙ୍କର ଦେହରୁ ଅନ୍ୟ କୃଷ୍ଣକାନ୍ତାମାନଙ୍କୁ ସୃଷ୍ଟି କରନ୍ତି । ନିତ୍ୟ ଗୋଲୋକ ସ୍ଥଳୀରେ ଭଗବାନ୍ ଶ୍ରୀକୃଷ୍ଣ ଏମାନଙ୍କ ସହିତ ମାଧୁର୍ଯ୍ୟ ରସଲୀଳାରେ ନିମଗ୍ନ । ଏହା ତାଙ୍କର ସ୍ୱକୀୟା ପ୍ରେମଲୀଳା । ଏଥିରେ ଅଛି ତନ୍ମୟ ଭାବ । ଭଗବାନ୍ ଶ୍ରୀକୃଷ୍ଣଙ୍କର ସ୍ୱୟଂ ରୂପ ବା ମୂଳରୂପ ମର୍ତ୍ତ୍ୟଧାମରେ ପ୍ରକଟିତ ହେଲାବେଳେ ତାଙ୍କର ଏହି ରସପୂର୍ଣ୍ଣ ଲୀଳା ବା ପ୍ରେମ ଲୀଳା ମଧ୍ୟ ମର୍ତ୍ତ୍ୟରେ ପ୍ରକଟିତ ହୋଇଥାଏ । ମର୍ତ୍ତ୍ୟର ସ୍ୱକୀୟା ପ୍ରେମ ତାଙ୍କର ରସପୂର୍ଣ୍ଣ ପ୍ରେମଲୀଳାକୁ ପ୍ରକାଶ କରିବାକୁ ସମର୍ଥ ହୋଇପାରେ ନାହିଁ । କାରଣ ଏଥିରେ ବ୍ୟାକୁଳତା, ଆତ୍ମ ସମର୍ପଣଭାବ, ତନ୍ମୟଭାବ ଓ ମହାଭାବ ଆଦି ନଥାଏ । ସେଥିପାଇଁ ସେ ଯୋଗମାୟାଙ୍କ ଆଶ୍ରୟରେ ତାଙ୍କର ନିତ୍ୟ ଗୋଲୋକସ୍ଥଳୀର କାନ୍ତାଙ୍କୁ ପରବର୍ତ୍ତୀ ହିତା କରି ପରକୀୟା ପ୍ରେମଲୀଳା ମାଧ୍ୟମରେ ମାଧୁର୍ଯ୍ୟ ମଣ୍ଡିତର ରସମୟ ଲୀଳା ପ୍ରକାଶ କରନ୍ତି । ମର୍ତ୍ତ୍ୟର ପ୍ରେମ ଏବଂ କୃଷ୍ଣ ଓ କୃଷ୍ଣକାନ୍ତାଙ୍କ ପ୍ରେମ ମଧ୍ୟରେ ବହୁ ପାର୍ଥକ୍ୟ ଅଛି । ପ୍ରଥମଟିରେ ଅଛି ଆତ୍ମେନ୍ଦ୍ରିୟ ପ୍ରୀତିବାଞ୍ଛା ଓ ଦ୍ୱିତୀୟଟିରେ ଅଛି କୃଷ୍ଣେନ୍ଦ୍ରିୟ

ପ୍ରୀତିବାଞ୍ଛା । କୃଷ୍ଣେନ୍ଦ୍ରିୟ ପ୍ରୀତିବାଞ୍ଛାମୂଳକ ପ୍ରେମ କୃଷ୍ଣଙ୍କୁ ବଶୀଭୂତ କରାଇଥାଏ । ଏଥିପାଇଁ ଶ୍ରୀଚୈତନ୍ୟପନ୍ଥାରେ ଏହି ପ୍ରେମକୁ ସାଧ୍ୟବସ୍ତୁ ଓ ପଞ୍ଚମପୁରୁଷାର୍ଥ ବା ପରମପୁରୁଷାର୍ଥ କୁହାଯାଇଛି । ଏହି ପ୍ରେମ ହେଉଛି ଭକ୍ତିର ଚରମ ଅବସ୍ଥା । ପ୍ରେମ ବିଷୟରେ କହିବା ପୂର୍ବରୁ ପ୍ରଥମେ ଭକ୍ତି ଓ ତାର ବିକାଶକ୍ରମ ସମ୍ବନ୍ଧରେ ଏଠାରେ ସଂକ୍ଷେପରେ କିଛି କହିବା ଉଚିତ ହେବ ।

ବୈଷ୍ଣବଧର୍ମ ସହିତ ଭକ୍ତିବାଦ ଓତଃପ୍ରୋତ ଭାବରେ ଜଡ଼ିତ । ବୈଷ୍ଣବଧର୍ମର ସମସ୍ତ ସମ୍ପ୍ରଦାୟ ଭକ୍ତିକୁ ସାଧନାର ମୁଖ୍ୟ ଅଂଶରୂପେ ଗ୍ରହଣ କରିଥାନ୍ତି । ଚୈତନ୍ୟପନ୍ଥୀ ବୈଷ୍ଣବଧର୍ମରେ ଏହି ଭକ୍ତି ଉପରେ ଗୁରୁତ୍ୱ ଦିଆଯାଇଥିଲେ ହେଁ ପ୍ରେମକୁ ଭକ୍ତିର ଚରମ ବିକାଶ ବୋଲି କୁହାଯାଇଛି । ତେଣୁ ଶ୍ରୀଚୈତନ୍ୟପନ୍ଥୀ ବୈଷ୍ଣବମାନେ ପ୍ରେମ ଉପରେ ପ୍ରାଧାନ୍ୟ ଦେଇ ଏହାକୁ ସାଧ୍ୟବସ୍ତୁ ବୋଲି ଗ୍ରହଣ କରିଥାନ୍ତି । ପ୍ରେମଭକ୍ତି ସଂପର୍କରେ ଆଲୋଚନା କରିବା ପୂର୍ବରୁ ଭକ୍ତି ସଂପର୍କରେ ଯତ୍କିଞ୍ଚିତ ଅବତାରଣା କରିବା ଆବଶ୍ୟକ ମନେହୁଏ ।

'ଭଜ୍' ଧାତୁରୁ ଭକ୍ତି ଶବ୍ଦର ଉତ୍ପତ୍ତି । 'ଭଜ୍'ର ଅର୍ଥ ହେଉଛି ସେବା । ତେଣୁ ଯେଉଁ ସାଧନାରେ ଜ୍ଞାନ କର୍ମ, କଠୋର ତପଶ୍ଚରଣ ଅପେକ୍ଷା ସେବା ଉପରେ ପ୍ରାଧାନ୍ୟ ଦିଆଯାଇଥାଏ, ତାହାର ନାମ ଭକ୍ତି । ପଞ୍ଚରାତ୍ର ଆଗମର ବିଭିନ୍ନ ସଂହିତା, ଶ୍ରୀମଦ୍ ଭଗବଦ୍ ଗୀତା ଓ ଶ୍ରୀମଦ୍ ଭାଗବତ ଆଦି ପୁରାଣମାନଙ୍କରେ ଭକ୍ତିର ବହୁଳ ପ୍ରଶସ୍ତି କରାଯାଇଅଛି । ଶ୍ରୀମଦ୍ ଭଗବଦଗୀତାରେ ଶ୍ରୀକୃଷ୍ଣ କହିଛନ୍ତି —''ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ'' (୧୮\୫୫) । ଅର୍ଥାତ୍ ଭକ୍ତି ଦ୍ୱାରା ମୋର ତତ୍ତ୍ୱକୁ ଜାଣି ହୁଏ । ପୁଣି ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ତାଙ୍କର ଶ୍ରେଷ୍ଠ ଉପଦେଶ ଦେଇ ସେହି ଗୀତାରେ କହିଛନ୍ତି - ''ମନ୍ମନା ଭବ ମଦ୍ଭକ୍ତୋ ମଦ୍ଯାଜୀ ମାଂ ନମସ୍କୁରୁ'' (୧୮/୬୫) ଶ୍ରୀମଦ୍ଭାଗବତରେ ମଧ୍ୟ ଉଦ୍ଧବଙ୍କୁ ଶ୍ରୀକୃଷ୍ଣ କହିଛନ୍ତି–

ନ ସାଧୟତି ମାଂ ଯୋଗୋ ନ ସାଂଖ୍ୟ ଧର୍ମ ଉଦ୍ଧବ ।
ନ ସ୍ୱାଧ୍ୟାୟ ସ୍ତପସ୍ତ୍ୟାଗୋ ଯଥା ଭକ୍ତି ର୍ମମୋର୍ଜିତା ।'' (୧୧.[illegible])

'ନାରଦ ଭକ୍ତିସୂତ୍ର'ରେ [illegible]
କୁହାଯାଇଛି [illegible]

ଏହି ଭକ୍ତି ଲାଭ କଲେ ମନୁଷ୍ୟ କିଛି ବାଞ୍ଛା କରି ନଥାଏ, ଦୁଃଖ କରି ନ ଥାଏ, ଦ୍ୱେଷ କରି ନଥାଏ ଓ ସାଂସାରିକ ବସ୍ତୁରେ ଆନନ୍ଦିତ କିମ୍ବା ଉତ୍ସାହିତ ହୋଇ ନଥାଏ । ଏହି ଭକ୍ତିକୁ ଜାଣି ମନୁଷ୍ୟ ଉନ୍ମତ୍ତ ହୋଇଥାଏ । ସ୍ତବ୍ଧ ହୋଇଥାଏ ଓ ଆତ୍ମାରାମ ହୋଇଥାଏ । (ନାରଦ ଭକ୍ତିସୂତ୍ର ୧\୨-୬) । ପୁନଶ୍ଚ ଏଥିରେ କୁହାଯାଇଛି ଯେ ଏହି ଭକ୍ତିକୁ ପ୍ରାପ୍ତ ହୁଏ, ସେ ନିଜେ ସଂସାରରୁ ତରିବା ସଙ୍ଗେ ସଙ୍ଗେ ଲୋକମାନଙ୍କୁ ମଧ୍ୟ ଉଦ୍ଧାର କରେ । (ନାରଦ ଭକ୍ତିସୂତ୍ର ୮/୫୦) ନାରଦ ଭକ୍ତିସୂତ୍ରରେ ବର୍ଣ୍ଣିତ ପ୍ରେମର ଉଦାହରଣ ହେଉଛି ଗୋପୀପ୍ରେମ । କାରଣ ଏଥିରେ କୁହାଯାଇଛି ଯଥା—'ବ୍ରଜଗୋପୀକାନାମ୍' ।

ଶ୍ରୀରୂପଗୋସ୍ୱାମୀ 'ଭକ୍ତିରସାମୃତ ସିନ୍ଧୁ' ଗ୍ରନ୍ଥରେ ଭକ୍ତିକୁ ସାଧନା ଭକ୍ତି, ଭାବଭକ୍ତି ଓ ପ୍ରେମଭକ୍ତି ଭେଦରେ ତିନି ଭାଗରେ ବିଭକ୍ତ କରି ସାଧନା ଭକ୍ତିକୁ କ୍ଳେଶଘ୍ନୀ ଓ ଶୁଭଦା, ଭାବଭକ୍ତିକୁ ମୋକ୍ଷଲଘୁତା କାରିଣୀ ଓ ସୁଦୁର୍ଲ୍ଲଭା ଏବଂ ପ୍ରେମଭକ୍ତିକୁ ସାନ୍ଦ୍ରାନନ୍ଦ ବିଶେଷାତ୍ମା ଓ ଶ୍ରୀକୃଷ୍ଣାକର୍ଷିଣୀ—ଏହିଭଳି ଦୁଇ ଦୁଇ ଭାଗରେ ବିଭକ୍ତ କରିଛନ୍ତି । (ଶ୍ରୀଭକ୍ତିରସାମୃତ ସିନ୍ଧୁ ୧।୧୭) ।

ରାୟ ରାମାନନ୍ଦ ଶ୍ରୀଚୈତନ୍ୟଙ୍କୁ ସାଧ୍ୟବସ୍ତୁର କ୍ରମ ଦର୍ଶାଇବାକୁ ଯାଇ ପ୍ରେମଭକ୍ତିକୁ ସର୍ବସାଧ୍ୟ ସାର ବୋଲି କହିଛନ୍ତି । ପୁନଶ୍ଚ ସେ ପ୍ରେମଭକ୍ତିର ଦାସ୍ୟପ୍ରେମ ଆଦି ଗୁରୁତି କ୍ରମୋନ୍ନତ ସ୍ତର ଦେଖାଇ କାନ୍ତାପ୍ରେମକୁ ସାଧ୍ୟ ବସ୍ତୁର ଶେଷ ସୀମା ଓ ସର୍ବସାଧ୍ୟ ସାର ଭାବେ ଅଭିହିତ କରିଛନ୍ତି । ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ଅଷ୍ଟମ ପରିଚ୍ଛେଦ, ପୃ ୩୧୮-୩୨୨) ଏହି ଗ୍ରନ୍ଥରେ ପୁଣି କୁହାଯାଇଛି "କୃଷ୍ଣପ୍ରାପ୍ତି ପାଇଁ କର୍ମ ମାର୍ଗର ସାଧନା, ଜ୍ଞାନମାର୍ଗର ସାଧନା ଓ ଭକ୍ତିମାର୍ଗର ସାଧନା—ଏହିପରି ତିନିପ୍ରକାର ସାଧନମାର୍ଗ ରହିଛି । ଏହି ତିନି ସାଧନାରେ ଭଗବାନ୍‌ଙ୍କର ବ୍ରହ୍ମ, ପରମାତ୍ମା ଓ ଭଗବାନ୍—ଏହିପରି ତିନି ପ୍ରକାର ସ୍ୱରୂପର ଅନୁଭୂତ ହୋଇଥାଏ । ଜ୍ଞାନମାର୍ଗରେ ନିର୍ବିଶେଷ ବ୍ରହ୍ମ ପ୍ରକାଶିତ ହୋଇଥାଆନ୍ତି । ଯୋଗମାର୍ଗରେ ଅନ୍ତର୍ଯ୍ୟାମୀ ପରମାତ୍ମା ଓ ଭକ୍ତିମାର୍ଗରେ ପ୍ରକାଶିତ ହୋଇଥାଅନ୍ତି । ଭକ୍ତିମାର୍ଗର ପୁଣି ବୈଧୀ ଓ ରାଗାନୁଗା ଭେଦରେ ବୈଧୀଭକ୍ତଗଣ

ବୈକୁଣ୍ଠର ପାର୍ଷଦ ·ଦେହ ଓ ରାଗଭକ୍ତ ବ୍ରଜରେ ସ୍ୱୟଂ କୃଷ୍ଣଙ୍କୁ ପ୍ରାପ୍ତ ହୋଇଥାଆନ୍ତି ।" ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା ୨୪।ପୃ ୬୫୨-୫୩)

କର୍ମମାର୍ଗ ଓ ଜ୍ଞାନମାର୍ଗର ସାଧନା ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ଏହା ସର୍ବଦା ଭକ୍ତିମାର୍ଗର ଅପେକ୍ଷା ରଖିଥାଏ । ଶାଣ୍ଡିଲ୍ୟଙ୍କର ଭକ୍ତିସୂତ୍ରରେ କୁହାଯାଇଛି-"ଓଁ ସା ମୁଖ୍ୟେତରାପେକ୍ଷିତ୍ୱାତ୍" (ଦଶମ ଶ୍ଲୋକ) ଅର୍ଥାତ୍ ସେହି ଭକ୍ତି ହେଉଛି ଶ୍ରେଷ୍ଠ କାରଣ ଅନ୍ୟ ସାଧନା ଭକ୍ତି ଉପରେ ନିର୍ଭରଶୀଳ । ଭକ୍ତି ହେଉଛି ଅନନ୍ୟ ନିରପେକ୍ଷ ଓ ପରମ ସ୍ୱତନ୍ତ୍ରା । ନାରଦ ଭକ୍ତି ସୂତ୍ରରେ ମଧ୍ୟ କୁହାଯାଇଛି "ସାତୁ କର୍ମଜ୍ଞାନ ଯୋଗେଭ୍ୟୋଗ୍ୟଧିକତରା" ୪/୨୫ ଶ୍ରୀଚୈତନ୍ୟ ଚରିତାମୃତରେ କୁହାଯାଇଛି-

ଏଇ ସବ ସାଧନେର ଅତି ତୁଚ୍ଛ ଫଳ
କୃଷ୍ଣ ଭକ୍ତିବିନା ତାହା ଦିତେନାରେ ଫଲ ।

(ମଧ୍ୟଲୀଳା, ୨୨।ପୃ ୭୦୯)

ଏହି ସାଧନ ଭକ୍ତି ହେଉଛି ଭକ୍ତିର ପ୍ରଥମସ୍ତର । ସତ୍ତ୍ୱ, ରଜ, ତମ-- ଏହି ତ୍ରିଗୁଣ ଯୁକ୍ତ ଭକ୍ତି ସାଧନା ଭେଦରେ ସାଧନଭକ୍ତି ତିନିପ୍ରକାର ହୋଇଥାଏ । ଶ୍ରୀମଦ୍ ଭାଗବତର ତୃତୀୟ ସ୍କନ୍ଧରେ କପିଳଦେବ ମାତା ଦେବହୂତିଙ୍କ ନିକଟରେ ଭକ୍ତିର ବର୍ଣ୍ଣନା ପ୍ରସଙ୍ଗରେ ତାମସୀ, ରାଜସୀ ଓ ସାତ୍ତ୍ୱିକୀ ଭକ୍ତିର ପରିଚୟ ପ୍ରଦାନ କରିଛନ୍ତି । ଏହା ହେଉଛି ସଗୁଣା ଭକ୍ତି । ଏହାପରେ କପିଳ ଦେବ ନିର୍ଗୁଣା ଭକ୍ତିକଥା କହିଛନ୍ତି । ମାତ୍ର ଶ୍ରୀରୂପ ଗୋସ୍ୱାମୀ ଭକ୍ତିରସାମୃତ ସିନ୍ଧୁ ଗ୍ରନ୍ଥରେ ଏହି ନିର୍ଗୁଣା ଭକ୍ତିର ଲକ୍ଷଣ ନିରୂପଣ କରି କହିଛନ୍ତି--

"ଅନ୍ୟାଭିଳାଷିତା ଶୂନ୍ୟଂ ଜ୍ଞାନକର୍ମାଦ୍ୟନାବୃତମ୍
ଆନୁକୂଲ୍ୟେନ କୃଷ୍ଣାନୁଶୀଳନଂ ଭକ୍ତିରୁତ୍ତମା ।"

ଏହି ଉତ୍ତମା ଭକ୍ତି ସାଧନ ଭକ୍ତି, ଭାବଭକ୍ତି ଓ ପ୍ରେମଭକ୍ତି ଭେଦରେ ତ୍ରିବିଧ ।

ଉତ୍ତମାଭକ୍ତି ଇନ୍ଦ୍ରିୟଦ୍ୱାରା ଅନୁଷ୍ଠିତ ହେଲେ ତାହାକୁ ସାଧନ ଭକ୍ତି କୁହାଯାଇଥାଏ । ସାଧନ ଭକ୍ତିର ସାଧ୍ୟ ବା ଲକ୍ଷ୍ୟ ହେଉଛି ଭାବ । ଭାବ ବା ପ୍ରେମ ହେଉଛି ନିତ୍ୟସିଦ୍ଧ ବସ୍ତୁ । ଏହି ନିତ୍ୟସିଦ୍ଧ ଭାବର ହୃଦୟରେ ପ୍ରକଟନ ହେବା ହିଁ ସାଧ୍ୟତା ।" (ଭକ୍ତି ରସାମୃତ ସିନ୍ଧୁ ୨।୧ ୨) । ଶ୍ରୀଜୀବଗୋସ୍ୱାମୀ ପ୍ରୀତିସନ୍ଦର୍ଭରେ ଏହାର ଆଲୋଚନା କରି କହିଛନ୍ତି —

ଶ୍ରୀକୃଷ୍ଣ ତାଙ୍କର ହ୍ଲାଦିନୀ ଶକ୍ତିର କୌଣସି ଏକ ସର୍ବାନନ୍ଦାତିଶାୟିନୀ ବୃତ୍ତିକୁ ନିତ୍ୟତ ଭକ୍ତବୃନ୍ଦଙ୍କ ମଧ୍ୟରେ ନିକ୍ଷିପ୍ତ କରନ୍ତି । ସେହି ବୃତ୍ତି ଭକ୍ତ ଚିତ୍ତରେ ଗୃହୀତ ହୋଇ ଭଗବତ୍ ପ୍ରୀତି ନାମରେ ଅଭିହିତ ହୁଏ । ସାଧନ ଭକ୍ତିର ଅନୁଷ୍ଠାନରେ ଚିତ୍ତ ବିଶୁଦ୍ଧ ହେଲେ, ଶ୍ରୀକୃଷ୍ଣ କର୍ତ୍ତୃକ ନିକ୍ଷିପ୍ତ ହ୍ଲାଦିନୀ ବୃତ୍ତି ବିଶେଷ ଭକ୍ତ ଚିତ୍ତରେ ଗୃହୀତ ହୋଇପାରେ ଏବଂ ଚିତ୍ତ ସହିତ ମିଳିତ ହୋଇପାରେ ଓ ସେତେବେଳେ ତାହା ପ୍ରେମ ନାମ ଧାରଣ କରେ ।

ଉତ୍ତମା ସାଧନ ଭକ୍ତିର ନଅଟି ଲକ୍ଷଣ ବିଷୟରେ ଶ୍ରୀମଦ୍‌ଭାଗବତରେ କୁହାଯାଇଛି । ସେଗୁଡିକ ହେଲା ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ । ଶ୍ରୀଜୀବଗୋସ୍ୱାମୀ ଭକ୍ତି ସନ୍ଦର୍ଭରେ ସାଧନ ଭକ୍ତିକୁ ଆରୋପସିଦ୍ଧା, ସଙ୍ଗସିଦ୍ଧା ଓ ସ୍ୱରୂପସିଦ୍ଧା ଭେଦରେ ତିନି ଭାଗରେ ବିଭକ୍ତ କରିବା ସଙ୍ଗେ ସଙ୍ଗେ ମିଶ୍ରାଭକ୍ତି ଓ ଶୁଦ୍ଧା ଭକ୍ତି ସମ୍ପର୍କରେ ଆଲୋଚନା କରିଛନ୍ତି । ଉପର୍ଯ୍ୟୁକ୍ତ ସାଧନ ଭକ୍ତିକୁ 'ଭକ୍ତିରସାମୃତସିନ୍ଧୁ' ବୈଧୀ ଓ ରାଗାନୁଗା ଭେଦରେ ଦୁଇ ଭାଗରେ ବିଭକ୍ତ କରିଛି । ଯେଉଁ ଭକ୍ତିରେ ଲୋଭ ପ୍ରବର୍ତ୍ତିକା ନ ହୋଇ ଶାସ୍ତ୍ର ଶାସନ ପ୍ରବର୍ତ୍ତକ ହୋଇଥାଏ ତାହାକୁ ବୈଧୀ କୁହାଯାଏ । ଏହା ପୁନଶ୍ଚ ଉତ୍ତମ, ମଧ୍ୟମ ଓ କନିଷ୍ଠ ଭେଦରେ ତ୍ରିବିଧ । ବୈଧୀ ଭକ୍ତିର ୬୪ଟି ଅଙ୍ଗ ରହିଛି ଓ ଏହାର ବିଶଦ ବର୍ଣ୍ଣନା ଭକ୍ତିରସାମୃତସିନ୍ଧୁ ଓ ଶ୍ରୀଚୈତନ୍ୟ ଚରିତାମୃତର ମଧ୍ୟଲୀଳାର ଦ୍ୱାବିଂଶ ପରିଚ୍ଛେଦ ଦିଆଯାଇଛି ।

ରାଗାନୁଗା ଭକ୍ତି ସଂପର୍କରେ ରୂପଗୋସ୍ୱାମୀ 'ଭକ୍ତିରସାମୃତସିନ୍ଧୁ' ଗ୍ରନ୍ଥରେ ଲେଖିଛନ୍ତି—'ବ୍ରଜବାସୀଜନଙ୍କ ମଧ୍ୟରେ ବିରାଜମାନା' ଭକ୍ତିକୁ ରାଗାତ୍ମିକା କୁହାଯାଏ । ଇଷ୍ଟ (ସ୍ୱାନୁକୂଳ ବିଷୟଦ୍ୱିକ) ବସ୍ତୁରେ ସ୍ୱାଭାବିକ

ପରମାବସ୍ଥା—ତାକୁ ରାଗ କୁହାଯାଏ । ସେହି ରାଗମୟୀ ଭକ୍ତିକୁ ରାଗାତ୍ମିକା ଭକ୍ତି କୁହାଯାଏ । ରାଗାତ୍ମିକା ଭକ୍ତିକୁ ରୂପଗୋସ୍ୱାମୀ ଉକ୍ତ ଗ୍ରନ୍ଥରେ କାମରୂପା ଓ ସମ୍ବନ୍ଧରୂପା ଭେଦରେ ଦୁଇ ଭାଗରେ ବିଭକ୍ତ କରିଛନ୍ତି । କାମରୂପା ରାଗାତ୍ମିକା ଭକ୍ତିରେ ସମ୍ଭୋଗ ତୃଷ୍ଣା ଉଦୟ ହେଲେ ମଧ୍ୟ କେବଳ ଶ୍ରୀକୃଷ୍ଣ ସୁଖ ନିମିତ୍ତ ଏଥିରେ ଉଦ୍ୟମ ସର୍ବଦା ପରିଲକ୍ଷିତ ହୋଇଥାଏ । ବ୍ରଜାଙ୍ଗନାମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତି ଏହି ଶ୍ରେଣୀୟ । ଏହି ପ୍ରୀତି ବିଧାନ ପାଇଁ ବ୍ରଜାଙ୍ଗନାମାନେ ବେଦ ଧର୍ମ, କୁଳଧର୍ମ, ସ୍ୱଜନ ଓ ଆର୍ଯ୍ୟ ପଥାଦି ତ୍ୟାଗ କରି ଶ୍ରୀକୃଷ୍ଣଙ୍କୁ ନିଜର ଦେହ, ମନ ସମର୍ପଣ କରିଥିଲେ ।

ସମ୍ବନ୍ଧରୂପା ରାଗାତ୍ମିକା ଭକ୍ତିର ବିଶ୍ଳେଷଣ କରି 'ଭକ୍ତିରସାମୃତ ସିନ୍ଧୁ'ରେ କୁହାଯାଇଛି ଶ୍ରୀଗୋବିନ୍ଦଙ୍କଠାରେ ପିତୃତ୍ୱାଦିର ଅଭିମାନ ଅର୍ଥାତ୍ ମୁଁ ପିତା, ମାତା, ସଖା, ଦାସ ଇତ୍ୟାଦିମାନଙ୍କୁ ସମ୍ବନ୍ଧ ରୂପା ରାଗାତ୍ମିକା କୁହାଯାଇଥାଏ । କୃଷ୍ଣୀଗଣଙ୍କଠାରେ [ଟୀକାରେ ଏହାକୁ ଗୋପିଗଣ ଅର୍ଥରେ ଗ୍ରହଣ କରିବାକୁ କୁହାଯାଇଛି] ଈଶ୍ୱରଜ୍ଞାନ ହୀନତା ଓ ରାଗ ବିଷୟରେ ପ୍ରାଧାନ୍ୟ ଲକ୍ଷିତ ହୋଇଥାଏ । ଏହାର ତାତ୍ପର୍ଯ୍ୟ ହେଉଛି ଦାସ୍ୟ, ସଖ୍ୟ ଓ ବାତ୍ସଲ୍ୟଭାବର ପରିକର ବୃନ୍ଦ ଶ୍ରୀକୃଷ୍ଣଙ୍କଠାରେ ରାଗାତ୍ମିକା ସେବା ଅର୍ପଣ କଲାବେଳେ ସେହି ସମ୍ବନ୍ଧର ଅନୁରୂପ ମର୍ଯ୍ୟାଦା ଅର୍ପଣ କରିଥାଆନ୍ତି । ତାଙ୍କଠାରେ ସେହି ନିର୍ଦ୍ଦିଷ୍ଟ ସମ୍ବନ୍ଧଯୁକ୍ତ ରାଗାତ୍ମିକା ଭାବଛଡ଼ା ଅନ୍ୟ ସମ୍ବନ୍ଧର ଭାବ ଉଦୟ ହୋଇ ନଥାଏ । ରାଗାତ୍ମିକା ଭକ୍ତିର ଅନୁସରଣକୁ ରାଗାନୁଗା ଭକ୍ତି କୁହାଯାଇଥାଏ ।

ରାଗାନୁଗାଭକ୍ତିକୁ ଭକ୍ତିରସାମୃତସିନ୍ଧୁରେ କାମାନୁଗା ଓ ସମ୍ବନ୍ଧାନୁଗା ଭେଦରେ ଦୁଇଭାଗରେ ବିଭକ୍ତ କରାଯାଇଅଛି । କାମାନୁଗା ଭକ୍ତି ମଧ୍ୟ ସମ୍ଭୋଗେଚ୍ଛାମୟୀ ଓ ତତ୍ତଦ୍‌ଭାବେଚ୍ଛାମୟୀ ଭେଦରେ ଦ୍ୱିବିଧ । ସମ୍ଭୋଗେ-ଚ୍ଛାମୟୀ କାମାନୁଗାରେ ଶ୍ରୀକୃଷ୍ଣଙ୍କ ସହିତ ସମ୍ଭୋଗ କରିବାର ଇଚ୍ଛା ଥାଏ । କିନ୍ତୁ ଏହାଦ୍ୱାରା ଶ୍ରୀକୃଷ୍ଣଙ୍କର ସେବା ମିଳି ନଥାଏ । ଭକ୍ତିରସାମୃତସିନ୍ଧୁରେ କୁହାଯାଇଛି - ଯଦି କେହି ବ୍ରଜସୁନ୍ଦରୀଙ୍କର ଅନୁଗତ ସ୍ୱୀକାର କରେ ଓ ରାଗାନୁଗା ଭକ୍ତିର ସମସ୍ତ ବିଧି ଅନୁସାରେ ଭଜନ କରେ, ଏପରିକି

ଦଶାକ୍ଷର, ଅଷ୍ଟାଦଶାକ୍ଷର ମନ୍ତ୍ରରେ ଓ କାମ ଗାୟତ୍ରୀର କାମ ବୀଜରେ ଶ୍ରୀମଦନ ଗୋପାଳଙ୍କର ଭଜନ କରେ । କିନ୍ତୁ ମନରେ ଯଦି ସମ୍ଭୋଗେଚ୍ଛା ବା ରମଣାଭିଳାଷ ରହେ, ତାହା ହେଲେ ସେ ବ୍ରଜେନ୍ଦ୍ର ନନ୍ଦନଙ୍କର ସେବା ପାଏ ନାହିଁ । ସିଦ୍ଧାବସ୍ଥାରେ ସେ ଦ୍ୱାରକା ମହିଷୀଙ୍କ ଦାସୀତ୍ୱ ଲାଭ କରିଥାଏ ।

ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ବିଷୟ କିମ୍ବା କୃଷ୍ଣକାନ୍ତାଙ୍କର ଶ୍ରୀକୃଷ୍ଣଙ୍କ ସହିତ ଲୀଳାଦି କଥାକୁ ଶୁଣି, ବ୍ରଜସୁନ୍ଦରୀଙ୍କର ଆନୁଗତ୍ୟ ସ୍ୱୀକାର ପୂର୍ବକ ଲୀଳାରେ ଶ୍ରୀକୃଷ୍ଣଙ୍କ ସେବା ନିମିତ୍ତ ଲୁବ୍ଧ ହୋଇ ଯିଏ ରାଗାନୁଗାମାର୍ଗରେ ଭଜନ କରିଥାଏ ତାହାର ସେହି ସାଧନ ଭକ୍ତିକୁ ତତ୍ତଦ୍‌ଭାବେଚ୍ଛାମୟୀ କୁହାଯାଇଥାଏ । ଏପରିକି ଯଦି କେହି ସାଧନାରେ ସିଦ୍ଧି ଲାଭ କରି ଲୀଳାରେ ପ୍ରବେଶ କଲାପରେ କୌଣସି କାରଣରୁ ଶ୍ରୀକୃଷ୍ଣ ନିଜର ଚିତ୍ତ ବିନୋଦନ ନିମିତ୍ତ ତାହା ସହିତ ରମଣ କରିବାକୁ ଇଚ୍ଛା କରନ୍ତି ତେବେ ସେଥିପ୍ରତି ସେ ବିମୁଖ ହୋଇଥାଏ । ତତ୍ତଦ୍‌ଭାବେଚ୍ଛାମୟୀ କାମାନୁଗା ଭକ୍ତିକୁ ବିଶୁଦ୍ଧ କାମାନୁଗା ଭକ୍ତି କୁହାଯାଇଥାଏ । ଏହାଦ୍ୱାରା ଭକ୍ତ କାନ୍ତାଭାବର ସେବା ଉପଯୋଗୀ ଗୋପୀ ଦେହ ଲାଭ କରିଥାଏ ।

ସମ୍ବନ୍ଧରୂପା ରାଗାତ୍ମିକା ଭକ୍ତିର ଆଶ୍ରୟ ବା ପରିକରଙ୍କର (ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଭାବର ପରିକର) ଆନୁଗତ୍ୟ ସ୍ୱୀକାର କରି ଯେଉଁ ଭଜନ କରାଯାଏ, ତାହାର ନାମ ସମ୍ବନ୍ଧାନୁଗା କାମରୂପା । (ଭକ୍ତି ରସାମୃତ ସିନ୍ଧୁ ୧\୨\୧୫୯ ୧୬୦)

ସାଧନ ଭକ୍ତିର ପରିପକ୍ୱ ଅବସ୍ଥାରେ ସାଧ୍ୟ ଭକ୍ତିର ଆବିର୍ଭାବ ଘଟିଥାଏ । ଏହି ସାଧ୍ୟ ଭକ୍ତିର ଅପରନାମ ହେଉଛି ଭଗବତ୍ ପ୍ରୀତି । ଏହି ଭଗବତ୍ ପ୍ରୀତି କ୍ରମେ ପରିବର୍ଦ୍ଧିତ ହୋଇ ଭାବଭକ୍ତି ବା ରତି ପର୍ଯ୍ୟନ୍ତ, ରତି ପରିବର୍ଦ୍ଧିତ ହୋଇ ପ୍ରେମ ପର୍ଯ୍ୟନ୍ତ ଓ ପ୍ରେମ ପରିବର୍ଦ୍ଧିତ ହୋଇ ପ୍ରେମର ଚରମାବସ୍ଥା ମହାଭାବ ପର୍ଯ୍ୟନ୍ତ ଗତି କରିଥାଏ । ଭଗବତ୍ ପ୍ରୀତିର ଦୁଇ ଉଦୟସ୍ତର ରହିଛି । ଯଥା—ଅସମ୍ୟକ୍ ଆବିର୍ଭାବ ଓ ସମ୍ୟକ୍ ଆବିର୍ଭାବ । ଏହାକୁ ଯଥାକ୍ରମେ ପ୍ରଥମୋଦୟ ଓ ପ୍ରକଟୋଦୟ ନାମରେ ନାମିତ କରାଯାଇଛି ।

ଉତ୍ତମା ସାଧନ ଭକ୍ତି ସାଧନାରେ ଭଗବତ୍ ପ୍ରୀତିର ପ୍ରଥମୋଦୟ ଅବସ୍ଥା ଘଟିଲେ ତାହାକୁ ଭାବଭକ୍ତି ବା ରତି କୁହାଯାଇଥାଏ । ଏହା ପ୍ରକଟୋଦୟ ଅବସ୍ଥାରେ ପ୍ରେମର ଚରମସ୍ତର ମହାଭାବରେ ପହଞ୍ଚେ । ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ମଧ୍ୟ କୁହାଯାଇଛି "ସାଧନ ଭକ୍ତି-ହୈତେ ହୟ ରତିର ଉଦୟ ରତି ଗାଢ଼ ହେଲେ ତା'ର ପ୍ରେମ ନାମକୟ ।

ପୂର୍ବୋକ୍ତ ସାଧନ ଭକ୍ତିରେ ପୂର୍ଣ୍ଣତା ଆସିଲେ ତାହା ଭାବଭକ୍ତିରେ ପରିଣତ ହୁଏ । ସାଧକ ଚିତ୍ତରେ ଭଗବତ୍ ପ୍ରୀତିର ପ୍ରଥମ ଆବିର୍ଭାବକୁ ପ୍ରୀତିର ଅଙ୍କୁର ବା ଭାବ କୁହାଯାଇଥାଏ । ଏହାର ଅନ୍ୟନାମ ରତି । ଭାବଭକ୍ତିର ସଂଜ୍ଞା ନିରୂପଣରେ ଶ୍ରୀ ରୂପଗୋସ୍ୱାମୀ 'ଭକ୍ତିରସାମୃତସିନ୍ଧୁ'ରେ କହିଛନ୍ତି, ଏହା ଶୁଦ୍ଧସତ୍ତ୍ୱ ବିଶେଷାତ୍ମା, ପ୍ରେମରୂପକ ସୂର୍ଯ୍ୟର କିରଣ ତୁଲ୍ୟ ରୁଚିଦ୍ୱାରା ଚିତ୍ତକୁ ମସୃଣିତ କରିଥାଏ । (୧।୩।୧) । ଶ୍ରୀ ରାଧାଗୋବିନ୍ଦ ନାଥ ଭାବଭକ୍ତିର ସ୍ୱରୂପ ନିରୂପଣ କରିବାକୁ ଯାଇ ଏହାର ସ୍ୱରୂପ ଲକ୍ଷଣ ଓ ତଟସ୍ଥ ଲକ୍ଷଣ ଉପରେ ଆଲୋକପାତ କରିଛନ୍ତି ।

ଆକୃତି ଓ ପ୍ରକୃତିକୁ ବସ୍ତୁର ସ୍ୱରୂପ କୁହାଯାଇଥାଏ । ଉପରେ କୁହାଯାଇଥିବା 'ଶୁଦ୍ଧ ସତ୍ତ୍ୱ ବିଶେଷାତ୍ମା' ହେଉଛି ଭାବଭକ୍ତିର ପ୍ରକୃତି ବା ଆତ୍ମା । ଭଗବାନଙ୍କର ହ୍ଲାଦିନୀ ପ୍ରଧାନ ସ୍ୱରୂପ ଶକ୍ତି ହେଉଛି ଶ୍ରେଷ୍ଠସ୍ୱରୂପ ଶକ୍ତି ଏବଂ ଯାହା ହେଉଛି ଏହାର ବୃତ୍ତି ବିଶେଷ ଭାବଭକ୍ତିର ଆକୃତି ହେଉଛି "ପ୍ରେମ ସୂର୍ଯ୍ୟାଂଶୁ ସାମ୍ୟଭାକ୍' ଅର୍ଥାତ ଉଦୀୟମାନ ପ୍ରାପ୍ତ ପ୍ରେମରୂପକ ସୂର୍ଯ୍ୟର କିରଣ ତୁଲ୍ୟ । ପ୍ରାତଃ କାଳରେ ସୂର୍ଯ୍ୟକିରଣ ଯେପରି ସୂର୍ଯ୍ୟୋ-ଦୟର ସୂଚନା ଦେଇଥାଏ, ସେହିପରି ଭାବଭକ୍ତିର ଆବିର୍ଭାବ ହୃଦୟରେ ଭଗବତ୍ ପ୍ରେମର ଆଶୁ ଆବିର୍ଭାବ ସମ୍ବନ୍ଧୀୟ ସୂଚନା ଦେଇଥାଏ ।

ତଟସ୍ଥ ଲକ୍ଷଣ ହେଉଛି ବସ୍ତୁର କାର୍ଯ୍ୟକାରିତା । 'ରୁଚିଭିଶ୍ଚିତ୍ତମା-ସୃଣ୍ୟକୃତ୍' ହେଉଛି ଭାବଭକ୍ତିର ତଟସ୍ଥ ଲକ୍ଷଣ ଏହାର ଅର୍ଥ ହେଉଛି ଭାବଭକ୍ତି ଭଗବତ୍ ପ୍ରାପ୍ତିର ରୁଚି ବା ଅଭିଳାଷରେ ଚିତ୍ତକୁ ମସୃଣ କରିଥାଏ । 'ଭକ୍ତିରସାମୃତସିନ୍ଧୁ'ରେ' କୁହାଯାଇଛି— ରତି ନିରନ୍ତର ଉଷ୍ଣ ସ୍ୱଭାବ ହେଲେ ବି ପ୍ରବଳତର ଆନନ୍ଦ ରୂପିଣୀ, ଲକ୍ଷଣ ପ୍ରକାଶ କଲେ ମଧ୍ୟ

କୋଟି ଚନ୍ଦ୍ରଠାରୁ ସ୍ୱାଦମୟୀ । ୧।୩।୩୧) ଏଥିରେ ପୁନଶ୍ଚ କୁହାଯାଉଛି ଶୁଦ୍ଧ ସତ୍ତ୍ୱ ବିଶେଷରୂପା ରତି ସାଧକର ମନୋବୃତ୍ତିରେ ଆବିର୍ଭୂତ ହୋଇ ମନୋବୃତ୍ତିର ସ୍ୱରୂପତା ପ୍ରାପ୍ତ ହୋଇଥାଏ । ସ୍ୱ ପ୍ରକାଶ୍ୟରୂପା ହେଲେ ମଧ୍ୟ ଏହି ରତି ମନୋବୃତ୍ତି ସହିତ ତାଦାତ୍ମ୍ୟ ପ୍ରାପ୍ତ ହେବା ଯୋଗେ ମନୋବୃତ୍ତି ଦ୍ୱାରା ପ୍ରକାଶ୍ୟ ବୋଲି ମନେ ହୋଇଥାଏ । ରତି ସ୍ୱୟଂ ଆସ୍ୱାଦ ସ୍ୱରୂପା ହେଲେ ମଧ୍ୟ କୃଷ୍ଣମାଧୁର୍ଯ୍ୟ ଆଦିର ଅନୁଭବ ନିମିତ୍ତ ହେତୁ ରୂପେ ପ୍ରତିପନ୍ନ ହୋଇଥାଏ । (୧।୩।୪)

ଭାବଭକ୍ତି ହୃଦୟରେ ଜାତ ହେଲେ ଭକ୍ତଠାରେ ନଅଟି ଲକ୍ଷଣ ପ୍ରକାଶ ପାଏ । ଯଥା କ୍ଷାନ୍ତି (କ୍ଷୋଭ ବା ଦୁଃଖରେ ଚିତ୍ତର ଅକ୍ଷୁବ୍ଧ ଅବସ୍ଥା) ଅବ୍ୟର୍ଥ କାଳତ୍ୱ (କୃଷ୍ଣସେବା ଓ ଭଜନରେ ସମୟର ପୂର୍ଣ୍ଣ ବିନିଯୋଗ), ବିରକ୍ତି (ଇନ୍ଦ୍ରିୟ ବାସନା ଶୂନ୍ୟତା), ମାନଶୂନ୍ୟତା (ସର୍ବୋତ୍ତମ ହେଲେ ମଧ୍ୟ ନିଜକୁ ଅକିଞ୍ଚନ ମନେ କରିବା) ଆଶାବନ୍ଧ (ଭଗବାନ୍ ପ୍ରାପ୍ତିର ଦୃଢ଼ ସମ୍ଭାବନା), ସମୁତ୍କଣ୍ଠା (ଅଭୀଷ୍ଟ ପ୍ରାପ୍ତି ନିମିତ୍ତ ଗୁରୁତର ଲୋଭ),ନାମଗାନେରୁଚି, ଭଗବଦ୍‌ଗୁଣାଖ୍ୟାନେ ଆସକ୍ତି, ଭଗବାନଙ୍କ ବସତି ସ୍ଥଳରେ ପ୍ରୀତି । ଏହି ନଅଟି ଲକ୍ଷଣ ହେଉଛି ଭାବଭକ୍ତିର ତଟସ୍ଥ ଲକ୍ଷଣ । ଏହାଦ୍ୱାରା ଭକ୍ତର ରୁଚି (ଶ୍ରୀକୃଷ୍ଣ ବିଷୟକ) ମସୃଣ ହେବା ଫଳରେ ପ୍ରେମଭକ୍ତିର ଉଦୟ ଘଟିଥାଏ ।

ପ୍ରେମଭକ୍ତି ଉପାସକ ବୈଷ୍ଣବ ମାନଙ୍କଠାରେ ଏହି ଲକ୍ଷଣଗୁଡ଼ିକ ଉଦୟ ହୋଇଥାଏ । ଅଧିକାଂଶ ଶ୍ରୀଚୈତନ୍ୟ ସମ୍ପ୍ରଦାୟର ବୈଷ୍ଣବ କବି ସ୍ୱକୃଷ୍ଣ କାବ୍ୟରେ ଏହି ଲକ୍ଷଣଗୁଡ଼ିକୁ ଉଲ୍ଲେଖ କରିଅଛନ୍ତି । ଏହି ପରମ୍ପରାର ଶ୍ରେଷ୍ଠ କବି ଅଭିମନ୍ୟୁଙ୍କଠାରେ ଏହି ସମସ୍ତ ଲକ୍ଷଣଗୁଡ଼ିକ କିପରି ପ୍ରକାଶିତ ହୋଇଥିଲା ତାହା ତାଙ୍କର ପ୍ରେମଚିନ୍ତାମଣି ଗ୍ରନ୍ଥରେ ସ୍ଥାନ ପାଇଛି । ଯଥା –

ଭାବ ବିକାର ଅନୁଭବ । ଶୁଣ କହିବା ତାହାସବ ।
ଗୋବିନ୍ଦ କଥା ବିନୁ କାଳ । ବ୍ୟର୍ଥ ନ ଯାଏ ଏକ ତିଳ ।
ବିରକ୍ତି ଆନେ ଅଭିଳାଷେ । ମାନ ନଥାଇ ଏକ ଲେଶେ ।
ଗୋବିନ୍ଦ ପ୍ରାପ୍ତି ଆଶାଫଳେ । ଉତ୍କଣ୍ଠା ଥାଇ ସର୍ବକାଳେ ।
ଗୋବିନ୍ଦ ନାମ ରୁଚି ମଣେ । ଆସକ୍ତି ତଦ୍‌ଗୁଣ ଆଖ୍ୟାନେ ।

ଚୌଷଠ ଶ୍ରେଷ୍ଠ ସ୍ଥାନ ସେହ୍ନ । ଆନ ବୁଦ୍ଧିରେ ବାନ୍ଧ ତହୁଁ ।
କେତ୍ୟାଦି ଅନୁଭାବ ସବେ । ଭାବ ଅଙ୍କୁର ତହୁଁ ଜାତ ॥

ଭଗବାନଙ୍କ ପରିକରମାନଙ୍କ ମଧ୍ୟରେ ପାଞ୍ଚପ୍ରକାର ଭାବର ପରିକର ଦୃଷ୍ଟ ହୋଇଥାନ୍ତି । ସେଗୁଡିକ ହେଉଛନ୍ତି ଶାନ୍ତଭାବ, ଦାସ୍ୟଭାବ, ସଖ୍ୟଭାବ, ବାତ୍ସଲ୍ୟଭାବ ଏବଂ ମଧୁର ଭାବ ବା କାନ୍ତାଭାବ । ଏହି ପାଞ୍ଚପ୍ରକାର ପରିକରମାନଙ୍କର ଭଗବତ୍ ପ୍ରୀତିକୁ ଯଥାକ୍ରମେ ଶାନ୍ତରତି, ଦାସ୍ୟରତି, ସଖ୍ୟରତି, ବାତ୍ସଲ୍ୟରତି ଏବଂ ମଧୁରରତି ବା କାନ୍ତାରତି କୁହାଯାଇଥାଏ । ଶାନ୍ତରସରେ ଶାନ୍ତରତି ପ୍ରେମ ପର୍ଯ୍ୟନ୍ତ, ଦାସ୍ୟରତି ରାଗପର୍ଯ୍ୟନ୍ତ, ସଖ୍ୟ ଓ ବାତ୍ସଲ୍ୟ ରତି ଅନୁରାଗ ପର୍ଯ୍ୟନ୍ତ ଏବଂ କାନ୍ତାରତି ମହାଭାବ ପର୍ଯ୍ୟନ୍ତ, ବର୍ଦ୍ଧିତ ହୋଇଥାଏ ।

ଶ୍ରୀକୃଷ୍ଣ ପ୍ରେୟସୀମାନଙ୍କର ଶ୍ରୀକୃଷ୍ଣ-ରତିକୁ କାନ୍ତାରତି ବା ମଧୁର ରତି କୁହାଯାଇଥାଏ । ଶ୍ରୀକୃଷ୍ଣଙ୍କ ବିବାହିତା ମହିଷୀମାନଙ୍କ ପକ୍ଷରେ ମହାଭାବ ଦୁର୍ଲ୍ଲଭ । ସେମାନଙ୍କର ରତିର ସୀମା କେବଳ ଅନୁରାଗ ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥାଏ ଏବଂ ରାଧାଙ୍କର କୃଷ୍ଣରତି ମହାଭାବରେ ଚରମ-ସୀମା ମାଦନ ପର୍ଯ୍ୟନ୍ତ ବର୍ଦ୍ଧିତ ହୋଇଥାଏ ।

ବ୍ରଜାଙ୍ଗନା ଓ ଶ୍ରୀରାଧାଙ୍କର କାନ୍ତାରତିର ସ୍ୱରୂପ ଏବଂ ସୀମା ସମ୍ବନ୍ଧରେ ଆଲୋକପାତ କରିବା ପାଇଁ ଏଠାରେ କାନ୍ତାରତି ବା ମଧୁରରତି ସମ୍ପର୍କରେ କିଛି କହିବା ଆବଶ୍ୟକ ମନେହୁଏ । ଶ୍ରୀକୃଷ୍ଣ ସମ୍ବନ୍ଧୀୟ ଶୃଙ୍ଗାର ରସରେ ମଧୁରରତିକୁ ସ୍ଥାୟୀ ଭାବ କୁହାଯାଇଥାଏ । 'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥରେ ଶ୍ରୀରୂପ ଗୋସ୍ୱାମୀ ଅଭିଯୋଗ, ବିଷୟ, ସମ୍ବନ୍ଧ, ଅଭିମାନ ତଦୀୟ ବିଶେଷ, ଉପମା ଓ ସ୍ୱଭାବ ଆଦି ଉତ୍ତରୋତ୍ତର ଶ୍ରେଷ୍ଠ ସାତଟିକୁ ମଧୁରରତି ଉତ୍ପନ୍ନର କାରଣ ବୋଲି ନିର୍ଦ୍ଦେଶ କରିଛନ୍ତି । (ସ୍ଥାୟୀଭାବ ପ୍ରକରଣ ଶ୍ଳୋ-୪)

ଭାବ ପ୍ରକାଶର ନାମକୁ ଅଭିଯୋଗ କୁହାଯାଏ । ସ୍ୱକୃତ, ଆଙ୍ଗିକ ଓ ବୃଷ୍ଟିଷ୍ଟ ଭାବବ୍ୟଞ୍ଜନା ଦ୍ୱାରା ଏବଂ ପରଦ୍ୱାରା (ଅର୍ପିତାର୍ଥାଦ୍ ଦୂତୀ ଦ୍ୱାରା) ଏହି ଭାବ ପ୍ରକାଶ ହୋଇଥାଏ । କବି ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିରେ ଏହି ସ୍ୱକୃତ ଅଭିଯୋଗ ବା ସ୍ୱାଭିଯୋଗ ସମ୍ବନ୍ଧରେ ଉଦାହରଣ ଦେଇ

କହନ୍ତି—"ଶ୍ରୀରାଧା ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ପ୍ରଥମ ସାକ୍ଷାତ ଲାଭ କରି ତାଙ୍କ ରୂପଶୋଭା ଓ ବଙ୍କିମ ଭାବଭଙ୍ଗୀରେ ବିମୁଗ୍ଧା ହୋଇପଡିଥିଲେ । ସେ ସଖୀଙ୍କୁ କହିଲେ, ହେ ସଖୀ, ମୁଁ ବନରେ ଆଜି ଶ୍ରୀକୃଷ୍ଣଙ୍କର କି ଅପୂର୍ବ ଶୋଭା ଦେଖିଛି । ସେ ସାକ୍ଷାତ୍ ମଦନ ରାଜ ତୁଲ୍ୟ । ସେ ମୋର ମନ ରୂପକ ଧନକୁ ଚୋରିକରି ନେଲେ । (ବି. ଚି. ୯୨।୧) ତାଙ୍କ ଦେହରୁ ବିଚ୍ଛୁରିତ ଶ୍ୟାମଳକାନ୍ତି ଚାରି ପ୍ରଦେଶକୁ ଅନ୍ଧକାରାବୃତ କରିବା ସଙ୍ଗେ ସଙ୍ଗେ ମୋ ଅନ୍ତରକୁ ମଧ୍ୟ କାମ ଭାବରେ ଆଚ୍ଛାଦିତ କରିଦେବା ଫଳରେ ମୋର ଜ୍ଞାନ ଓ ବିବେକ ରୂପକ ଶଶୀସୂର୍ଯ୍ୟ ଅସ୍ତ ହୋଇଗଲେ । ମୋର ଧୈର୍ଯ୍ୟ ଓ ପାତିବ୍ରତ୍ୟ ଲୁଟିଗଲା । (ବି. ଚି. ୪୭।୩୦)

ପ୍ରାକୃତ ଅଭିଯୋଗ ସମ୍ପର୍କରେ ମଧ୍ୟ ଅଭିମନ୍ୟୁ କହନ୍ତି ଶ୍ରୀରାଧାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଭାବ ବିଷୟରେ ଜାଣିବା ନିମନ୍ତେ ଦୂତୀକୁ ଶ୍ରୀକୃଷ୍ଣ ପଚାରନ୍ତେ, ଦୂତୀ ହସି ହସି କହିଲା ହେ କୃଷ୍ଣ, ଶ୍ରୀରାଧା ଆପଣଙ୍କ ପ୍ରେମ ଜଳରେ ବର୍ତ୍ତମାନ ଭାସୁଥିବା ହେତୁ ବିହ୍ୱଳତମନା ହୋଇପଡିଛନ୍ତି । କାଳିଆ କମଳକୁ ଦେଖି ତାଂକ ଆଖି ଲୋତକ ଜର୍ଜରିତ ହୋଇପଡୁଛି । ନୂଆମେଘ ଦର୍ଶନରେ ତାଙ୍କର ଶରୀର ପୁଲକିତ ହୋଇଉଠୁଛି । ସେ ଯମୁନା ଯିବାକୁ ତରବର ହେଉଛନ୍ତି । ସବୁଠାରୁ ବଡ଼ସ କହେଉଛି ସେ କଜ୍ଜଳର ରସ ଆଙ୍କି ତାକୁ ବାରମ୍ବାର ଚୁମ୍ବି ଦେଉଛନ୍ତି । (ବି. ଚି. ୫୨/୨)

ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ—ଏପରି ପାଞ୍ଚଟିକୁ ବିଷୟ କୁହାଯାଏ । ଏହା ମଧୁରରତି ଉତ୍ପତ୍ତିର କାରଣ ହୋଇଥାଏ । ଶବ୍ଦ ପର୍ଯ୍ୟାୟରେ ଶ୍ରୀକୃଷ୍ଣଙ୍କ ବେଣୁ ଧ୍ୱନି ଶ୍ରବଣରେ ଶ୍ରୀରାଧାଙ୍କ ଚିତ୍ତରେ ରତି ଭାବର ଉଦ୍ରେକ ସ୍ପର୍ଶ ଅର୍ଥାତ୍ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ପାରସ୍ପରିକ ଆଲିଙ୍ଗନାଦି ଅଙ୍ଗସ୍ପର୍ଶ, ରୂପ ଅର୍ଥାତ କୃଷ୍ଣରୂପ ଦର୍ଶନରେ ଶ୍ରୀରାଧାଙ୍କ ପ୍ରକାଶିତ ଭାବ, ରସ ପର୍ଯ୍ୟାୟରେ ଶ୍ରୀରାଧାଙ୍କ ଶ୍ରୀକୃଷ୍ଣଙ୍କ ଉଚ୍ଛିଷ୍ଟ ତାମ୍ବୂଳ ପାନରେ ଆନନ୍ଦିତା ହେବା ଓ ଗନ୍ଧରୂପେ ଶ୍ରୀକୃଷ୍ଣଙ୍କ ଅଙ୍ଗର ମୃଗମଦ ସୌରଭରେ ଶ୍ରୀରାଧାଙ୍କ ବାତୁଳତାକୁ ବୁଝାଇଥାଏ । ଏସବୁର ଉଲ୍ଲେଖ ଅଭିମନ୍ୟୁଙ୍କ ବୈଷ୍ଣବ କାବ୍ୟ ଦ୍ୱୟରେ ପରିଦୃଷ୍ଟ ହୋଇଥାଏ ।

କୂଳ, ରୂପ, ବୈଦଗ୍ଧ, ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଶୌର୍ଯ୍ୟ ଓ ଶୌଣ୍ଡୀର୍ଯ୍ୟାଦି ଅନନ୍ତ କଲ୍ୟାଣ ଗୁଣର ସମାବେଶାତିଶୟ ମଧୁରରତି ଉତ୍ପନ୍ନର କାରଣ ହୋଇଥାଏ । ବିଦଗ୍ଧ ଚିନ୍ତାମଣିର ୫୫ ଗୁଚ୍ଛରେ କବି ଅଭିମନ୍ୟୁ ଶ୍ରୀକୃଷ୍ଣଙ୍କ ରୂପ, ଗୁଣ କପରି ଶ୍ରୀରାଧାଙ୍କଠାରେ ମଧୁରରତି ଉତ୍ପନ୍ନ କରିଛି ତାହା ସଖୀମାନଙ୍କର ଶ୍ରୀକୃଷ୍ଣଙ୍କ ପାଖକୁ ଲିଖିତ ପତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି । ସଖୀଗଣ କୃଷ୍ଣଙ୍କୁ ପତ୍ରରେ ଲେଖିଛନ୍ତି---

ଗୁଣଗଣ ଯତ୍ନ ରତ୍ନ ଭୂଷଣ
ପ୍ରୀତି ସଂସାରେ ଚକ୍ରବର୍ତ୍ତୀ ପଣ
ରତି ପ୍ରୀତି ସେବାକାଙ୍କ୍ଷ କାଙ୍କ୍ଷ
ବିଧିବିଧାନ ବୋଲି ବାକ କରି
ନାହିଁ ନ ଦିଶଇ ହେ
ଏଣୁ ଦେଲୁ ସ୍ୱତନ୍ତ୍ରତା ଉଦୟ ।" (୫୫\୧୮)

ବହୁ ମନୋଜ୍ଞ ବସ୍ତୁ ଥିଲେ ମଧ୍ୟ ବାଞ୍ଛିତ ପ୍ରିୟ ଏକମାତ୍ର ପ୍ରାର୍ଥନୀୟ— ଏହି ପ୍ରକାର ନିଷ୍ଠାପୂର୍ବୀକରଣକୁ ପଣ୍ଡିତଗଣ ଅଭିମାନ କହନ୍ତି । ଏହି ଅଭିମାନ ପ୍ରସଙ୍ଗ ଅଭିମନ୍ୟୁଙ୍କ ପ୍ରେମଚିନ୍ତାମଣିରେ ବର୍ଣ୍ଣିତ ଅଛି । ଶ୍ରୀକୃଷ୍ଣ ପ୍ରୀତିରେ ବଞ୍ଚିତ ରହି ରାଧା ସଖୀମାନଙ୍କୁ କହୁଛନ୍ତି—

"ଶ୍ୟାମବନ୍ଧୁ ପୀରତି କେ ଗୁଡପାରେ
ବାଟୁଦେ ଅଗ୍ନି ଲାଗେ ଯେଉଁ ପ୍ରକାରେ ଯେ" (୨୪\୨୨)

ତାହା ବିଶେଷରେ ପଦ, ଗୋଷ୍ଠୀ ଓ ପ୍ରିୟାଦି ଅନ୍ତର୍ଭୁକ୍ତ ଅଟେ । କୃଷ୍ଣଙ୍କ ପଦଚିହ୍ନ ଦର୍ଶନରେ ଗୋପାଙ୍ଗନାଙ୍କର ପ୍ରେମବିହ୍ୱଳତା ଭାବକୁ ପଦ ପଦାଙ୍କ, ବୃନ୍ଦାବନାଶ୍ରିତ ସ୍ଥାନକୁ ଗୋଷ୍ଠ (ଅର୍ଥାତ୍ ବୃନ୍ଦାବନ ଭ୍ରମଣରେ ଶ୍ରୀରାଧାଙ୍କର ବିହ୍ୱଳଭାବ), ରାଗ, ଅନୁରାଗ ଓ ମହାଭାବଦ୍ୱାରା ଆକ୍ରାନ୍ତ ବ୍ୟକ୍ତିଙ୍କୁ ଶ୍ରୀକୃଷ୍ଣ ପ୍ରିୟଜନ କୁହାଯାଇଥାଏ ।

ଶ୍ରୀକୃଷ୍ଣଙ୍କ ସହିତ ତତ୍ସାମାନ୍ୟ ସାଦୃଶ୍ୟକୁ ଉପମା କୁହାଯାଇଥାଏ । ଅର୍ଥାତ୍ ବୃନ୍ଦାବନର କେଳିକୁଞ୍ଜ ଶ୍ରୀରାଧାଙ୍କ ମନରେ କୃଷ୍ଣ ଭ୍ରମ ଜାତ କରାଏ

ପର ଶ୍ରୀକୃଷ୍ଣଙ୍କ ସହିତ ସାମ୍ୟ ରକ୍ଷା କରିବା ଅନ୍ୟାନ୍ୟ ବସ୍ତୁ, ଯାହା ରାଧାଙ୍କ ମନରେ କୃଷ୍ଣ ଭ୍ରମ ଜାତ କରିଥାଏ, ତାହାକୁ ଉପମା କୁହାଯାଇଥାଏ ।

ବାହ୍ୟକରଣରେ ଅପେକ୍ଷା ନରଖି ଅଭିଯୋଗ ସ୍ୱତଃ ଆବିର୍ଭୂତ ହେଲେ ତାହାକୁ ସ୍ୱଭାବ କୁହାଯାଏ । ଏହା ନିଃସର୍ଗ ଓ ସ୍ୱରୂପ ଭେଦରେ ଦ୍ୱିବିଧ । ଦୃଢ଼ତର ଅଭ୍ୟାସଜନିତ ବାସନାକୁ ନିଃସର୍ଗ କୁହାଯାଏ । ରାଧାଙ୍କର ଏହି ନିଃସର୍ଗ ସ୍ୱଭାବ କପରି ପ୍ରକାଶ ପାଇଛି ତାହା ଲକ୍ଷ୍ୟ କରିବାର କଥା ।

ଶ୍ରୀରାଧା କହୁଛନ୍ତି—ନିନ୍ଦନ୍ତୁ ପ୍ରିୟ ବନ୍ଧୁ ଗଂଜନ୍ତୁ ଗୁରୁ
କଳଙ୍କ ଅପବାଦ ସଂସାରେ ପୂରୁ ଟୋ
ପଡିତେ ଯାଏ ଅନ୍ତେ ଦଣ୍ଡୁ ଶମନ
କୃଷ୍ଣପଦରୁ ଲେଶ ନଟଳୁ ମନ ଗୋ । (ପ୍ରେ.ଚ.୨୬।୨୪)

ସ୍ୱରୂପ ସ୍ୱଭାବ କୃଷ୍ଣନିଷ୍ଠ, ଲଳନାନିଷ୍ଠ ଓ ଉଭୟ ନିଷ୍ଠ ଭେଦରେ ତିନିପ୍ରକାର ଶ୍ରୀରାଧାଙ୍କ ମାନଭଞ୍ଜନ ଓ ଗୋପନପ୍ରୀତି ପାଇଁ ଶ୍ରୀକୃଷ୍ଣଙ୍କ ବିଭିନ୍ନ ନାରୀବେଶ (ନାପିତୁଣୀ, କାଟରାଣୀ, ପାଟରାଣୀ ଇତ୍ୟାଦି) ଧାରଣକୁ କୃଷ୍ଣନିଷ୍ଠ ସ୍ୱଭାବ, ଶ୍ରୀକୃଷ୍ଣଙ୍କ ବିଷୟରେ ନଶୁଣି ଓ ନଦେଖି ରାଧାଙ୍କର କୃଷ୍ଣପ୍ରୀତିକୁ ଲଳନାନିଷ୍ଠ ସ୍ୱଭାବ ଓ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ପାରସ୍ପରିକ ଦର୍ଶନରେ ଉଭୟଙ୍କର ଦ୍ରବୀଭୂତ ଭାବକୁ ଉଭୟନିଷ୍ଠ ସ୍ୱଭାବ କୁହାଯାଏ ।

ଉପରେ ଯେଉଁ ରତି ବିଷୟରେ ଆଲୋଚନା କରାଗଲା ତାହା ତିନିଭାଗରେ ବିଭକ୍ତ । ଯଥା—ସାଧାରଣୀରତି, ସମଂଜସାରତି ଓ ସମର୍ଥା ରତି । ଯେଉଁ ରତି ଅତିଶୟ ଗାଢ଼ ନୁହେଁ, ପ୍ରାୟ ଶ୍ରୀକୃଷ୍ଣଙ୍କର ଦର୍ଶନରେ ଆବିର୍ଭୂତ ହୋଇଥାଏ ଏବଂ ଯେଉଁଥିରେ ସମ୍ଭୋଗ ଇଚ୍ଛା ପ୍ରଧାନ ହୋଇଥାଏ ତାହାକୁ ସାଧାରଣୀ ରତି କୁହାଯାଏ । କୁବ୍‌ଜାର ଶ୍ରୀକୃଷ୍ଣଙ୍କର ପ୍ରତି ରତି ଏ ପ୍ରକାରର । ସମଂଜସା ରତି ତାହାକୁ କୁହାଯାଏ ଯେଉଁ- ଥିରେ 'ମୁଁ ତାଂକର ପତ୍ନୀ, ସେ ମୋର ଦେବତା—ଏହିଭଳି ଭାବ

ଆରୋପିତ ହୋଇଥାଏ । ଏ ପ୍ରକାର ରତି ଗୁଣ, ଚରିତ ଓ କୀର୍ତ୍ତି ପ୍ରଭୃତିର ଶ୍ରବଣରେ ଉଦ୍‌ବୁଦ୍ଧ ହୋଇଥାଏ ଓ କେତେବେଳେ କେତେବେଳେ ସୁରତି ଲାଳସା ଭିନ୍ନ ଭିନ୍ନ ରୂପେ ପ୍ରକଟିତ ହୁଏ । ଏହା ନିକୃଷ୍ଟା ଓ ନିବିଡା । ରୁକ୍ମିଣୀ ଆଦି ଅଷ୍ଟମହିଷୀଙ୍କର ଶ୍ରୀକୃଷ୍ଣ ପ୍ରତି ରତିକୁ ସମଂଜସା ରତି କୁହାଯାଇଥାଏ । ସମର୍ଥାରତି ଏ ଦୁଇ ରତି ଅପେକ୍ଷା ଅନିର୍ବଚନୀୟ ବୈଶିଷ୍ଟ୍ୟ ଯୁକ୍ତ । କାରଣ ଏହା ସ୍ୱ ସ୍ୱ ରୂପୋଦ୍‌ଭବ ଅର୍ଥାତ୍ ଶ୍ରୀକୃଷ୍ଣ ବଶୀକରଣରୂପାତିଶୟପ୍ରାପ୍ତା ରତି ହେତୁ ସମ୍ଭୋଗେଚ୍ଛା ସର୍ବଦା ତାଦାତ୍ମ୍ୟ-ଲାଭ କରିଥାଏ । ଶ୍ରୀକୃଷ୍ଣନିଷ୍ଠ ଶବ୍ଦାଦିର ଯେକୌଣସି ଗୋଟିଏର ଯତ୍‌କିଞ୍ଚିତ ସାମାନ୍ୟ ସମ୍ବନ୍ଧ ଲାଭକରି ଏହାର ଉଦୟ ହୋଇଥାଏ ଓ ଏହାର ଉଦୟରେ କୁଳ, ଧର୍ମ, ଧୈର୍ଯ୍ୟ, ଲଜ୍ଜା ଓ ବାଧାବିଘ୍ନ ଆଦି ସମସ୍ତ ବିସ୍ମୃତ ହୋଇଥାଏ । ଏହା ନିବିଡତମା ଏବଂ ଅନନ୍ୟଭାବ ବିହ୍ୱଳିତା । ଗୋପାଙ୍ଗନା ମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଯେଉଁ ରତି, ତାହା ଏହି ପର୍ଯ୍ୟାୟର । ଏହି ରତି ଦୃଢ଼ୀଭୂତା, ଅପ୍ରତିହତା ହେଲେ ତାହା ପ୍ରେମ ନାମ ଧାରଣ କରେ ଓ ସେହି ପ୍ରେମ କ୍ରମେ ବଢି ବଢି ମହାଭାବରେ ପରିଣତ ହୁଏ । ତେଣୁ ଶ୍ରୀଚୈତନ୍ୟ ଚରିତାମୃତରେ କୁହାଯାଇଛି—

ପ୍ରେମାକ୍ରମେ ବଢି ହୟ ସ୍ନେହମାନ ପ୍ରଣୟ
ରାଗ ଅନୁରାଗ ଭାବ ମହାଭାବ ହୟ ।

ପ୍ରେମ କିପରି କ୍ରମ ବିକାଶ ଲାଭକରି ମହାଭାବରେ ପରିଣତ ହେଉଛି ତାହା ଦେଖାଯାଉ ।

ଭାବ ବା ରତି ଯେତେବେଳେ ଗାଢତା ପ୍ରାପ୍ତ ହୁଏ ଏବଂ ତାହା ଫଳରେ ଚିତ୍ତ ଯେତେବେଳେ ସମ୍ୟକ୍ ରୂପେ ମସୃଣ ହୁଏ ଏବଂ ଶ୍ରୀକୃଷ୍ଣଙ୍କ ବିଷୟରେ ଅତିଶୟ ମମତା ହୃଦୟରେ ଅଙ୍କିତ ହୁଏ, ପଣ୍ଡିତଗଣ ସେତେବେଳେ ତାକୁ ପ୍ରେମ କହନ୍ତି । (ଭକ୍ତି ରସାମୃତ ସିନ୍ଧୁ ୧।୪।୧) ପ୍ରେମର ମଧ୍ୟ ସ୍ୱରୂପ ଲକ୍ଷଣ ଓ ତଟସ୍ଥ ଲକ୍ଷଣ -- ଏହିପରି ଦୁଇଟି ଲକ୍ଷଣ ରହିଛି ।

ପ୍ରେମ ହେଉଛି ଭାବର ଗାଢ ଅବସ୍ଥା । ଭାବ ବା ରତିର ପ୍ରକୃତି ହେଉଛି ହ୍ଲାଦିନୀସମ୍ବିତ୍ ପ୍ରଧାନ ସ୍ୱରୂପ ଶକ୍ତି । ତେଣୁ ପ୍ରେମର ପ୍ରକୃତି ବା

ଉପାଦାନ ହେଉଛି ତାହା । ଏହାର ଆକୃତି ହେଉଛି ସାନ୍ଦ୍ରତା ବା ଗାଢତା । ସୁତରାଂ ପ୍ରେମର ସ୍ୱରୂପ ଲକ୍ଷଣ ଗାଢତ୍ୱ ପ୍ରାପ୍ତ ଭଗବତ୍ ପ୍ରୀତି ବୋଲି "ଗୌଡ଼ୀୟ ବୈଷ୍ଣବ ଦର୍ଶନ" ଗ୍ରନ୍ଥରେ କୁହାଯାଇଛି । (ପ୍ରେମତତ୍ତ୍ୱ ପୃ ୫୫)

ପ୍ରେମର ତଟସ୍ଥ ଲକ୍ଷଣ ହେଉଛି ସମ୍ୟକ୍ ମସୃଣିତ ସ୍ୱାନ୍ତତ୍ୱ ଏବଂ ମମତ୍ୱାତି ଶଯ୍ୟାଙ୍କିତତ୍ୱ । 'ପ୍ରୀତି ସନ୍ଦର୍ଭ'ରେ ଜୀବ ଗୋସ୍ୱାମୀ ଲେଖିଛନ୍ତି – ଅତିଶୟ ମମତାର ଆବିର୍ଭାବ ହେତୁ ଯେଉଁ ସମୃଦ୍ଧା ପ୍ରୀତି ଜନ୍ମେ, ତାହାର ନାମ ପ୍ରେମ । (ଅନୁଚ୍ଛେଦ-୮୪) ଧ୍ୱଂସର କାରଣ ବିଦ୍ୟମାନଥିଲେ ହେଁ ଯାହା ଧ୍ୱଂସ ପ୍ରାପ୍ତ ହୁଏ ନାହିଁ ଏବଂ ଯାହା ଯୁବକ ଯୁବତୀଙ୍କ ଭାବବନ୍ଧନର ହେତୁ ତାହାକୁ ରୂପଗୋସ୍ୱାମୀ ପ୍ରେମ ଆଖ୍ୟା ଦେଇଛନ୍ତି । (ଉଜ୍ଜ୍ୱଳ ନୀଳମଣି, ସ୍ଥାୟୀଭାବ ପ୍ରକରଣ ସେ ପ୍ରେମଙ୍କୁ ଶ୍ଳୋକ-୬୩) ଭାବୋତ୍ଥ ଓ ଅତି ପ୍ରସାଦୋତ୍ଥ – ଏହିପରି ଭାବରେ ବିଭକ୍ତ କରିଛନ୍ତି ।

ଅନ୍ତରଙ୍ଗ ଭକ୍ତି ସମୂହଙ୍କର ନିରନ୍ତର ସେବା ଅନୁଷ୍ଠାନଦ୍ୱାରା ଭାବ ଯେତେବେଳେ ପରମୋତ୍କର୍ଷ ଅବସ୍ଥା ପ୍ରାପ୍ତ ହୁଏ, ସେତେବେଳେ ତାହାକୁ ଭାବୋତ୍ଥ ପ୍ରେମ କୁହାଯାଇଥାଏ । (ଭକ୍ତି ରସାମୃତ ସିନ୍ଧୁ ୧।୪।୨) ଏହା ବୈଧୀ ଓ ରାଗାନୁଗା ଭେଦରେ ଦ୍ୱିବିଧ । ବୈଧୀ ଭାବୋତ୍ଥ ପ୍ରେମ ସମ୍ପର୍କରେ ଶ୍ରୀ ରୂପଗୋସ୍ୱାମୀ ଶ୍ରୀମଦ୍ଭାଗବତରୁ ଉଦ୍ଧାର କରି କହନ୍ତି – 'ଏହି ରୂପେ ବ୍ରତଶୀଳ ଗ୍ରହଣ କରି ଯିଏ ସ୍ୱପ୍ରିୟ ଭଗବାନଙ୍କର ନାମ କୀର୍ତ୍ତନ କରେ, ସେହି କୀର୍ତ୍ତନ ଫଳରେ ତାହାଠାରେ ଅନୁରାଗର ଉଦୟ ହୁଏ ଏବଂ ଅନୁରାଗ ହେତୁ ସେ ଲୋକାନୁପେକ୍ଷାଶୂନ୍ୟ ହୋଇ ଉଚ୍ଚସ୍ୱରରେ ହାସ୍ୟ କରେ, କେତେବେଳେ ରୋଦନ କରେ, କେତେବେଳେ ଚିତ୍କାର କରେ ଏବଂ କେତେବେଳେ ଉନ୍ମତ୍ତ ପ୍ରାୟ ନୃତ୍ୟକରେ' (ତତ୍ରୈବ ୧।୪।୪) ରାଗାନୁଗୀୟ ଭାବୋତ୍ଥପ୍ରେମର ଏକ ଉଦାହରଣ ଦେବାକୁ ଯାଇ ରୂପଗୋସ୍ୱାମୀ ପଦ୍ମପୁରାଣର ଉକ୍ତିକୁ ଉଦ୍ଧାର କରି କହିଛନ୍ତି --- 'ବ୍ରହ୍ମଚର୍ଯ୍ୟ-ପରାୟଣା ବରାନନା ଚନ୍ଦ୍ରକାନ୍ତି ଶ୍ରୀକୃଷ୍ଣଙ୍କ ପ୍ରିୟବାର୍ତ୍ତାରେ ସ୍ନିଗ୍ଧା ହୋଇ ପୁଲକାଞ୍ଚିତ କଳେବରରେ ଶ୍ରୀକୃଷ୍ଣ ଗାଥାଗାନ କରି କରି ଏବଂ ଶ୍ରୀକୃଷ୍ଣ ମୂର୍ତ୍ତି ଧ୍ୟାନ କରି କରି ଅନ୍ୟ କାହାକୁ ପତି ରୂପେ କାମନା କରି ନଥିଲା । (ତତ୍ରୈବ, ୧।୪।୫) ।

ଭଗବାନ୍ ହରିଙ୍କର ସ୍ୱୀୟ ଅଙ୍ଗଦାନାଦିକୁ ଅତି ପ୍ରମାଦ କୁହାଯାଏ ସେଥିରୁ ଯେଉଁ ପ୍ରେମର ଉଦୟ ହୁଏ ତାହାର ନାମ ଅତି ପ୍ରମାଦୋତ୍‌ଥ ପ୍ରେମ । (ତତ୍ରୈବ ୧।୬।୭) ଗୋପାଙ୍ଗନାଙ୍କର ପ୍ରେମ ଏହି ଶ୍ରେଣୀୟ । ଅତିପ୍ରମାଦୋତ୍‌ଥ ପ୍ରେମକୁ ଭକ୍ତିରସାମୃତ ସିନ୍ଧୁରେ ଦୁଇଭାଗରେ ବିଭକ୍ତ କରାଯାଇଅଛି । ତାହା ହେଉଛି ମାହାତ୍ମ୍ୟ 'ଜ୍ଞାନଯୁକ୍ତ' ଓ କେବଳ ମାଧୁର୍ଯ୍ୟ ଜ୍ଞାନଯୁକ୍ତ) । ମାହାତ୍ମ୍ୟଜ୍ଞାନଯୁକ୍ତ ପ୍ରେମରେ ଏ ଈଶ୍ୱର'—ଏହି ଭାବ ଥାଏ । ସଖ୍ୟାଦି ଭାବ ସଂକୋଚକ ସମ୍ଭ୍ରମ ବିଶେଷ ଏଥିରେ ଲକ୍ଷିତ ହୋଇଥାଏ । ମାହାତ୍ମ୍ୟ ଜ୍ଞାନଯୁକ୍ତ ଅଥଚ ସୁଦୃଢ଼ ମମତାମୂଳକ ଓ ସମସ୍ତ ଶ୍ରେୟୋହି ବିଷୟରେ ଅଧିକ ସ୍ନେହକୁ ଭକ୍ତି କୁହାଯାଏ ଏବଂ ଏହି ଭକ୍ତି ବଳରେ ସାର୍ଷ୍ଟି ପ୍ରଭୃତି ମୁକ୍ତି ମିଳିଥାଏ ।

କେବଳ ପ୍ରେମ ହେଉଛି ମାଧୁର୍ଯ୍ୟ ଜ୍ଞାନଯୁକ୍ତ । ଶ୍ରୀକୃଷ୍ଣଙ୍କ ପ୍ରତି ଫଳ-କାମନା ରହିତ ପ୍ରେମ ସର୍ବସ୍ୱ ନିରବଚ୍ଛିନ୍ନ ମନୋଭାବକୁ କେବଳ ଭକ୍ତି କୁହାଯାଇଥାଏ । ଏଥିରେ କୃଷ୍ଣ ବଶୀଭୂତ ହୋଇଥାଆନ୍ତି ।

"ଉଜ୍ଜ୍ୱଳନୀଳମଣି' ଗ୍ରନ୍ଥରେ ରୂପଗୋସ୍ୱାମୀ ଗୋପାଙ୍ଗନାମାନଙ୍କର ପ୍ରେମକୁ ପ୍ରୌଢ଼ପ୍ରେମ, ମଧ୍ୟପ୍ରେମ ଓ ମନ୍ଦପ୍ରେମ ଭେଦରେ ତିନି ଭାଗରେ ବିଭକ୍ତ କରିଛନ୍ତି । (ସ୍ଥାୟୀଭାବ ପ୍ରକରଣ, ଶ୍ଳୋ। ୬୬ ୬୭) କୌଣସି ସମୟରେ ବିଳମ୍ବାଦି କାରଣ ଯୋଗେ ଅନୁପସ୍ଥିତି ହେତୁ ନାୟକ ନାୟିକା ହୃଦୟରେ ଦୃତଖେଦ ଉତ୍ପନ୍ନ ହେଲେ, ତାହାକୁ ପ୍ରୌଢ଼ପ୍ରେମ କୁହାଯାଏ ।

ଯାହା ଅନ୍ୟାନ୍ୟ କାନ୍ତାମାନଙ୍କର ଉପଲବ୍ଧି ପାଇଁ ସାଦର ଅଭିଲାଷ ବହନ କରେ ତାହାକୁ ମଧ୍ୟ-ପ୍ରେମ କୁହାଯାଏ ।

ସଦାବେଳେ ଘନିଷ୍ଠ ପରିଚୟ ହେତୁ କାନ୍ତ ଯାହାକୁ ତ୍ୟାଗ କରି-ପାରେ ନାହିଁ ବା ଆଦର କରିପାରେ ନାହିଁ ତାହାକୁ ମନ୍ଦପ୍ରେମ କୁହାଯାଏ ।

ପୁନଶ୍ଚ ଉଜ୍ଜ୍ୱଳନୀଳମଣି ଗ୍ରନ୍ଥରେ ରୂପଗୋସ୍ୱାମୀ ଏହି ପ୍ରେମ ସମ୍ପର୍କରେ କହନ୍ତି ଯେଉଁ ପ୍ରେମରେ ବିଚ୍ଛେଦ ଜନିତ ଅସହିଷ୍ଣୁତା ପ୍ରକାଶ ପାଏ ତାହାକୁ ପ୍ରୌଢ଼ପ୍ରେମ, ଯେଉଁଠି ବିଚ୍ଛେଦ ଦୁଃଖ କଷ୍ଟେମଷ୍ଟେ ସହ୍ୟ କରାଯାଏ

ତାହାକୁ ମଧ୍ୟ ପ୍ରେମ ଓ ଯୌନ ପ୍ରେମରେ କାଳବଶତଃ ଓ ସ୍ଥଳ ବିଶେଷରେ ବନ୍ଧୁତ୍ୱ ଘଟିଥାଏ, ତାହାକୁ ମହାପ୍ରେମ କୁହାଯାଏ । ଅଭିମନ୍ୟୁଙ୍କ ପ୍ରେମଚିନ୍ତାମଣିର ୫୬ ଛାନ୍ଦରେ ଏ ଧରଣର ଯୌନପ୍ରେମର ବିଶଦ ବର୍ଣ୍ଣନା ପ୍ରଦତ୍ତ ହୋଇଛି ।

ପ୍ରେମ ପରମାବସ୍ଥାକୁ ପ୍ରାପ୍ତ ହେଲେ ଚିତ୍ତରୂପକ ପ୍ରଦୀପକୁ ପ୍ରକାଶ କରି ହୃଦୟକୁ ଦ୍ରବୀଭୂତ କରେ । ଏହା ସ୍ନେହ ଆଖ୍ୟା ଧାରଣ କରେ । ସ୍ନେହ ଆବିର୍ଭୂତ ହେଲେ ଦର୍ଶନାଦି (ପରମଧର ଲୀଳା, ରୂପ, ଗୁଣ ଶୀଳ ଚରିତ ଆଦିର ଶ୍ରବଣ, ସ୍ମରଣ ଓ ଅନୁମୋଦନାଦିରେ କୌଣସି ପ୍ରକାର ତୃପ୍ତି ଆସେ ନାହିଁ । (ଉ. ନୀ. ସ୍ଥାୟୀଭାବ ପ୍ରକରଣ ଶ୍ଳୋ । ୭୯) ହୃଦୟର ଦ୍ରବୀଭୂତ ଭାବ ଯଦି ପରସ୍ପର ଅଙ୍ଗସଙ୍ଗ ହେତୁକ ହୁଏ, ତେବେ ତାହା କନିଷ୍ଠ, ପରସ୍ପର ଦର୍ଶନ ହେତୁକ ହେଲେ ତାହା ମଧ୍ୟମ ଏବଂ ପରସ୍ପରର ଶ୍ରବଣ ହେତୁକ ହେଲେ ତାହା ଶ୍ରେଷ୍ଠ ନାମରେ ଅଭିହିତ ହୁଏ ।

ନୀଡ଼ାକୁଞ୍ଜରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଆଲିଙ୍ଗିତ । ଶ୍ରୀରାଧାଙ୍କର ସ୍ୱେଦାଶ୍ରୁ ପ୍ରଭୃତି ସାତ୍ତ୍ୱିକ ବିକାର ଜାତ ହେଲେ, ତାହାକୁ ଅଙ୍ଗସଙ୍ଗ ହେତୁକ ଚିତ୍ତର ଦ୍ରବୀଭୂତ ଅବସ୍ଥା କୁହାଯାଇଥାଏ । ଶ୍ରୀକୃଷ୍ଣଙ୍କ ଶ୍ରୀରାଧାଙ୍କୁ କୋଳ କରିବାରୁ ତାଙ୍କଠାରେ କମ୍ପ ପ୍ରଭୃତି ସାତ୍ତ୍ୱିକ ବିକାର ଜାତ ହୋଇଛି । କବି ଅଭିମନ୍ୟୁ ଏହାର ଉଲ୍ଲେଖ କରି କହନ୍ତି —

କୁଞ୍ଜୁ ଶେଯେ ବସି          କୋଳେ ବସାଇ ଶଶୀ
ଧରି ସୁଷମା ଅକଥନ
ସଜଳ ନବଘନ          କୋଳ କଳାତ ଘନ
ଲତା ହେବାରୁ ସୁଯତନ ଯେ, କମ୍ପେ ଧନୀ
ହେବାରୁ ଅନ ଅନୁଭବ
କି ମାନଇ କମ୍ପିତ ଛବି
କାମ ହେମ ପିତୁଳା          ଯନ୍ତ୍ର ବର୍ତ୍ତନ ତୁଳା
ବୋଲି ପାରିବ କେଉଁ କବି ସେ । (ପ୍ରେ. ଚି. ୮୧।୨୪)

ପ୍ରେମ ଚିନ୍ତାମଣିର ୩୦ ଛାନ୍ଦରେ ଏହାର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।

କୁଞ୍ଜଦ୍ୱାରରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ପରସ୍ପରକୁ ଦେଖିଲାବେଳେ ସେମାନଙ୍କ ଚିତ୍ତ ଦ୍ରବୀଭୂତ ହୋଇ ସାତ୍ତ୍ୱିକ ବିକାରମାନ ପ୍ରକାଶିତ ହେଲେ ତାହାକୁ ଦର୍ଶନ ହେତୁକ ମନୋଦ୍ରବ କୁହାଯାଏ । 'ବିଦଗ୍ଧ ଚିନ୍ତାମଣି'ରେ କବି ଅଭିମନ୍ୟୁ କହିଛନ୍ତି ଯେ—କୁଞ୍ଜ ଦ୍ୱାରରେ କୃଷ୍ଣଙ୍କୁ ଦେଖି ଆନନ୍ଦରେ ଶ୍ରୀରାଧାଙ୍କର ନେତ୍ର ମୁଦ୍ରିତ ହୋଇଗଲା । ସ୍ତମ୍ଭ ପୁଲକାଦି ଭାବର ସଞ୍ଚାର ହେଲା । ରାଧାଙ୍କୁ ଦର୍ଶନ କରି କୃଷ୍ଣଙ୍କର ଆନନ୍ଦ ସିନ୍ଧୁ ମଧ୍ୟ ଉଚ୍ଛୁଳିତ ହେଲା (୭୨/୮୯-୫୧) 'ପ୍ରେମଚିନ୍ତାମଣି'ରେ ମଧ୍ୟ ଏହାର ବର୍ଣ୍ଣନା ରହିଛି ।

ଶ୍ରୀକୃଷ୍ଣଙ୍କର ନାମାକ୍ଷରକୁ ପୁଣି ଶ୍ରୀରାଧା ବା ବ୍ରଜାଙ୍ଗନାମାନଙ୍କ ମଧ୍ୟରେ ବିଭିନ୍ନ ବିକାର (ଭୂପତନ, ମୂର୍ଚ୍ଛା, ସ୍ତବ୍ଧତା, ଅଶ୍ରୁ, ମୋହ ଆଦି) ଜାତ ହେଲେ ତାହାକୁ ଶ୍ରବଣ ହେତୁକ ମନୋଦ୍ରବ କୁହାଯାଏ । କବି ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିର ଅଷ୍ଟମ ଛାନ୍ଦରେ ଏହାର ବର୍ଣ୍ଣନା ରହିଛି ।

ସ୍ନେହ ପୁନଶ୍ଚ ଘୃତସ୍ନେହ ଓ ମଧୁସ୍ନେହର ଭେଦରେ ଦ୍ୱିବିଧ । ଅତ୍ୟନ୍ତ ଆଦରମୟ ସ୍ନେହକୁ ଘୃତସ୍ନେହ ଓ ମଦୀୟତା ଭାବଯୁକ୍ତ ସ୍ନେହକୁ ମଧୁସ୍ନେହ କୁହାଯାଏ ।- ଘୃତ ସ୍ନେହ ମଧୁର ନ୍ୟାୟ କିନ୍ତୁ ମାଧୁର୍ଯ୍ୟ ବର୍ଷୀ ନୁହେଁ । ଘୃତ ଯେପରି ଶର୍କରାଦି ଅନ୍ୟ ବସ୍ତୁ ସହିତ ମିଶ୍ରିତ ହେଲେ ଅତିଶୟ ସ୍ୱାଦୁତା ପ୍ରାପ୍ତ ହୋଇଥାଏ, ସେହିପରି ଘୃତସ୍ନେହ ଗର୍ବ ଓ ଅସୂୟାଦି ଭାବ ସହିତ ମିଶ୍ରିତ ହୋଇ ସ୍ୱାଦଯୁକ୍ତ ହୋଇଥାଏ । ଏହା ସ୍ୱଭାବତଃ ଅତି ଶୀତଳ ଓ ପାରସ୍ପରିକ ଆଦରରେ ଘନୀଭୂତ ହୋଇଥାଏ । ଏଣୁ ଘୃତ ସ୍ନେହ ଉଦ୍ଦୀପ୍ତ ତାପ୍ୟମୟ ରୂପେ ବିଦିତ । ଚନ୍ଦ୍ରାବଳୀଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ସ୍ନେହ ଘୃତସ୍ନେହ ପଦବାଚ୍ୟ ।

ମଧୁସ୍ନେହ ଅନ୍ୟଭାବର ଅପେକ୍ଷା ନରଖି ସ୍ୱୟଂ ମାଧୁର୍ଯ୍ୟ ପ୍ରକାଶ କରିଥାଏ । ଏଥିରେ ହାସ୍ୟ ଓ ଅଦ୍ଭୁତାଦି ବିବିଧ ରସର ସମନ୍ୱୟ ଘଟିଥାଏ ଏବଂ ଏହା ମତ୍ତତା ଓ ଗର୍ବ ବହନ କରିଥାଏ । ମଧୁରେ ଯେପରି ବିଭିନ୍ନ ପୁଷ୍ପରସ ମିଶ୍ରିତ ହୋଇ ମାଧୁର୍ଯ୍ୟମୟ ହୋଇଥାଏ ଏବଂ ଉଷ୍ଣତା ଓ ମତ୍ତତା ପ୍ରକାଶ କରିଥାଏ, ମଧୁସ୍ନେହ ଠିକ୍ ସେହିପରି । ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧାଙ୍କର

ସ୍ନେହ ହେଉଛି ମଧୁସ୍ନେହ । ଶ୍ରୀରାଧାଙ୍କର ମଧୁସ୍ନେହ ସ୍ମରଣ କରି ଶ୍ରୀକୃଷ୍ଣ କହୁଛନ୍ତି — 'ହେ ରାଧା : ତୁ ରସ, ଲାବଣ୍ୟ ଓ ଆନନ୍ଦର ଆଧାର । ତୁ ମଧୁର ମାଧୁର୍ଯ୍ୟ ଦ୍ରବର ଗଠିତ ଶୋଭାମୟୀ ପ୍ରତିମା ସଦୃଶ୍ୟ । ଲଳିତା ଲୀଳା ଓ ବିଭିନ୍ନ ଭଙ୍ଗୀରେ ତୋର ଭାବମୟୀ ମୂର୍ତ୍ତି ପ୍ରକଟିତ (ପ୍ରେ.ଚ ୬।୧୩) ମୁଁ ଶ୍ୟାମକୁଣ୍ଡରେ ସ୍ନାନ କରୁଥିବାବେଳେ ତୁ ରାଧାକୁଣ୍ଡରେ ସ୍ନାନ କରୁଥିଲୁ । ଆମ୍ଭ ଦୁହିଁଙ୍କର ସାକ୍ଷାତ୍ ଘଟିବା ହେତୁ ପରସ୍ପରର ଦ୍ରବୀଭୂତ ଭାବ ହେଲା । ମୋର ମନେ ହେଲା ତୋର ରୂପପ୍ରେମ ସୁଧାରେ ପରିପୂର୍ଣ୍ଣ ହୋଇ ଜଳମଧ୍ୟରେ ପ୍ରକଟିତ ହେଉଛି । (ତତ୍ରୈବ, ୬।୨୭) ।

ଯେଉଁ ସ୍ନେହ ଉତ୍କର୍ଷ ପ୍ରାପ୍ତ ପୂର୍ବକ ନାୟକ ନାୟିକାଙ୍କୁ ନୂତନ ମାଧୁର୍ଯ୍ୟ ଅନୁଭବ କରାଇ ସ୍ୱୟଂ ବାହାରେ କୌଟିଲ୍ୟ ଧାରଣ କରେ ତାହାକୁ ମାନ କୁହାଯାଏ । 'ଉଜ୍ଜ୍ୱଳ ନୀଳମଣିରେ ମାନକୁ ଉଦାତ୍ତମାନ ଓ ଲଳିତ ମାନ ଭେଦରେ ଦୁଇଭାଗରେ ବିଭକ୍ତ କରାଯାଇଛି । ଘୃତସ୍ନେହର ବାହାରେ ଦାକ୍ଷିଣ୍ୟଭାବ ଓ ଅନ୍ତରରେ ବାମ୍ୟଭାବ ବହନ କଲେ ଏବଂ କୌଣସି କୌଣସି ନାୟିକା ବିଶେଷରେ ବାମ୍ୟଭାବ ଅଳ୍ପଭାବରେ ଥାଇ ତାହା ସୁଦୁର୍ବୋଧ ହେଲେ ତାହାକୁ ଉଦାତ୍ତମାନ କୁହାଯାଏ । (ସ୍ଥାୟୀଭାବ ପ୍ରକରଣ, ଶ୍ଳୋ; ୯୮।୯୯) ।

ଉଦାତ୍ତମାନ ପୁନଶ୍ଚ ଦକ୍ଷିଣାସମ୍ବନ୍ଧୀ ଓ ବାମ୍ୟସମ୍ବନ୍ଧୀ ଭେଦରେ ଦ୍ୱିବିଧ । ଶ୍ରୀରାଧାଙ୍କପ୍ରତି ଈର୍ଷ୍ୟାବଶତଃ ଏହା ଚନ୍ଦ୍ରାବଳୀଙ୍କଠାରେ ଜାତ ହୋଇଥାଏ । କୁଞ୍ଜରେ ଶ୍ରୀକୃଷ୍ଣ କ୍ରୀଡା କରିବାକୁ ଉଦ୍ୟତ ହେଲାବେଳେ ଶ୍ରୀରାଧା ଅନ୍ତରରେ ଆନନ୍ଦିତା ହେଲେ ମଧ୍ୟ ବାହାରେ ହସ୍ତଦ୍ୱାରା ତାହାର ନିବାରଣ କରି ନେତ୍ରରେ କୌଟିଲ୍ୟ ପ୍ରକାଶ କରନ୍ତି । ଏହାକୁ ବାମ୍ୟସମ୍ବନ୍ଧୀ ଉଦାତ୍ତମାନ କୁହାଯାଏ । ଅଭିମନ୍ୟୁଙ୍କ 'ପ୍ରେମଚିନ୍ତାମଣି' କାବ୍ୟର ବିଂଶଛାନ୍ଦରେ ଏହାର ଉଲ୍ଲେଖ ଅଛି ।

ମଧୁସ୍ନେହ ସ୍ନେହୋଦ୍ରେକ ସ୍ୱଭାବରେ ଉତ୍ପନ୍ନ ହୋଇ ବାଧାହୀନତା-ବଶତଃ ଅତି ମଧୁର ବକ୍ରତା ଏବଂ ନମ୍ରଗୁଣ ଧାରଣ କଲେ ତାହାକୁ ଲଳିତମାନ କୁହାଯାଏ । ଏହା କୌଟିଲ୍ୟ ଓ ନର୍ମ ଭେଦରେ ଦ୍ୱିବିଧ ।

(ଚୈତନ୍ୟ ଚ. ଶ୍ଲୋ-୧୦୩) । ଶ୍ରୀକୃଷ୍ଣ ରାସସ୍ଥଳରୁ ଅନ୍ତର୍ହିତ ହୋଇ ପୁନଃ ଆବିର୍ଭୂତ ହେବା ସମୟରେ ଶ୍ରୀରାଧା ଅନ୍ତରରେ ଆନନ୍ଦିତା ହେଲେ ମଧ୍ଯ ବାହାରେ କ୍ରୋଧପୂର୍ବକ କଥା ନକହିବା । କୌଟିଲ୍ୟ ଲଳିତମାନର ଏକ ଦୃଷ୍ଟାନ୍ତ । ଦାନକେଳି ପ୍ରସଙ୍ଗରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ପରସ୍ପରକୁ ଚାତୁର୍ଯ୍ୟୋକ୍ତିରେ ପରାଜୟ କରିବାର ଚେଷ୍ଟାକୁ ନର୍ମଲଳିତ ମାନ କୁହାଯାଏ । ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିରେ ଅଣାନବେ ଛାନ୍ଦରେ ଏହାର ମନୋଜ୍ଞ ବର୍ଣ୍ଣନା ପରିଦୃଷ୍ଟ । ପରବର୍ତ୍ତୀ କାଳରେ ଓଡ଼ିଆ ବୈଷ୍ଣବ ଗୀତିକାରମାନେ ମଧ୍ଯ ଏ ପ୍ରକାର ଭାବକୁ ନେଇ ସୁନ୍ଦର ଗୀତିକବିତାମାନ ରଚନା କରିଛନ୍ତି ।

ଗାଢ଼ ବିଶ୍ୱାସଯୁକ୍ତ ହେଲେ 'ମାନ' ପ୍ରଣୟ ଆଖ୍ୟା ଧାରଣ କରିଥାଏ । ପଣ୍ଡିତଗଣଙ୍କ ମତରେ ବିଶ୍ରମ୍ଭ (ବିଶ୍ୱାସ) ହେଉଛି ପ୍ରଣୟର ସ୍ୱରୂପ । ଏହା ମୈତ୍ର୍ୟ ଓ ସଖ୍ୟ ଭେଦରେ ଦ୍ୱିବିଧ । ଗୌରବଯୁକ୍ତ ବିଶ୍ରମ୍ଭକୁ ମୈତ୍ର୍ୟ ପ୍ରଣୟ କୁହାଯାଏ । ରାସଲୀଳାକାଳରେ ଶ୍ରୀକୃଷ୍ଣଙ୍କ ସହିତ ଗୋପୀମାନଙ୍କର ନିଃସଙ୍କୋଚ ନୃତ୍ୟ, ଗୀତ ଇତ୍ୟାଦି ଏହାର ଦୃଷ୍ଟାନ୍ତ । ବୈଷ୍ଣବ କବି-ମାନେ ରାସଲୀଳା ବର୍ଣ୍ଣନା କାଳରେ ଏ ପ୍ରକାର ଭାବର ଉଲ୍ଲେଖ କରିଥାନ୍ତି ।

ସମ୍ଭ୍ରମ ବିହୀନ ପ୍ରଚୁର ସ୍ୱାଧୀନତାଯୁକ୍ତ ବିଶ୍ରମ୍ଭକୁ ସଖ୍ୟ ପ୍ରଣୟ କୁହା-ଯାଇଥାଏ । କବି ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣି'ର ୮୪ ଛାନ୍ଦରେ ଏହାର ସୁନ୍ଦର ବର୍ଣ୍ଣନା ରହିଛି । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଏକତ୍ର ଶୟନର ଚିତ୍ରକୁ କବି ଚିତ୍ରିତ କରି କହନ୍ତି—

"ସୁକେଶ ବାସ କେଶ ଅସ୍ତବ୍ୟସ୍ତ
ଗୃରୁ ଗୁରୁ ଉରୁ ଉରୁରେ ନ୍ୟସ୍ତ ।
ଉରେ ଉରଜ ଅଭେଦ ପ୍ରଶସ୍ତ
ଆଲିଙ୍ଗନ ଭାବେ ଛନ୍ଦନ ହସ୍ତ ।
ରୋମକୁ, ରୋମ ପ୍ରେମେ ଅଭେଦ
ମୁଖେ ମୁଖେ ରସାମୃତ ଆସ୍ୱାଦ ।
ପ୍ରାଣକୁ ପ୍ରାଣ ମିଳନ ଆଭାସେ
କାଶବ ପରମ ସଙ୍ଗତେ ମିଶେ ।

ନୀରକ୍ଷୀର ପରି ମନକୁ ମନ
ସଙ୍ଗତ ସିନ୍ଧୁ ଅଭେଦ ବନ୍ଧନ
ଦେହକୁ ଦେହ ମିଶି ମୋହକ
ତଳ ଚନ୍ଦ୍ରକ ରୀତି ଆଶ୍ରୟର । (୮୪\୨-୩)

ପ୍ରଣୟ ଉତ୍କର୍ଷାବସ୍ଥାକୁ ପ୍ରାପ୍ତ ହେଲେ ପ୍ରଣୟୀ ବା ପ୍ରଣୟିନୀ ଚିତ୍ତରେ ଜାତ ଅତିଦୁଃଖକୁ ମଧ୍ୟ ଅତି ସୁଖ ରୂପରେ ଗ୍ରହଣ କଲେ ତାହାକୁ ରାଗ କୁହାଯାଏ । ସମସ୍ତ ନିନ୍ଦା, ଅପବାଦ ସତ୍ତ୍ୱେ ଶ୍ରୀରାଧା କୃଷ୍ଣଭାବ ପାଇଁ ଧୃତ ଆଶା ପୋଷଣ କରନ୍ତି । କବି ଅଭିମନ୍ୟୁ ଶ୍ରୀରାଧାଙ୍କର ରାଗର ଅବତାରଣା-କରି 'ବିଦଗ୍ଧ ଚିନ୍ତାମଣି'ରେ ଲେଖିଛନ୍ତି ଯେ — ଶ୍ରୀରାଧା କହୁଛନ୍ତି, ହେ ଦୂତୀ –

"କାନ୍ତ ସ୍ନେହ ମୃଗ ମଦ କଳଙ୍କକୁ ରସିଛି
କଳଙ୍କିନୀ – ଅପବାଦ – ବଣିଜରେ ପଶିଛି
ଦୂତି ଗୋ, କହ ବନ୍ଧୁଙ୍କୁ କୁଳମୂଳ ନାଶିଛି
ପ୍ରାଣ ପ୍ରାୟଶ୍ଚିତ୍ତ – ଏବେ କରିବାକୁ ବସିଛି ।
ଦୁର୍ଜନ-କୁବଚନ-ଶରକୁ ଶିର ଆଡୁଛି
କାନ୍ତ ଅନ୍ତକ ଉଦୟ ଭୟକୁ ହିଁ ଏଡୁଛି
ଦୂତି ଗୋ, କହ ବନ୍ଧୁଙ୍କୁ ଲୋକାପେକ୍ଷା ଛାଡ଼ିଛି
ନିଦାନ ମୁଁ ଅଭିମାନ – ପଡିବେକ ମୋଡୁଛି ।
ଜୀବଥିଲେ ଭେଟହେବ ବୋଲି ଦୁଃଖ ସହୁଛି
ପ୍ରୀତି ଫିଟିଯିବ ବୋଲି ଆକଣ୍ଠରେ ରହୁଛି । (୭୫।୧୭।୧୯)

ଏହି ଭାବକୁ 'ଉଜ୍ଜ୍ୱଳ ନୀଳମଣି'ର ନୀଳିମା ଓ ରକ୍ତିମା ଭେଦରେ ଦୁଇ ପ୍ରକାର ବିଭକ୍ତ କରାଯାଇଛି । ନୀଳିମାରାଗ ନୀଳ ଓ ଶ୍ୟାମା ଭେଦରେ ଦ୍ୱିବିଧ । ସେହିପରି ରକ୍ତିମା ରାଗ କୁସୁମ୍ଭ ଓ ମଞ୍ଜିଷ୍ଠା ଭେଦରେ ମଧ୍ୟ ଦୁଇ ପ୍ରକାର । ଅଭିମନ୍ୟୁଙ୍କ 'ପ୍ରେମ ଚିନ୍ତାମଣି'ରେ ଏହି ନୀଳ, କୁସୁମ୍ଭ ଓ ମଞ୍ଜିଷ୍ଠା ରାଗର ଉଲ୍ଲେଖ ଅଛି । (୬୭\୯୦ ୯୨)

ଯେଉଁ ରାଗର ତିରୋଧାନର ସମ୍ଭାବନା ପାଇଁ ଓ ଯାହା ବାହ୍ୟରେ ଅତି ପ୍ରକାଶ ହୋଇ ନଥାଏ ଏବଂ ଅବସ୍ଥାନ୍ତରଥା ଦ୍ୱାରା ସ୍ୱଳିତ, ଚପଳ, ଅମର୍ଷ,

ମଦ, ଅସୂୟା ଆଦି ଭାବ ସମୂହକୁ ଆଚ୍ଛାଦନ କରିଥାଏ, ତାହାର ନାମ ନୀଳରାଗ । ଚନ୍ଦ୍ରାବଳୀଙ୍କର ଶ୍ରୀକୃଷ୍ଣଙ୍କର ପ୍ରତିରାଗ ଏହି ଶ୍ରେଣୀୟ । କାରଣ କାନ୍ତକର୍ତ୍ତୃକ ପ୍ରତାରଣା କାନ୍ତାପାଇଁ ଯେତେ ଦୁଃଖଦାୟକ ହେଲେ ମଧ୍ୟ ଚନ୍ଦ୍ରାବଳୀ ଶ୍ରୀକୃଷ୍ଣଙ୍କ ପ୍ରତାରଣାକୁ ଗୁଣ ଏବଂ ବୈଦଗ୍ଧ ବୋଲି ମନେ କରନ୍ତି ଓ ଦୁଃଖକୁ ସୁଖ ମଣନ୍ତି ।

ନୀଳରାଗ ଅପେକ୍ଷା ଯାହା ଟିକିଏ ପ୍ରକାଶଶୀଳ ଏବଂ ବହୁକାଳରେ ସାଧ୍ୟ ତାହାକୁ ଶ୍ୟାମ ରାଗ କୁହାଯାଇଛି । କୁସୁମ୍ଭ ରାଗ ସମ୍ପର୍କରେ ଉଜ୍ଜ୍ୱଳନୀଳମଣି କହେ ଯେଉଁ ରାଗ ଶୀଘ୍ର ଚିତ୍ତମଧ୍ୟରେ ଆସକ୍ତ ହୁଏ, ଯାହା ଅନ୍ୟ ରାଗର କାନ୍ତି ପ୍ରକାଶ କରି ଯଥୋଚିତ ଶୋଭାଧାରଣ କରେ, ତାହାହିଁ କୁସୁମ୍ଭରାଗ । କବି ଅଭିମନ୍ୟୁ ଏହାକୁ ଅଳ୍ପକ୍ଷଣ ସ୍ଥାୟୀ ଓ ଧୋଇଦେଲେ ଛାଡ଼ିଯାଏ ବୋଲି କହି ଏହାର ନ୍ୟୂନତା ପ୍ରତିପାଦନ କରିଛନ୍ତି । (ପ୍ରେମଚିନ୍ତାମଣି, ୭୬।୯୧)

ଯେଉଁ ରାଗ କୌଣସି ପ୍ରକାରେ ନଷ୍ଟ ହୁଏ ନାହିଁ, ଅନ୍ୟ କୌଣସି ରାଗର ଅପେକ୍ଷା ରଖେ ନାହିଁ ଏବଂ ନିଜର କାନ୍ତିକୁ ସର୍ବଦା ବୃଦ୍ଧି କରି ରହିଥାଏ, ତାହାକୁ ମଞ୍ଜିଷ୍ଠା ରାଗ କୁହାଯାଏ । (ଉ, ନୀ, ସ୍ଥାୟୀଭାବ ପ୍ରକରଣ ଶ୍ଳୋ-୧୩୯) କବି ଅଭିମନ୍ୟୁଙ୍କ କାବ୍ୟରେ ଏ ପ୍ରକାର ରାଗର ବହୁ ଦୃଷ୍ଟାନ୍ତ ରହିଛି । ଏଠାରେ ଗୋଟିଏ ଉଦାହରଣ ଦିଆଯାଉଛି । ସଖୀଗଣ ବିରହ ବାଉଳା ଶ୍ରୀରାଧାଙ୍କୁ କୃଷ୍ଣ ପ୍ରୀତିରୁ ନିବର୍ତ୍ତାଇବା ପାଇଁ ଶ୍ରୀକୃଷ୍ଣଙ୍କୁ ନାଗରମଣି ପାତକି, ନିଷ୍ଠୁର, ଲମ୍ପଟ, ଆଦି କହି ନିନ୍ଦା କରନ୍ତେ ଶ୍ରୀରାଧାଙ୍କ ପକ୍ଷରେ ତାହା ଅସହ୍ୟ ହୋଇ ପଡ଼ୁଛି । ତେଣୁ ସେ କହିଛନ୍ତି— "ତୁମେମାନେ କାହିଁକି ଜଳନ୍ତା ଅଗ୍ନିରେ ଆହୁତି ଦେଉଛ । ମୋର ମନ୍ଦ ଭାଗ୍ୟ ହେତୁ ଚିନ୍ତାମଣି ସ୍ୱରୂପ । ପ୍ରୀତି ଚନ୍ଦ୍ର ଉଦୟରେ ତାହା ତରଳିତ ହୋଇଥାଏ । ତୁମେ ଆଜି ପ୍ରାଣବନ୍ଧୁଙ୍କର ନିନ୍ଦା ଶୁଣାଇ ମୋତେ ଯେଉଁ କଷ୍ଟ ଦେଲ, ତାହା ବିଷମାନ ଓ ବୃଷ୍ଟିକ ଦଂଶନଠାରୁ ଅଧିକ । ଯାହାଙ୍କର ପ୍ରୀତିଲାଭରେ କୋଟିବ୍ରହ୍ମାଣ୍ଡର ସୁଖ ଓ ଆନନ୍ଦ ସାମାନ୍ୟ ମନେ ହୋଇଥାଏ, ରମା, ଉମା ପତି ଯାହାଙ୍କର

ଦର୍ଶନ ପାଇଁ ବ୍ୟାକୁଳ, ତାଙ୍କ ପ୍ରଭୁଙ୍କର କଙ୍କଣ ପଣକୁ ସତେ କ'ଣ ମୁଁ ଯୋଗ୍ୟ ହେବି । (ପ୍ରେ. ଚ ୫୬/୨୧-୨୭) ଏପ୍ରକାରର ବର୍ଣ୍ଣନା ଅନ୍ୟାନ୍ୟ ବୈଷ୍ଣବ କାବ୍ୟକାର ଓ ଗୀତିକାରଙ୍କର ରଚନାରେ ପରିଦୃଷ୍ଟ ହୁଏ ।

ଯେଉଁ ରାଗ ନବନବାୟମାନ ହୋଇ ଅନୁଭୂତ ପ୍ରିୟଜନଙ୍କୁ (ଜାଣିଥିବା ନାୟକ ନାୟିକାଙ୍କୁ) ଅନନୁଭୂତବତ୍ ପ୍ରତୀୟମାନ କରାଏ, ତାହାକୁ ଅନୁରାଗ କୁହାଯାଏ। ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ପରସ୍ପର ଦର୍ଶନରେ ସେମାନଙ୍କର ହୃଦୟରେ ଯେଉଁ ଅନୁରାଗ ଜାତ ହୁଏ, ତାହାକୁ କବି ଅଭିମନ୍ୟୁ ସ୍ୱକାବ୍ୟ ମଧ୍ୟରେ ବହୁବାର ସୁନ୍ଦର ଭାବରେ ଉପସ୍ଥାପନ କରି ଅଛନ୍ତି । ସେସବୁର ଏହି ଦୃଷ୍ଟାନ୍ତ ପ୍ରଦାନ କରିବା ଏହି କ୍ଷୁଦ୍ର ପରିସର ମଧ୍ୟରେ ସମ୍ଭବ ନୁହେଁ । ଶ୍ରୀରାଧା କୃଷ୍ଣଙ୍କ ପ୍ରତି ଏତେ ଆକୃଷ୍ଟ ହୋଇପଡନ୍ତି ଯେ ତାଙ୍କର ଚତୁର୍ଦ୍ଦିଗରେ କୃଷ୍ଣ ପ୍ରତୀତ ଜାତ ହୁଏ । ତେଣୁ ସେ କାଳଆଙ୍କମଳ ନନ୍ଦନ, ମୟୂରନର୍ତ୍ତନ, ତମାଳ ବୃକ୍ଷ, କେତକୀ ପ୍ରଭୃତିକୁ ଦର୍ଶନ କରି କୃଷ୍ଣ ଭ୍ରମରେ ବିମୋହିତ ହୋଇପଡ଼ନ୍ତି । ଫଳରେ ଶ୍ରୀରାଧାଙ୍କ ଶରୀରରେ ବିଭିନ୍ନ ସାତ୍ତ୍ୱିକ ବିକାର ଜାତ ହୁଏ । ଅନୁରୂପ ଭାବେ ଶ୍ରୀକୃଷ୍ଣ ମଧ୍ୟ ଶ୍ରୀରାଧାଙ୍କ ରୂପଲାବଣ୍ୟରେ ବିମୋହିତ ହୋଇଉଠନ୍ତି । ଋକ୍ଷଭ୍ରାନ୍ତା ଶ୍ରୀରାଧାଙ୍କ ଶୋଭା ଦର୍ଶନ କରି ଶ୍ରୀକୃଷ୍ଣ ମନେ ମନେ ବିଧାତାଙ୍କୁ ନିନ୍ଦା କରି କହନ୍ତି ।

"ଦରଶନ ଲୋଚନ ନାହିଁ ବିଧିକି
ଭାଳନ୍ତି ନ କଲା ଇନ୍ଦ୍ର ବିଧିକି
ଯାହା କଲା ତହିଁ ନିମିଷେ ଦେଲା
ଅନ୍ଧ ସିର୍ଜି ଦେଲେ କି ହାନି ଥିଲା ।
ଏବେଶୋଭା, ହୋଇଥିଲେ ଲୋଚନ
କରନ୍ତା ନାହିଁ ଏତେ ବିଘଟନ । (ବି. ଚ. ୮୪।୫)

ଅନୁରାଗ ଜାତ ହେଲେ କେତେଗୁଡ଼ିଏ ଅନୁଭାବ ହୃଦୟରେ ଜାତ ହୁଅନ୍ତି । ଏହି ଅନୁଭାବ ଗୁଡ଼ିକ ଅଳଙ୍କାର ଶାସ୍ତ୍ରରେ ପ୍ରଦତ୍ତ ଅନୁଭବ-

ଠାରୁ ପୃଥକ ଓ ବୈଷ୍ଣବ ଶାସ୍ତ୍ର ସମର୍ଥିତ । ଅଳଙ୍କାର ଶାସ୍ତ୍ରରେ ରସନିଷ୍ପତ୍ତି ଓ ବୈଷ୍ଣବ ଶାସ୍ତ୍ରର ରସନିଷ୍ପତ୍ତି ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ବୈଷ୍ଣବଶାସ୍ତ୍ରାନୁଯାୟୀ ଅନୁରାଗ ଜାତ ହେଲେ ଯେଉଁ ଅନୁଭାବଗୁଡିକ ଜାତ ହୁଏ ସେଗୁଡିକ ହେଲା, ପରସ୍ପର ବଶୀଭାବ, ପ୍ରେମବୈଚିତ୍ର୍ୟ, ଅପ୍ରାଣୀରେ ଜନ୍ମଲାଭ କରିବାର ଉତ୍କଟ ଲାଳସା, ବିପ୍ରଲମ୍ଭରେ ବିସ୍ଫୂର୍ତ୍ତି ବାହାରେ ଚକ୍ଷୁ ସମ୍ମୁଖରେ ରୂପଭୂତ ଆତ୍ମପ୍ରକାଶ କରିବା) ଶ୍ରୀକୃଷ୍ଣଙ୍କର ରାଧାଙ୍କ ପ୍ରତି ଅନୁରାଗ ହେତୁ ଶ୍ରୀକୃଷ୍ଣଙ୍କର ଅପ୍ରାଣୀରେ ଜାତ ହେବାର ଲାଳସା ସମ୍ପର୍କରେ ଅଭିମନ୍ୟୁ ଲେଖିଛନ୍ତି—"ଶ୍ରୀକୃଷ୍ଣ ରାଧା ଭାବରେ ବିହ୍ୱଳିତ ହୋଇ କହିବାକୁ ଲାଗିଲେ, ହେ ରାଧା : ମୁଁ ବିଧାତାକୁ କହିବି ସେ ତୋର ଗ୍ରହଣ ଯୋଗ୍ୟ ନାଗବଲ୍ଲୀ, ଚନ୍ଦ୍ର, ଚନ୍ଦନ, ମୃଗମଦ, ହାର, ପୁଷ୍ପ, କୁଙ୍କୁମ, ବାସ, ଭୂଷା ଆଦି ଅପ୍ରାଣୀ ରୂପେ ମୋତେ ସୃଷ୍ଟି କରିବେ, ଯାହା ଫଳରେ ତୋର ସାନ୍ନିଧ୍ୟ ଓ ଆଦର ଲାଭ କରିବି । ସେହିପରି ଶ୍ରୀରାଧା ମଧ୍ୟ କହିଛନ୍ତି—ମୁଁ ମରିଗଲେ ଶିବଙ୍କ ନେତ୍ରରେ ଅଗ୍ନି ହୋଇ କାମଦେବଙ୍କୁ ଦହନ କରିବି, ଅନ୍ଧକାର ହୋଇ ଚନ୍ଦ୍ରଙ୍କୁ ତର୍ଜିବି ।

ଶ୍ରୀରାଧାଙ୍କର ଅନୁରାଗ ଜାତ ହେବା ଫଳରେ ସେ ପ୍ରତ୍ୟେକ ବୃଷ୍ଟିରେ ଶ୍ରୀକୃଷ୍ଣଙ୍କ ସ୍ଫୁରିତ ଜନ୍ମିଲା । ନଭର କଳାଘନ, ଭୂର ପାଦଚିହ୍ନ, ଚତୁର୍ଦ୍ଦିଗର ତମାଳ ବୃକ୍ଷ– ସବୁଥିରେ ସେ ଶ୍ରୀକୃଷ୍ଣଙ୍କର ରୂପ ଦେଖିବାକୁ ପାଇଲେ । ଶ୍ୟାମଙ୍କର ପ୍ରୀତି ଇନ୍ଦ୍ରଜାଲ ଭଳି ତାଙ୍କୁ ମନ୍ତ୍ରମୁଗ୍ଧ କଲା । (ବି.ଚ ୬୧୮) ଏହାହିଁ ବିପ୍ରଲମ୍ଭର ବିସ୍ଫୁର୍ତ୍ତିର ଉଦାହରଣ ।

'ଶ୍ରୀଚୈତନ୍ୟଚରିତାମୃତ' ଗ୍ରନ୍ଥରେ ଭାବ ଏବଂ ମହାଭାବକୁ ପୃଥକ ଭାବେ ଗଣନା କରାଯାଇ ମହାଭାବକୁ ଭାବର ପରବର୍ତ୍ତୀ ଅବସ୍ଥା କୁହାଯାଇଥିଲେ ହେଁ ଶ୍ରୀ ରୂପଗୋସ୍ୱାମୀ 'ଉଜ୍ଜ୍ୱଳନୀଳମଣି' ଗ୍ରନ୍ଥରେ ଭାବ ଓ ମହାଭାବକୁ ଏକ ରୂପେ ଗ୍ରହଣ କରିଛନ୍ତି । ସେ ଭାବ ଓ ମହାଭାବ ମଧ୍ୟରେ କୌଣସି ଭେଦ ସ୍ୱୀକାର କରିନାହାନ୍ତି ।

ଅନୁରାଗ ଉତ୍କର୍ଷ ଅବସ୍ଥା ପ୍ରାପ୍ତ ହୋଇ ଯେତେବେଳେ କେତେଗୁଡ଼ିଏ ବିଶେଷ ଲକ୍ଷଣ ଧାରଣ କରେ, ସେତେବେଳେ ତାହାକୁ ଭାବ କୁହାଯାଏ ।

ଭାବର ଲକ୍ଷଣ ସମ୍ବନ୍ଧରେ ରୂପଗୋସ୍ୱାମୀ 'ଉଜ୍ଜ୍ୱଳନୀଳମଣି' ଗ୍ରନ୍ଥରେ କହିଛନ୍ତି —"ଅନୁରାଗଃ ସ୍ୱସଂବେଦ୍ୟ ଦଶାଂ ପ୍ରାପ୍ୟ ପ୍ରକାଶିତଃ, ଯାବଦା ଶ୍ରୟ ବୃତ୍ତିଶ୍ଚେଦ୍, ଭାବ ଇତ୍ୟଭିଧୀୟତେ । ( ସ୍ଥାୟୀଭାବ ପ୍ରକରଣ, ଶ୍ଳୋ ୧୯୫) ।

ଅର୍ଥାତ୍ ଅନୁରାଗ ସ୍ୱସଂବେଦ୍ୟ ଦଶା ପ୍ରାପ୍ତ ହୋଇ ଯଦି ପ୍ରକାଶିତ ହୁଏ ଏବଂ ଯଦ୍‌ଦାଶ୍ରୟ ବୃତ୍ତି ହୁଏ; ତେବେ ତାହାକୁ ଭାବ କୁହାଯାଏ । ସ୍ୱସଂବେଦ୍ୟର ଅର୍ଥ ହେଉଛି ସ୍ୱସମ୍ବେଦନ ଯୋଗ୍ୟ ବା ସ୍ୱ ଅନୁଭବ ଯୋଗ୍ୟ । ଯାବଦାଶ୍ରୟ ବୃତ୍ତିର ଅର୍ଥ ହେଉଛି ଯେତେ ଆଶ୍ରୟ ଅଛନ୍ତି (ଅର୍ଥାତ୍ ଯେତେ ଯେତେ ଆଶ୍ରିତ ସାଧକ ଓ ସିଦ୍ଧ ଭକ୍ତ ଅଛନ୍ତି, ସେ ସମସ୍ତଙ୍କ ଉପରେ ଯାହାର ବୃତ୍ତି (ଚେଷ୍ଟା ବା ପ୍ରଭାବ) । ଏଣୁ ଉପର୍ଯ୍ୟୁକ୍ତ ଶ୍ଳୋକର ଅର୍ଥ ହେଉଛି ଅନୁରାଗ ନିଜର ଅନୁଭବ ଅବସ୍ଥାକୁ ପ୍ରାପ୍ତି କରି ଓ ପ୍ରକାଶିତ ହୋଇ ଯଦି ସଜାତୀୟ ସାଧକ ଓ ସିଦ୍ଧଗଣଙ୍କ ଉପରେ ପ୍ରଭାବ ବିସ୍ତାର କରେ ବା ସେମାନଙ୍କ ମଧ୍ୟରେ ବ୍ୟାପ୍ତ ହୁଏ, ତେବେ ତାହାକୁ ଭାବ କୁହାଯାଏ ।

'ଗୌଡ଼ୀୟ ବୈଷ୍ଣବ ଦର୍ଶନ'ରେ ଏହି ଶ୍ଳୋକର ବିଶ୍ଳେଷଣ କରି ଲେଖିଛନ୍ତି—'ଭାବ କହିଲେ ଅନୁରାଗୋତ୍କର୍ଷର ସେହି ଅବସ୍ଥାଟିକୁ ବୁଝାଏ, ଯେଉଁ ଅବସ୍ଥାରେ ଅନୁରାଗୋତ୍କର୍ଷ ଦ୍ୱାରା ଶ୍ରୀକୃଷ୍ଣଙ୍କର ଅସମୋର୍ଦ୍ଧ୍ୱ ମାଧୁର୍ଯ୍ୟ ପୂର୍ଣ୍ଣରୂପେ ଆସ୍ୱାଦନ ହେତୁକ ଆନନ୍ଦକୁ ପୂର୍ଣ୍ଣତମ ରୂପେ ଅନୁଭବ କରାଯାଇଥାଏ ଏବଂ ଯେଉଁ ଅବସ୍ଥାରେ ଆସ୍ୱାଦନର ଚମତ୍କାରିତାରେ ମୁଗ୍ଧ ହୋଇ ଆସ୍ୱାଦକ ନିଜକୁ ଓ ଆସ୍ୱାଦ୍ୟ ବସ୍ତୁକୁ ଭୁଲିଯାଇ କେବଳ ଆସ୍ୱାଦନ ମାଧୁର୍ଯ୍ୟକୁ ଅନୁଭବ କରେ । (ଗୌଡ଼ୀୟ ବୈଷ୍ଣବ ଦର୍ଶନ, ପ୍ରେମତତ୍ତ୍ୱ, ପୃ-୯୭)

'ଉଜ୍ଜ୍ୱଳ ନୀଳମଣି'ରେ ରୂପଗୋସ୍ୱାମୀ କହିଛନ୍ତି ଏହି ଭାବ ରୁକ୍ମିଣୀ ମହିଷୀଗଣଙ୍କ ପକ୍ଷରେ ଅତିଦୁର୍ଲ୍ଲଭ । ଏହା କେବଳ ଶ୍ରୀରାଧାଦି ବ୍ରଜଦେବୀ-ଗଣଙ୍କର ଅନୁଭବଗମ୍ୟ । ତେଣୁ ଏହି ଭାବକୁ ମହାଭାବ କୁହାଯାଇଥାଏ । ଏହି ମହାଭାବ ଅପାର୍ଥିବ ଅମୃତର ସ୍ୱରୂପ ସମ୍ପତ୍ତି ବିଶିଷ୍ଟ ଏବଂ ଏହା

ନିଜର ଏହି ବିରାମ୍ପୂତ ସ୍ୱରୂପ ପ୍ରତି ମନକୁ ଆକର୍ଷଣ କରିବାର ଐକ୍ୟ ପ୍ରାପ୍ତ ହୋଇଥାଏ ।

ଏହି ମହାଭାବ ରୂଢ଼ ଓ ଅଧିରୂଢ଼ ଭେଦରେ ଦ୍ୱିବିଧ । 'ଉଜ୍ଜ୍ୱଳ ନୀଳମଣି' ବର୍ଣ୍ଣନାନୁଯାୟୀ ଯେଉଁ ମହାଭାବରେ ସ୍ତମ୍ଭାଦି ଅଷ୍ଟସାତ୍ତ୍ୱିକ ଲକ୍ଷଣ ଉଦ୍ଦୀପ୍ତ ଭାବରେ ପ୍ରକାଶିତ ହୁଏ ( ଅର୍ଥାତ୍ ଅଷ୍ଟସାତ୍ତ୍ୱିକ ଲକ୍ଷଣକୁ ଅତି କଷ୍ଟରେ କିଛି ମାତ୍ର ଗୋପନ ରଖାଯାଏ ) ତାହାକୁ ରୂଢ଼ ମହାଭାବ କୁହାଯାଏ । (ସ୍ଥାୟୀଭାବ ପ୍ରକରଣ, ଶ୍ଳୋ । ୧୫୮ ୫୯) ରୂଢ଼ ମହାଭାବ ଉଦୟ କାଳରେ ବିରହ ଦୁଃଖ ଅତ୍ୟଧିକ ଅସହ୍ୟ ଓ ମିଳନ ସୁଖ ଅତ୍ୟନ୍ତ ଆନନ୍ଦପ୍ରଦ ହୋଇଥାଏ । ତେଣୁ ବିଦଗ୍ଧ ଚିନ୍ତାମଣିରେ କୁହାଯାଇଛି

କୋଟି ବ୍ରହ୍ମାଣ୍ଡ ସୁଧା ଶିରୀସାର
ସମ୍ଭୋଗ କାଳେ ସେ ତୁଲ ତୃଣକାର ।
କୋଟି ବ୍ରହ୍ମାଣ୍ଡ ଦୁଃଖସିନ୍ଧୁ ଲବ
ବିଚ୍ଛେଦ କାଳକୁ ତୁଲ ନ ହେବ
କ୍ଷୋଟପତ ସର୍ଗ ଗୋ
ଅଗ୍ନି-ଆଚ୍ଛାଦନ ତାପ ଅଳ୍ପ । (୮୯।୧୨)

ରୂଢ଼ ମହାଭାବର ଉଦୟ କାଳରେ କେତେକ ଲକ୍ଷଣ ପ୍ରକାଶ ପାଇଥାଏ । ଯଥା—ନିମେଷାସହ୍ୟତା, ଆସନ୍ନ-ଜନତାର ହୃଦୟ ବିଲୋଡନ, କଳ୍ପକ୍ଷଣତ୍ୱ, କ୍ଷଣକଳ୍ପତ୍ୱ । ନିର୍ନିମେଷ ନୟନରେ ଚାହିଁବା ଏବଂ ନିମେଷ (ଆଖିପତା) ସୃଷ୍ଟି କରିଥିବା ବିଧାତାକୁ ନିନ୍ଦାକରି ନିମେଷ ପାତକୁ ଅସହ୍ୟ ମନେକରିବାକୁ ନିମେଷସହ୍ୟତା କୁହାଯାଏ । ଶ୍ରୀକୃଷ୍ଣଙ୍କ ନିକଟରୁ କୁଞ୍ଜରୁ ଫେରିଲା ବେଳେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ରୂପମାଧୁର୍ଯ୍ୟ ଅବଲୋକନରେ ଅମୃହରା ହୋଇପଡ଼ିବା ଯୋଗେ ତାଙ୍କର ନିମେଷ (ଆଖିପତା) ନପଡ଼ିବା, ଭୋଳା ହୋଇ ଆଖିଡୋଳା ଖୋଷିବା ବିଷୟ ଅଭିମନ୍ୟୁଙ୍କ ବିଦଗ୍ଧଚିନ୍ତାମଣିରେ ବର୍ଣ୍ଣନା କରାଯାଇଛି । (୭୨।୨୭)

ଆସନ୍ନ ଜନତାର ହୃଦୟ ଆଲୋଡନ ଲକ୍ଷଣଟି ବିଶେଷତଃ ଦ୍ୱାରକାସ୍ଥିତ ଗୋପୀକୃଷ୍ଣଙ୍କର ମିଳନ କାଳରେ ଘଟିଥାଏ । ଶ୍ରୀକୃଷ୍ଣଙ୍କ ବ୍ରଜ-

ଲୀଳାରେ ମଧ୍ୟ ଏହିପ୍ରକାର ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଶ୍ରୀରାଧା ଓ ଶ୍ରୀକୃଷ୍ଣ ପୂର୍ବରାଗ ପରେ ଯେତେବେଳେ ପ୍ରଥମ ମିଳନ ସମ୍ପାଦିତ ହେବାକୁ ଯାଉଛି, ସେତେବେଳେ ଲଳିତାଦି ଅଷ୍ଟସଖୀ ଆନନ୍ଦରେ ଅଧୀର ହୋଇଛନ୍ତି । ସେମାନଙ୍କର ବାଞ୍ଛିତ ରାଧାକୃଷ୍ଣ ମିଳନ ମାଧୁରୀ ଉପଭୋଗ ଜନିତ ଭାବ ଆନନ୍ଦରେ ସେମାନେ ବହୋଳର ହୋଇ ସେମାନେ କଳ୍ପନା ଜଳ୍ପନା କରିଚାଲିଛନ୍ତି । 'ଦିବ୍ୟଗୀତ ଚିନ୍ତାମଣି'ର ସମଗ୍ର ଷଷ୍ଠିଛାନ୍ଦ ଏପ୍ରକାର ବର୍ଣ୍ଣନାରେ ପରିପୂର୍ଣ୍ଣ ।

ଶ୍ରୀକୃଷ୍ଣଙ୍କ ସହିତ ମିଳନକାଳରେ ଏକ କଳ୍ପର ସମୟ କ୍ଷଣକ ଭଳି ମନେହେଲେ ତାହାକୁ କଳ୍ପକ୍ଷଣତ୍ୱ ଓ କୃଷ୍ଣ ବିରହରେ ଏକକ୍ଷଣର ସମୟ ଏକ କଳ୍ପ ପରି ଦୀର୍ଘ ମନେହେଲେ ତାହାକୁ କ୍ଷଣକଳ୍ପତ୍ୱ କୁହାଯାଇଥାଏ । ଏପ୍ରକାର ବୈଷ୍ଣବ କାବ୍ୟରେ ବହୁଳ ଭାବରେ ଦୃଷ୍ଟିଗୋଚର ହୋଇଥାଏ ।

ଯେଉଁ ସ୍ଥଳରେ ଅନୁଭାବ ସମୂହ, ରୂଢ଼ ମହାଭାବରେ ବିଦ୍ୟମାନ ଅନୁଭାବ ସମୂହ ଅପେକ୍ଷା ଅନିର୍ବଚନୀୟ ବୈଶିଷ୍ଟ୍ୟ ପ୍ରାପ୍ତ ହୁଏ, ତାହାକୁ ଅଧିରୂଢ଼ ମହାଭାବ କୁହାଯାଏ । ଏହି ଅଧିରୂଢ଼ ମହାଭାବ ଦୁଇପ୍ରକାର । ତାହା ହେଉଛି ମୋଦନ ଓ ମାଦନ । (ଉ.ନୀ, ସ୍ଥାୟୀଭାବ ପ୍ରକରଣ ୧୭୦-୭୩ ) ଯେଉଁ ଅଧିରୂଢ଼ ମହାଭାବରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କଠାରେ ଏକାବେଳକେ ଅଷ୍ଟସାତ୍ତ୍ୱିକ ଲକ୍ଷଣ ଅତିଶୟ ଉଦ୍ଦୀପ୍ତ ଅବସ୍ଥା ଧାରଣ କରେ ତାହାକୁ ମୋଦନ କୁହାଯାଏ । 'ପ୍ରେମଚିନ୍ତାମଣି' କାବ୍ୟରେ ଏହି ଭାବର ବର୍ଣ୍ଣନା କରାଯାଇ କୁହାଯାଇଛି—'ରାଧାକୃଷ୍ଣ କୁଞ୍ଜ ଉପକଣ୍ଠରେ ମିଳିତ ହେବାକ୍ଷଣି ସେମାନଙ୍କଠାରେ ଉଦ୍‌ଭାବ, ଜୃମ୍ଭା, ସୁଦୀପ୍ତ ସାତ୍ତ୍ୱିକ ଲକ୍ଷଣ, ଅଯତ୍ନଜ ଶୋଭା ଅଳଙ୍କାର ସ୍ୱାଭାବିକ ବିଳାସାଦି ଅଳଙ୍କାର ମୌଗ୍ଧ୍ୟ, ଚକିତ ଭାବ ସହିତ ସ୍ୱଭାବଜ ସପ୍ତଭାବ (ସାତ୍ତ୍ୱିକଭାବ) ଅତିଦୀପ୍ତ (ଉଦ୍ଦୀପ୍ତ) ଭାବରେ ପ୍ରକାଶିତ ହେଲା । (୩୦।୩-୭) ପୁନଶ୍ଚ କବି ଅଭିମନ୍ୟୁ ତାଂକ କାବ୍ୟର ବହୁସ୍ଥଳରେ ଏ ପ୍ରକାର ଭାବର ବର୍ଣ୍ଣନା କରିଛନ୍ତି । ଏହି ମୋହନ ମହାଭାବ କେବଳ ଶ୍ରୀରାଧ ଓ ତାଙ୍କ ଯୂଥଙ୍କଠାରେ ଦେଖାଯାଇଥାଏ । କାରଣ ଏହା ହ୍ଲାଦିନୀ ଶକ୍ତିର ଶୋଭନ ତଥା ଶ୍ରେଷ୍ଠାଂଶ । ଅତଏବ ପ୍ରିୟ ବିଳାସ ।

ଏହି ମୋଦନ ମହାଭାବର ଦୁଇଟି ଗୁଣ ବା ପ୍ରଭାବ ଦେଖାଯାଇଥାଏ । ଯଥା କାନ୍ତାଗଣ ସହିତ ଶ୍ରୀକୃଷ୍ଣଙ୍କର କ୍ଷୋଭ କାରିତା ଓ ପ୍ରେମ ମହା- ସମ୍ପତ୍ତି ଶାଳିନୀ ଗଣ ଅପେକ୍ଷା ଆତିଶଯ୍ୟ । ଓଡ଼ିଆ ବୈଷ୍ଣବ କବିମାନେ ପ୍ରେମ ଆରାଧିକା ଶ୍ରୀରାଧାଙ୍କୁ ଐଶ୍ୱର୍ଯ୍ୟଶାଳିନୀ ଲକ୍ଷ୍ମୀ, ସୀତା, ପାର୍ବତୀ, ରେବତୀ, ରତି, ଶଚୀ ଅଷ୍ଟପାଟବଂଶୀ ଆଦିଙ୍କ ଅପେକ୍ଷା ଶ୍ରୀରାଧାଙ୍କର ରୂପ, ଗୁଣ ଓ ପ୍ରେମର ଆଧିକ୍ୟ ସୂଚାଇ ଅଛନ୍ତି ।

ମୋଦନ ପ୍ରବିଶ୍ଳେଷ ଦଶାରେ (ଶ୍ରୀକୃଷ୍ଣଙ୍କ ସହିତ ବିରହାବସ୍ଥାରେ) ମୋହନ ଆଖ୍ୟା ପ୍ରାପ୍ତ ହୋଇଥାଏ । ମୋହନରେ ବିରହ ଜନିତ ବୈବଶ୍ୟ- ବଶତଃ ସାତ୍ତ୍ୱିକ ଭାବ ସକଳ ସୁଦୀପ୍ତ ହୋଇଥାଏ । (ଉ. . ସ୍ଥାୟୀଭାବ ପ୍ରକରଣ, ଶ୍ଳୋ ୧୭୯) ବୃନ୍ଦାବନେଶ୍ୱରୀ ଶ୍ରୀରାଧିକାଙ୍କଠାରେ ଏହି ମୋହନ ଭାବ ମୁହୁର୍ମୁହୁଃ ଉଦିତ ହୋଇଥାଏ ।

ଶ୍ରୀରାଧାଙ୍କଠାରେ ଏହି ମୋହନ ଭାବର ଉଦ୍ରେକ ଘଟିଲେ କେତେକ ଅନୁଭାବ ଜାତ ହୋଇଥାଏ । ସେଗୁଡିକ ହେଲେ, କାନ୍ତାକର୍ତ୍ତୃକ ଆଲିଙ୍ଗିତ ଅବସ୍ଥାରେ ବି ଶ୍ରୀକୃଷ୍ଣଙ୍କର ମୂର୍ଚ୍ଛା ଯିବା ଅସହ୍ୟ ଦୁଃଖ ସ୍ୱୀକାର କରି ମଧ୍ୟ ଶ୍ରୀକୃଷ୍ଣଙ୍କ ସୁଖକାମନା କରିବା । ବ୍ରହ୍ମାଣ୍ଡ କ୍ଷୋଭକାରିତା, ତିର୍ଯ୍ୟକ୍ ଜାତିର ରୋଦନ, ମୃତ୍ୟୁପରେ ପଞ୍ଚମହାଭୂତରେ ମିଶି ଶ୍ରୀକୃଷ୍ଣସଙ୍ଗ ଲାଭ କରିବାର ତୃଷ୍ଣା, ଦିବ୍ୟୋନ୍ମାଦ, ଉଦ୍ ଘୂର୍ଣ୍ଣା, ଚିତ୍ରଜଳ୍ପ, ପ୍ରଜଳ୍ପ, ବିଜଳ୍ପ, ପରିଜଳ୍ପ, ଉଜ୍ଜଳ୍ପ, ସଂଜଳ୍ପ, ଅବଜଳ୍ପ, ଅଭିଜଳ୍ପ, ଆଜଳ୍ପ, ପ୍ରତିଜଳ୍ପ, ସୁଜଳ୍ପ ପ୍ରଭୃତି । (ଉ.ନୀ. ସ୍ଥାୟୀଭାବ ପ୍ରକରଣ)

ମାଦନ ସମ୍ପର୍କରେ "ଉଜ୍ଜ୍ୱଳନୀଳମଣି"ରେ କୁହାଯାଇଛି — ହ୍ଲାଦିନୀର ସାରଭୂତ ପ୍ରେମ ଯଦି ସର୍ବଭାବୋଦ୍ଗମୋଲ୍ଲାସୀ ହୁଏ, ତାହା ହେଲେ ତାହାକୁ ମାଦନ କୁହାଯାଏ । ଏହା ଶ୍ରୀରାଧାଙ୍କଠାରେ ସର୍ବଦା ବିରାଜିତ । ମାଦନ ଅବସ୍ଥାରେ ଈର୍ଷ୍ୟାର ଅଯୋଗ୍ୟବସ୍ତୁଠାରେ ପ୍ରବଳ ଈର୍ଷ୍ୟା କରିବା ଏବଂ ସର୍ବଦା ସମ୍ଭୋଗ ସତ୍ତ୍ୱେ ଗନ୍ଧମାଳ ବହନକାରୀ ପାସକୁ ମଧ୍ୟ ସ୍ତବ କରିବା ରୂପକ ଦୁଇଟି ଅନୁଭାବ ଦେଖା ଦେଇଥାଏ । ପ୍ରେମଚିନ୍ତାମଣିରେ ଅଭିମନ୍ୟୁ ପ୍ରଥମ ଅନୁଭାବର ଉଲ୍ଲେଖ କରି କହନ୍ତି — ତମାଳବୃକ୍ଷ ତଳେ ପୀତ ଯୁଥିବା

ଫୁଲ କୃଷ୍ଣଙ୍କର ପୀତାମ୍ବରଠାରେ ରାଧାଙ୍କୁ ପ୍ରଶାନ୍ତ ହେଲା, ତମାଳ ଗଛକୁ ସେ କୃଷ୍ଣ ଭାବିଲେ । ତା ଉପରେ କେକୀ ନୃତ୍ୟକୁ ଦେଖି କୃଷ୍ଣନୃତ୍ୟ କରୁଥିବା ମନେ କଲେ । ତମାଳଗଛ ପାଖରେ ଥିବା ପୁଷ୍ପମଣ୍ଡିତ ଚମ୍ପାଗଛକୁ ରାଧା ମନେକଲେ କୌଣସି ଯୁବତୀ ଶ୍ରୀକୃଷ୍ଣଙ୍କ ପାଖରେ ରହିଛି । ଏ ସବୁର ଦର୍ଶନରେ ରାଧାଙ୍କ ମନରେ ଈର୍ଷ୍ୟା ଜାତ ହେଲା । (ପ୍ରେ.ଚି. ୨୮।୧।୧୦) ବିଦଗ୍ଧ ଚିନ୍ତାମଣିରେ କବି ଅଭିମନ୍ୟୁ ବିଭିନ୍ନ ପ୍ରକାର ଅନୁଭାବଟିର ବର୍ଣ୍ଣନା କରି କହିଛନ୍ତି ଯେ କୃଷ୍ଣବିରହିଣୀ ଶ୍ରୀରାଧାଙ୍କୁ ମଳୟମଳୟ, ମୃଗମଦ କସ୍ତୁରୀ ଗନ୍ଧ ଅତ୍ୟନ୍ତ ଆକୁଳ କଲା । ତେଣୁ ରାଧା ତାଙ୍କର ନାସାକୁ କହିଲେ ତୁ ପବନକୁ ସାକ୍ଷୀକରି ଯେଉଁ ଦିଗରୁ ଗନ୍ଧ ଆସୁଛି ସେହି ଦିଗକୁ ଆଶାକରି ରହ । (୫୮.୬)

'ଉଜ୍ଜ୍ୱଳନୀଳମଣି'ରେ କୁହାଯାଇଛି ଯୋଗ (ସମ୍ଭୋଗ) କାଳରେ ମାଦନର କୌଣସି ବିଶେଷ ପ୍ରଭାବ ଉଦୟ ହୋଇଥାଏ । ମାଦନର ବିଳାସ ସମୂହ ସହସ୍ର ପ୍ରକାର ବିକାଶ ହୋଇଥାଏ । ମଦନ (ଶ୍ରୀକୃଷ୍ଣ)ଙ୍କ ପରି ମାଦନର ଗତି ସୁଷ୍ଠୁ ରୂପେ ସୁଦୁର୍ବୋଧ । ଏଥିପାଇଁ ଭରତମୁନି ମାଦନର ଧର୍ମ ସମୂହ ସମ୍ବନ୍ଧିତ ଲକ୍ଷଣକୁ ସ୍ପଷ୍ଟ ଭାବରେ ନିର୍ଣ୍ଣୟ କରିବାକୁ ସମର୍ଥ ହୋଇ ନାହାନ୍ତି ।

କବି ଅଭିମନ୍ୟୁ ତାଙ୍କର 'ବିଦଗ୍ଧ ଚିନ୍ତାମଣି' ଓ 'ପ୍ରେମଚିନ୍ତାମଣି'ରେ ବିଭିନ୍ନ ସ୍ଥଳରେ ଶ୍ରୀରାଧାଙ୍କଠାରେ ମହାଭାବ ଉଦୟର ବର୍ଣ୍ଣନା କରି କହିଛନ୍ତି –

'ତାହା ଶୁଣି ଇନ୍ଦୀନନ୍ଦନ ଛନ୍ଦିଘନେ
ଲୀନ ହେଲା ମହାଭାବ ଭଜନମନେ
ସନ୍ନିପାତ ପରି ରସେ ଲୋଭ ଚିତ୍ତ
ପୀତବେଗୀ ପରାଏ ଭବମତ
ଆମପୁଷ୍ଟି ବନ୍ଧପରି ସ୍ତମ୍ଭୀଭୂତ
ନାଡ ଛାଡ଼ିଲେ ବାତକୀ ପରି ଏତ
କଣ୍ଠ ରୁନ୍ଧିଲା ଜିଦୋଷ ପ୍ରାଏ ହୋଇ

ଏହା ଦେଖି କାହା ବୁଦ୍ଧି ନ ଡୁରଇ।

× × ×

ଯହିଁ ମଦନ ମାଦନ ଚଳାଚଳ

କବି ସ୍ଥିର ତା କାହିଁ ପାରିବ କଳ।' (୫୨ ୮୦.୮୬).

ମଧ୍ୟଯୁଗୀୟ ଓଡ଼ିଆ ବୈଷ୍ଣବ ସାହିତ୍ୟ କହିଲେ ମୁଁ ଏଠାରେ କୃଷ୍ଣକାବ୍ୟକୁ ହିଁ ଗ୍ରହଣ କରୁଛି। ଓଡ଼ିଆ କୃଷ୍ଣକାବ୍ୟମାନଙ୍କରେ ଯେଉଁ ପ୍ରେମର ଚିତ୍ରଣ କରାଯାଇଛି ତାହାର ଏକ ନିର୍ଦ୍ଦିଷ୍ଟ ଉପସ୍ଥାପନା ଭଙ୍ଗୀ ଅଛି। ଏହି ଉପସ୍ଥାପନା ଭଙ୍ଗୀଟିକୁ ମୁଁ ଏଠାରେ ଅବତାରଣା କରୁଛି। ବିଭିନ୍ନ କାବ୍ୟରୁ ଉଦ୍ଧୃତି ଦେଇ ଆଲୋଚନା କରିବାଦ୍ୱାରା ପ୍ରବନ୍ଧର କଳେବର ବୃଦ୍ଧି ହେବା ଆଶଙ୍କାରେ କେବଳ କେତୋଟି ପ୍ରାମାଣିକ ଉଦ୍ଧୃତି ପ୍ରଦାନ କରୁଛି।

—o—

(ଖ) **ରସତତ୍ତ୍ୱ** —ଚୈତନ୍ୟପନ୍ଥୀ ବୈଷ୍ଣବ ପରମ୍ପରାରେ ଭଗବତ୍ ପ୍ରେମର ଚରମ ପରିଣତିରୂପେ ରସ ସ୍ୱୀକୃତ, ଏହି ରସ ଏଠାରେ ମଧୁର ରସ ଭାବରେ ଗୃହୀତ। ରସଘନ ବିଗ୍ରହ ଭଗବାନ ଶ୍ରୀକୃଷ୍ଣ ଓ ତାଙ୍କର ହ୍ଲାଦିନୀ ଶକ୍ତି ରସମୟୀ ଶ୍ରୀରାଧାଙ୍କର ରସମୟ ଶୃଙ୍ଗାର ଲୀଳା, ଯାହା ମଧୁର ରସ ନାମରେ ଖ୍ୟାତ, ତାହାର ଆସ୍ୱାଦନ ଚୈତନ୍ୟପନ୍ଥୀ ବୈଷ୍ଣବା-ମାନଙ୍କର ପରମଧ୍ୟେୟ ବସ୍ତୁ। ତେଣୁ ଚୈତନ୍ୟପନ୍ଥୀ ବୈଷ୍ଣବ କବିମାନେ କାବ୍ୟ ଶାସ୍ତ୍ରରେ ଏହି ମଧୁର ରସର ତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି। 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରୁ ଜଣାଯାଏ ଯେ ଚୈତନ୍ୟଙ୍କ ନିର୍ଦ୍ଦେଶରେ ରୂପଗୋସ୍ୱାମୀ ବୃନ୍ଦାବନରେ ରସଶାସ୍ତ୍ର ରଚନା କରିଥିଲେ 'ଶ୍ରୀଚୈତନ୍ୟ ପରମ୍ପରାରେ' 'ଭକ୍ତିରସାମୃତସିନ୍ଧୁ' ଓ 'ଉଜ୍ଜ୍ୱଳନୀଳମଣି' ଗ୍ରନ୍ଥଦ୍ୱୟ ରସ ଶାସ୍ତ୍ରରୂପେ ସମ୍ମାନିତ ହୋଇଥାଏ। କହିବା ଅନାବଶ୍ୟକ ଯେ ଚୈତନ୍ୟପନ୍ଥୀ ବୈଷ୍ଣବ ପରମ୍ପରାରେ ରଚିତ ସମସ୍ତ କୃଷ୍ଣଲୀଳାତ୍ମକ କାବ୍ୟରେ ବର୍ଣ୍ଣିତ ରସ ଏହି ଗ୍ରନ୍ଥଦ୍ୱୟରେ ବର୍ଣ୍ଣିତ ରସତତ୍ତ୍ୱକୁ ହିଁ ଅନୁସରଣ କରୁଛି। ଚୈତନ୍ୟପନ୍ଥୀ ଓଡ଼ିଆ ବୈଷ୍ଣବ କବିମାନେ ମଧ୍ୟ ସ୍ୱକାବ୍ୟମାନଙ୍କରେ

ରସର ସେହି ନାୟିକ ବ୍ୟାଖ୍ୟା କରିଛନ୍ତି । ବର୍ତ୍ତମାନ ସେହି ରସଟିକୁ ସମ୍ପର୍କରେ ବିଚାର କରାଯାଉ ।

**ବିଭାବ** 'ସାହିତ୍ୟ ଦର୍ପଣ'ରେ ବର୍ଣ୍ଣିତ ଆଠଟି ସ୍ଥାୟୀଭାବ ମଧ୍ୟରୁ 'ରତି' ସ୍ଥାୟୀଭାବଟି ଚୈତନ୍ୟପନ୍ଥୀ ବୈଷ୍ଣବ କାବ୍ୟର ପ୍ରଧାନ ବର୍ଣ୍ଣନୀୟ ବିଷୟ । ସ୍ଥାୟୀଭାବ ସହିତ ବିଭାବ, ଅନୁଭାବ ଓ ସଞ୍ଚାରୀଭାବର ସଂଯୋଗ ଘଟିଲେ ରସ ନିଷ୍ପତ୍ତି ହୋଇ ଆସ୍ୱାଦନ ଯୋଗ୍ୟ ହୋଇଥାଏ । ଚୈତନ୍ୟ-ପନ୍ଥୀ ବୈଷ୍ଣବମାନେ ଭକ୍ତିକୁ ମୁଖ୍ୟ ସ୍ଥାୟୀଭାବ ରୂପେ ଗ୍ରହଣ କରିଥିବାରୁ ବୈଷ୍ଣବ ରସ ଶାସ୍ତ୍ର 'ଭକ୍ତିରସାମୃତ ସିନ୍ଧୁ'ରେ ରସ ଆସ୍ୱାଦନର ହେତୁକୁ ବିଭାବରୂପେ ଅଭିହିତ କରାଯାଇଛି । ବିଭାବ ଆଲମ୍ବନ ଓ ଉଦ୍ଦୀପନ ଭେଦରେ ଦ୍ୱିବିଧ। ଆଲମ୍ବନ ବିଭାବ ମଧ୍ୟ ପୁନଶ୍ଚ ବିଷୟାଲମ୍ବନ ଓ ଆଶ୍ରୟା-ଲମ୍ବନ ଭେଦରେ ଦୁଇପ୍ରକାର । ବୈଷ୍ଣବ ପରମ୍ପରାରେ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ବିଷୟାଲମ୍ବନ ଓ ଆଶ୍ରୟାଲମ୍ବନ ଅର୍ଥାତ୍ ଯେଉଁମାନଙ୍କୁ ଆଶ୍ରୟ କରି ରସର ଉଦ୍ରେକ ହୁଏ, ସେମାନେ ହେଉଛନ୍ତି କୃଷ୍ଣପ୍ରେୟସୀଗଣ । ଏହି କୃଷ୍ଣପ୍ରେୟସୀ ଦୁଇ ଭାଗରେ ବିଭକ୍ତ, ଯଥା ସ୍ୱକୀୟା ଓ ପରକୀୟା । ଏହି ପ୍ରେୟସୀମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ-ମହିଷୀଗଣ ସ୍ୱକୀୟାଭାବେ ଏବଂ ରାଗର ପ୍ରାଦୁର୍ଭାବ ଯାହାଙ୍କର ସାଧୁମାର୍ଗର ଚରମ ସୀମାକୁ ବଲଙ୍ଘନ କରିଥିବା ସତ୍ତ୍ୱେ ଅରୁନ୍ଧତୀ ପ୍ରମୁଖ ଦୁର୍ଗାଭସାରକୁ ଶତଗୁଣରେ ପ୍ରଶଂସା କରନ୍ତି ଓ ବ୍ରଜବାସିନୀ ହେଲେ ମଧ୍ୟ ଯେଉଁମାନଙ୍କର ମାଧୁର୍ଯ୍ୟାତିଶଯ୍ୟ ଲକ୍ଷ୍ମୀଙ୍କର ଶ୍ରୀକୁ ଧିକ୍କାର କରେ ଏବଂ ଯେଉଁମାନେ ତ୍ରିଭୁବନ ବଳିଷ୍ଠା ଅର୍ଥାତ୍ ଅନୁପମା, ସେହି କୃଷ୍ଣପ୍ରିୟାଗଣ ପରକୀୟାଭାବେ ଗୃହୀତ । ପୁନଶ୍ଚ ଏହି **ପରକୀୟା** ନାୟିକା କନ୍ୟକା ଓ ପରୋଢ଼ାଭାବେ ଦ୍ୱିବିଧ ।

କନ୍ୟକା ଗୋପୀଗଣ ହେଉଛନ୍ତି ସଲ୍ଲଜା, ଅବିବାହିତା, ପିତୃପାଳିକା, କ୍ରୀଡ଼ା କବୋରେ ନାୟିକଙ୍କ ରତା ଏବଂ ମୁଗ୍ଧା ନାୟିକାର ସମସ୍ତ ଲକ୍ଷଣଯୁକ୍ତା । ବ୍ରଜରେ ଥିବା ଦୁର୍ଲ୍ଲଭ ଧନ୍ୟଗଣ କୁମାରୀଗଣ ଏହି କନ୍ୟକା ଶ୍ରେଣୀଭୁକ୍ତା । (ଉ:ନୀ, ଶ୍ରୀକୃଷ୍ଣବଲ୍ଲଭା ପ୍ରକରଣ, ଶ୍ଳୋ-୩୪) ଯେଉଁ ଗୋପୀଗଣ ବିବାହିତା ହେଲେ ମଧ୍ୟ ଶ୍ରୀହରିଙ୍କ ସହିତ ସମ୍ଭୋଗ କରିବା ପାଇଁ ଲାଳସାନ୍ୱିତା ଅଟନ୍ତି ଏବଂ ଯେଉଁମାନଙ୍କରେ ଗର୍ଭରେ

ସନ୍ତାନ ହୁଏ ନାହିଁ ସେମାନେ ପରୋଢ଼ା ନବେ ଅବିବାହିତା । ଏମାନଙ୍କଠାରେ ଉତ୍କଣ୍ଠାକାମତା, ଶୋଭା ସାଦଗୁଣ୍ୟ ଓ ବୈଭବ ସର୍ବାଧିକ । (ନବୈବ, ଶ୍ଳୋ । ୩୬)

ପରକୀୟା ନାୟିକାଗଣ ପୁନଶ୍ଚ ସାଧନାପରା, ଦେବୀ ଓ ନିତ୍ୟପ୍ରିୟା ଭେଦରେ ତ୍ରିବିଧ । ସାଧନା ବା ତପସ୍ୟାରେ ଯେଉଁ ଋଷିବୃନ୍ଦ ଗୋପୀ ଦେହ ଧାରଣ କରିଥିଲେ, ସେମାନଙ୍କୁ ସାଧନା ପରା ଗୋପୀ, କୁହା-ଯାଇଥାଏ । ଭଗବାନ ଶ୍ରୀକୃଷ୍ଣ ମର୍ତ୍ତ୍ୟାବତୀର୍ଣ୍ଣ କାଳରେ ଯେଉଁ ଅଂଶ ସମ୍ଭୂତା ଗୋପୀ ରୂପେ ପ୍ରକଟିତା ହୋଇଥିଲେ ସେମାନେ ଦେବୀ ନାମରେ ପରିଚିତା । ଏହାଛଡ଼ା ନିତ୍ୟ କାନ୍ତାଗଣଙ୍କର ମର୍ତ୍ତ୍ୟ ପ୍ରକଟାବସ୍ଥାକୁ ନିତ୍ୟ-ପ୍ରିୟା ପରକୀୟା ନାୟିକା କୁହାଯାଇଥାଏ । ଶ୍ରୀରାଧା, ଚନ୍ଦ୍ରାବଳୀ, ବିଶାଖା, ଲଳିତା, ଶ୍ୟାମା, ପଦ୍ମା, ଶୈବ୍ୟା, ଭଦ୍ରା ତାରା, ଗୋପାଳୀ, ଧନିଷ୍ଠା, ପାଳିକାଦି ନିତ୍ୟପ୍ରିୟା ଗୋପୀ ରୂପେ ପରିଚିତ । ଏମାନଙ୍କ ମଧ୍ୟରେ ଶ୍ରୀରାଧା ଓ ଚନ୍ଦ୍ରାବଳୀ ଶ୍ରେଷ୍ଠ ସ୍ଥାନୀୟା ଏବଂ ଏ ଦୁହିଁଙ୍କ ମଧ୍ୟରେ ଶ୍ରୀରାଧା ମୁଖ୍ୟା ।

ଉଦ୍ଦୀପନ ବିଭାବ ରସୋଦ୍ରେକରେ ଯଥେଷ୍ଟ ସହାୟତା କରିଥାଏ । ଅଳଙ୍କାର ଶାସ୍ତ୍ରର ଉଦ୍ଦୀପନ ବିଭାବ ଅପେକ୍ଷା ବୈଷ୍ଣବ ଶାସ୍ତ୍ରରେ ବର୍ଣ୍ଣିତ ଉଦ୍ଦୀପନ ବିଭାବ କେତେକାଂଶରେ ଭିନ୍ନ ହୋଇଥିବାରୁ ଏଠାରେ ବୈଷ୍ଣବ ରସଶାସ୍ତ୍ର ଆଧାରରେ ମଧୁର ରସର ପରିବର୍ଦ୍ଧକ ଉଦ୍ଦୀପନ ବିଭାବ ସମ୍ପର୍କରେ କୁହାଯାଉଛି । ଯେଉଁ କେତୋଟି ନିର୍ଦ୍ଦିଷ୍ଟ ଉପାଦାନ ମଧ୍ୟରେ ଉଦ୍ଦୀପନ ବିଭାବ ପରିପୁଷ୍ଟ ହୋଇଥାଏ । ସେଗୁଡ଼ିକୁ ନିମ୍ନରେ ଦର୍ଶାଇ ଦିଆଗଲା ।

୧ । **ଗୁଣାବଳୀ** ଗୁଣାବଳୀ କାୟିକ, ବାଚିକ ଓ ମାନସିକ ଭେଦରେ ତ୍ରିବିଧ । କୃତଜ୍ଞତା, କ୍ଷମା ଓ କରୁଣା ଆଦି—ମାନସିକ ଗୁଣ ଅନ୍ତର୍ଭୁକ୍ତ । ଶ୍ରୀରାଧାଙ୍କର ଏହି ଗୁଣ ଦ୍ୱାରା ଶ୍ରୀକୃଷ୍ଣ ଯେତିକି ଆକୃଷ୍ଟ ହୋଇପଡ଼ନ୍ତି ଶ୍ରୀକୃଷ୍ଣଙ୍କର ଏହିଗୁଣ ମଧ୍ୟ ଶ୍ରୀରାଧାଙ୍କୁ ସେତିକି ଆମୂଦିତ କରାଇଥାଏ ।

ବାଳଭଙ୍ଗିମା ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ସହିତ ସଖାମାନଙ୍କର ଶ୍ରୀରାଧାଙ୍କ ସହିତ ସଖୀମାନଙ୍କର ଅଥବା ରାଧାକୃଷ୍ଣଙ୍କର ବକ୍ରୋକ୍ତିଗର୍ଭିତ ହାସ ପରିହାସ ଅତ୍ୟନ୍ତ କର୍ଣ୍ଣରସାୟନ ହୋଇଥିବାରୁ ଏହାକୁ ବାଚିକ ଗୁଣ କୁହାଯାଇଥାଏ । ବୟସ ରୂପ, ଲାବଣ୍ୟ ସୌନ୍ଦର୍ଯ୍ୟ, ଅଭିରୂପତା ଓ ମାଧୁର୍ଯ୍ୟାଦି ହେଉଛି କାୟିକ ଗୁଣ ।

ମଧୁର ରସ ଉପଯୋଗୀ ବୟସକୁ ରୂପଗୋସ୍ୱାମୀ ଭକ୍ତିରସାମୃତ ସିନ୍ଧୁରେ ବୟଃସନ୍ଧି, ନବ୍ୟବୟସ, ବ୍ୟକ୍ତ ଯୌବନ ଓ ପୂର୍ଣ୍ଣଯୌବନ— ଏହିପରି ଚାରିଭାଗରେ ବିଭକ୍ତ କରିଛନ୍ତି । ବାଲ୍ୟ ଓ ଯୌବନ ସନ୍ଧିକାଳ ଅର୍ଥାତ୍ କୈଶୋରାବସ୍ଥାକୁ ବୟଃସନ୍ଧି କୁହାଯାଇଥାଏ । ସେହିଭଳି ଯେଉଁ ଅବସ୍ଥାରେ ନାରୀର ସ୍ତନ ମାଂସଳତା ଓ ନିତମ୍ବର ପୃଥୁଳତା ବୃଦ୍ଧିପାଇ ଚାହାଣୀ ଓ ଚିତ୍ତରେ ଚଞ୍ଚଳତା ଏବଂ ମୁଖରେ ମୃଦୁହାସ ସୃଷ୍ଟି ହୋଇଥାଏ, ସେହି ଅବସ୍ଥାକୁ ନବ୍ୟବୟସାବସ୍ଥା କୁହାଯାଇଥାଏ । ଯେଉଁ ସମୟରେ ସ୍ତନଦ୍ୱୟ ଅତ୍ୟନ୍ତ ସୁନ୍ଦର ଦେଖାଯାଏ ଓ ଅଙ୍ଗପ୍ରତ୍ୟଙ୍ଗରେ ଉଜ୍ଜ୍ୱଳତା ବୃଦ୍ଧି ପାଏ, ସେ ସମୟକୁ ବ୍ୟକ୍ତ ଯୌବନ କୁହାଯାଏ । ଏହି ସମୟରେ ନାୟକ ନାୟିକା ରତିକ୍ରୀଡ଼ାରେ ରତ ହୋଇଥାଆନ୍ତି । ଯେଉଁ ଅବସ୍ଥାରେ ନିତମ୍ବର ଉନ୍ନତତା କଟୀର କ୍ଷୀଣତା, କାନ୍ତିର ଉଜ୍ଜ୍ୱଳତା, ଊରୁ ଯୁଗଳର ବର୍ତ୍ତୁଳତା ଓ ସ୍ତନର ସ୍ଥୂଳତା ପରିଲକ୍ଷିତ ହୋଇ ନାୟକ ଓ ନାୟିକା ପରସ୍ପରଙ୍କଠାରେ ବୈଦଗ୍ଧୀ କଳା ବା କଳାବିଳାସ ଚାତୁରୀ ପ୍ରକାଶ ପାଏ, ସେହି ଅବସ୍ଥାକୁ ପୂର୍ଣ୍ଣଯୌବନ କୁହାଯାଇଥାଏ ।

"ଉଜ୍ଜ୍ୱଳ ନୀଳମଣି"ରେ କୁହାଯାଇଛି, ଦିବ୍ୟଭୂଷଣ ବହିର୍ଭୂତ ଶରୀରର ଅଙ୍ଗସମୂହ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭୂଷିତ ହେଲେ ତାହାକୁ ରୂପ କୁହାଯାଇଥାଏ । ଉଦ୍ଦୀପନ ବିଭାବ ମଧ୍ୟରେ ରୂପ ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ, ଯାହା ନାୟକ ନାୟିକାଙ୍କ ମଧ୍ୟରେ କାମ ଭାବରେ ଉଦ୍ରେକ କରି 'ରତି' ସ୍ଥାୟୀ ଭାବଟିକୁ ସୃଷ୍ଟି କରିଥାଏ, (ଉଦ୍ଦୀପନ ପ୍ରକରଣ, ଶ୍ଳୋ-୨୫) ଲାବଣ୍ୟ ହେଉଛି ମୁକ୍ତା ମଧ୍ୟରେ କାନ୍ତିର ନିର୍ମଳତା ପରି ଶରୀରର ଅଙ୍ଗ ସମୂହରୁ ପ୍ରକାଶିତ କାନ୍ତି-କଦମ୍ବ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଶରୀରର ଏହି କାନ୍ତି ପରସ୍ପରକୁ ଆକୃଷ୍ଟ କରିବାରେ ଅନେକ ସାହାଯ୍ୟ କରିଥାଏ ।

ଫଳରେ ସେମାନଙ୍କ ହୃଦୟରେ ରତି ଭାବର ଜାଗରଣ ସୃଷ୍ଟି ହୋଇ-ଥାଏ । ଦେହର ବିଭିନ୍ନ ଅଙ୍ଗସମୂହ ଯଥୋଚିତ ସ୍ଥୂଳତା କୃଶତା ଓ ବର୍ତ୍ତୁଳତା ପ୍ରାପ୍ତ ହେଲେ ବୈଷ୍ଣବ ରସଶାସ୍ତ୍ରରେ ତାହା ସୌନ୍ଦର୍ଯ୍ୟ କୁହାଯାଏ । ମୁଖ୍ୟତଃ ଏହି ସୌନ୍ଦର୍ଯ୍ୟ କଟୀର କ୍ଷୀଣତ, ବକ୍ଷ ଓ ଜାନୁ ଦେଶର ସ୍ଥୂଳତା ଓ ଦୃଢତା ଓ ନିତମ୍ବର ବର୍ତ୍ତୁଳତାକୁ ବୁଝାଇଥାଏ । ଅଭିରୂପତା ହେଉଛି ଯାହା ନିଜର ଗୁଣୋତ୍କର୍ଷ ଦ୍ୱାରା ନିକଟସ୍ଥ ଅନ୍ୟବସ୍ତୁକୁ ସାରୂପ୍ୟ ପ୍ରଦାନ କରେ । ଅର୍ଥାତ୍ କୁଞ୍ଜ ମଧ୍ୟରେ ଶ୍ୟାମଳ ବର୍ଣ୍ଣର କୃଷ୍ଣଙ୍କ ଦେହରୁ ଇନ୍ଦ୍ରନୀଳମଣିର ରଙ୍ଗ ସ୍ଫୁରିତ ହୋଇ ସମଗ୍ର ବନଭୂମିକୁ ନୀଳମୟ କରିଦେବା କିମ୍ବା ଶ୍ରୀରାଧାଙ୍କ ଦେହକୁ ହେମଲତା, ପଦକୁ ପଲ୍ଲବ, ଅଙ୍ଗୁଳିକୁ କଳିକା ସଙ୍ଗରେ ତୁଳନା କରିବା ଇତ୍ୟାଦି । ଶରୀରର ଅନିର୍ବାର୍ଯ୍ୟ ରୂପକୁ ମାଧୁର୍ଯ୍ୟ କୁହାଯାଏ । ଶ୍ରୀକୃଷ୍ଣଙ୍କର କଟାକ୍ଷର ମାଧୁର୍ଯ୍ୟ, ରାଧାଙ୍କର ସ୍ମିତର ମାଧୁର୍ଯ୍ୟ ଇତ୍ୟାଦି ଏହି ଶ୍ରେଣୀଭୁକ୍ତ । କୋମଳ ବସ୍ତୁର ସ୍ପର୍ଶ ଯଦି ଶରୀର ପ୍ରତି ଆଘାତ ପ୍ରଦାନ କରେ ତେବେ ତାହାକୁ ଶରୀର ମାର୍ଦ୍ଦବ କୁହାଯାଏ । ଏହା ଉତ୍ତମ, ମଧ୍ୟମ ଓ କନିଷ୍ଠ ଭେଦରେ ମଧ୍ୟ ତ୍ରିବିଧ । ଉଦ୍ଦୀପନ ବିଭାବର ପରିପୁଷ୍ଟି ନିମିତ୍ତ ଏହିସବୁ ଗୁଣାବଳୀଗୁଡ଼ିକ ମୁଖ୍ୟତଃ ସହାୟତା କରିଥାନ୍ତି ।

**୨ । ନାମ** ଶ୍ରୀରାଧା ଓ ଶ୍ରୀକୃଷ୍ଣ ପରସ୍ପରର ନାମ ଶ୍ରବଣରେ ଆକୃଷ୍ଟ ହେବାଦ୍ୱାରା ସେମାନଙ୍କ ହୃଦୟରେ ଉଦ୍ଦୀପନ ବିଭାବର ସଞ୍ଚାର ଘଟେ । କୃଷ୍ଣଙ୍କର ନାମ ଶ୍ରବଣରେ ଶ୍ରୀରାଧାଙ୍କ ଯେଉଁଭଳି ଅବସ୍ଥା ଦେଖା-ଦେଇଥାଏ ଅର୍ଥାତ୍ ଅଷ୍ଟସାତ୍ତ୍ୱିକ ଲକ୍ଷଣ ପ୍ରକାଶ ପାଇଥାଏ, ଠିକ୍ ଅନୁରୂପ ଭାବ ମଧ୍ୟ ଶ୍ରୀରାଧାଙ୍କର ନାମ ଶ୍ରବଣରେ ଶ୍ରୀକୃଷ୍ଣଙ୍କଠାରେ ଦେଖାଦେଇଥାଏ । ଏ ପ୍ରକାର ଭାବୋଦ୍ଦୀପକ ବର୍ଣ୍ଣନା ଓଡ଼ିଆ ବୈଷ୍ଣବ କବିମାନଙ୍କର କାବ୍ୟ କବିତା ସର୍ବତ୍ର ପରିଦୃଷ୍ଟ ହୋଇଥାଏ ।

**୩ । ଚରିତ**—ଚରିତ କହିଲେ ଶ୍ରୀକୃଷ୍ଣଙ୍କର ଗୋଚାରଣ, ଗୋ-ଦୋହନ, ଗୋହୂତ (ଗୋରୁମାନଙ୍କୁ ଆହ୍ୱାନ କରିବା), ମନୋଜ୍ଞକ୍ରୀଡ଼ା, ନୃତ୍ୟ,

ବେଣୁବାଦନ ଇତ୍ୟାଦିକୁ ବୁଝାଇଥାଏ । ଶ୍ରୀକୃଷ୍ଣଙ୍କର ଏହି ସବୁ କ୍ରିୟାକଳାପ ଶ୍ରୀରାଧାଙ୍କୁ ଅତ୍ୟନ୍ତ ଆନନ୍ଦ ପ୍ରଦାନ କରିଥାଏ । ଗୋଷ୍ଠରକ୍ଷା ଯାତ୍ରାକାଳୀନ ଶ୍ରୀକୃଷ୍ଣଙ୍କ ଉପରେ ରାଧାଙ୍କର ଦୃଷ୍ଟିପାତ ହେବାକ୍ଷଣି ତାଙ୍କର ହୃଦୟ କୃଷ୍ଣଙ୍କ ପ୍ରତି ଆକର୍ଷିତ ହୋଇଥାଏ । ଅତି ସାଧାରଣ ଗୋପାଳ ପରି ଗାଈମାନଙ୍କର ଗୋଡରେ ଛନ୍ଦଣିଦେଇ ଓ କୋଳରେ ଦୁହାଁଣ ଧରି ଶ୍ରୀକୃଷ୍ଣ ଯେପରି ଗୋଦୋହନ କରନ୍ତି ଏବଂ ଗୋଷ୍ଠକାଳୀନ ବେଣୁଧ୍ୱନି ଶ୍ରବଣରେ ଗାଈମାନେ ଯେଉଁଭଳି କାନ ଗୁଡ଼ିକୁ ଟେକି ତୃଣମୁଖରେ କୃଷ୍ଣଙ୍କର ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତି, ତାହାର ମନୋରମ ବର୍ଣ୍ଣନା କବିମାନଙ୍କର ଲେଖନୀରେ ଅତ୍ୟନ୍ତ ଜୀବନ୍ତ ହୋଇ ଉଠିଛି । ଶ୍ରୀକୃଷ୍ଣଙ୍କର ନୃତ୍ୟରେ ସ୍ୱର୍ଗପୁର ଚମତ୍କୃତ ହେବା ଓ ବଂଶୀଧ୍ୱନିର ପ୍ରଭାବରେ ରାଧାଙ୍କର ଧୈର୍ଯ୍ୟଚ୍ୟୁତି ଘଟିବା, ନୀବିବନ୍ଧନ ଖୋଲିବା, ହୃଦୟରେ କାମଜ୍ୱାଳା ସୃଷ୍ଟିହେବା, ନେତ୍ରରୁ ନୀର ସ୍ରବିବା ପ୍ରଭୃତି ସାତ୍ତ୍ୱିକ ବିକାର ଆଦିକୁ ବୈଷ୍ଣବ କବିମାନେ ବର୍ଣ୍ଣନା କରିଅଛନ୍ତି । ଶ୍ରୀକୃଷ୍ଣଙ୍କର ଲୀଳା କହିଲେ ରାସଲୀଳାକୁ ବୁଝାଇଥାଏ, ଯାହାକି ତ୍ରିଭୁବନ ବିମୋହିତ କରିଥାଏ । ଏହି ରାସଲୀଳାର ତାତ୍ତ୍ୱିକ ବର୍ଣ୍ଣନା ପୂର୍ବେ କରାଯାଇଥିବାରୁ ଏଠାରେ ତାହାର ପୁନରାବୃତ୍ତି କରାଯାଉ ନାହିଁ ।

୪ । **ମଣ୍ଡନ** – ଏହି ଉଦ୍ଦୀପନ ବିଭାବଟି ବସ୍ତ୍ର, ଭୂଷା, ଓ ଅନୁଲେପନ ଭେଦରେ ତ୍ରିବିଧଭାବରେ ବିଭକ୍ତ । ବସ୍ତ୍ରକହିଲେ ଶ୍ରୀକୃଷ୍ଣଙ୍କର ପୀତ ପଟ୍ଟବସ୍ତ୍ର, ମୋଡ଼ା ଦୋସଡ଼ା, ଓ ଶ୍ରୀରାଧାଙ୍କର ବସନର ବର୍ଣ୍ଣନାକୁ ବୁଝାଇଥାଏ । ସେହିପରି ଶ୍ରୀକୃଷ୍ଣଙ୍କର କର୍ଣ୍ଣର ମକରାକୃତି କୁଣ୍ଡଳ, କଣ୍ଠରେ ଲମ୍ବିତ ରତ୍ନହାର ଓ କୌସ୍ତୁଭମଣି, କରରେ କଙ୍କଣ, ବାହୁର ବାହୁଟି, ଅଙ୍ଗୁଳିର ରତ୍ନମୁଦି, କଟୀର କିଙ୍କିଣୀ, ପଦର ନୂପୁର ଓ ଶ୍ରୀରାଧାଙ୍କର ଶୋଭାବର୍ଦ୍ଧକ ଅଙ୍ଗଭୂଷଣ ଗୁଡ଼ିକୁ ଭୂଷା ପର୍ଯ୍ୟାୟରେ ଗ୍ରହଣ କରାଯାଇଥାଏ । ସେହିଭଳି ଶ୍ରୀକୃଷ୍ଣଙ୍କର କଣ୍ଠରେ ବନମାଳା, ଚୂଡ଼ାରେ ମଲ୍ଲୀ, ଚମ୍ପାକଢ଼ୀ ଓ ମାଳତୀ ପୁଷ୍ପର ମାଳା ଏବଂ ଶ୍ରୀରାଧାଙ୍କର କେଶରେ ଚମ୍ପା ଓ ମଲ୍ଲୀର ସୁବାସିତ ପୁଷ୍ପମାନେ ଶୋଭା ପାଇଥାଏ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ବେଶ ବର୍ଣ୍ଣନାକାଳରେ

ବୈଷ୍ଣବ କବିମାନେ ଏଗୁଡ଼ିକୁ ଚମତ୍କାରିତା ସହିତ ଉପସ୍ଥାପିତ କରିଛନ୍ତି । ଅନୁଲେପନ କହିଲେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମୁଖମଣ୍ଡଳରେ ଚନ୍ଦନ, କସ୍ତୁରୀ, କର୍ପୂର, ତିଳକ ଓ କଜ୍ଜ୍ୱଳ ପ୍ରଭୃତିର ବିଭିନ୍ନ ଚିତ୍ରକୁ ବୁଝାଇଥାଏ ।

**୪ । ସମ୍ବନ୍ଧୀ**—ଲଗ୍ନ ଓ ସନ୍ନିହିତ ଭେଦରେ ଏହା ଦ୍ୱିବିଧ । ଲଗ୍ନ ମଧ୍ୟରେ ବଂଶୀରବ, ଶୃଙ୍ଗାରବ, ଗୀତ, ସୌରଭ, ଭୂଷଣଶବ୍ଦ, ଚରଣଚିହ୍ନ, ବୀଣାଧ୍ୱନି ଓ ଶିଳ୍ପ କୌଶଳ ପ୍ରଭୃତି ଅନ୍ତର୍ଭୁକ୍ତ ଏବଂ ସନ୍ନିହିତ ମଧ୍ୟରେ ନିର୍ମାଲ୍ୟ, ମୟୂରପୁଚ୍ଛ, ଗୁଞ୍ଜାମାଳ, ଗିରିଧାତୁ, ନୈଚିକୀ (ଉତ୍ତମ-ଗାଭୀ)ଲଗୁଡ଼, ବେଣୁ, ଶୃଙ୍ଗୀ, ପ୍ରିୟଜନ ଦର୍ଶନ, ଗୋଧୂଳି, ବୃନ୍ଦାବନ, ଗୋବର୍ଦ୍ଧନ, ଯମୁନା ଓ ରାସସ୍ଥଳୀକୁ ବୁଝାଇଥାଏ । କୃଷ୍ଣାଶ୍ରିତ ମଧୁର ରସର ଏ ସବୁ ଉଦ୍ଦୀପକ ।

ଚୈତନ୍ୟପନ୍ଥୀ ବୈଷ୍ଣବ କବିମାନେ ଏହି ଉଭୟ ଲଗ୍ନ ସନ୍ନିହିତ ଅନ୍ତର୍ଭୁକ୍ତ ସମସ୍ତ ବିଷୟକୁ ସ୍ୱକାବ୍ୟ ମଧ୍ୟରେ ବର୍ଣ୍ଣନା କରିଅଛନ୍ତି । ବଂଶୀ-ଧ୍ୱନିର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ କବିମାନେ ଏହାର ଉଭୟ ମଧୁର ଓ କର୍କଶ ରୂପର ପ୍ରଭାବକୁ ଦର୍ଶାଇଅଛନ୍ତି । ଶ୍ରୀକୃଷ୍ଣଙ୍କର ବଂଶୀଧ୍ୱନି ଅସୁରମାନଙ୍କ ପାଇଁ ଭୟପ୍ରଦ ହେଲାବେଳେ ସୁରମାନଙ୍କ ପାଇଁ ମଙ୍ଗଳପ୍ରଦ ହୋଇଥାଏ । ଗୋଚାରଣ କାଳରେ କୃଷ୍ଣ ସଖାମାନଙ୍କର ଶୃଙ୍ଗୀରବ, ଓ ନୃତ୍ୟ, ଗୀତ ଏବଂ ରାସସ୍ଥଳୀର ଷଡ଼ରାଗ, ସପ୍ତସ୍ୱର ଓ ଛତିଶ ରାଗିଣୀର ମଧୁର ସଙ୍ଗୀତ ପ୍ରଭୃତିକୁ କବିମାନେ ବର୍ଣ୍ଣନା କରିଛନ୍ତି । ସେହିଭଳି ରାଧା କୃଷ୍ଣଙ୍କର ଅଙ୍ଗ ସୌରଭ, ଭୂଷଣ ଶବ୍ଦ, ଚରଣଚିହ୍ନ ପ୍ରଭୃତି ପରସ୍ପରର ପ୍ରେମୋଦ୍ଦୀପକ ବିଭାବ ଭାବେ ବର୍ଣ୍ଣିତ । ବୀଣାଧ୍ୱନି କାମୋଦ୍ଦୀପକ ହେତୁ କୁଞ୍ଜାଭିସାରକାଳରେ ଭୁଙ୍ଗବିଦ୍ୟା ବୀଣାବାଦନ ସହିତ ମଧୁର ଗୀତଗାନପୂର୍ବକ ରାଧାକୃଷ୍ଣଙ୍କ ମନକୁ ଉନ୍ମାଦିତ କରିଥାନ୍ତି । ଶ୍ରୀରାଧାଙ୍କର ଶିଳ୍ପକୌଶଳ (ପୁଷ୍ପମାଲ୍ୟାଦି ରଚନ କୌଶଳ) କୃଷ୍ଣଙ୍କ ଉପରେ କାମୋଦ୍ଦୀପ୍ତ କରେ, ତାହାର ମନୋରମ ବର୍ଣ୍ଣନା ମଧ୍ୟ କବିମାନଙ୍କ ଦ୍ୱାରା ପ୍ରଦାନ କରାଯାଇଛି ।

ସନ୍ନିହିତ ପର୍ଯ୍ୟାୟରେ କୃଷ୍ଣଙ୍କର ଅଙ୍ଗଛଡ଼ା ଫୁଲକୁ ଶ୍ରୀରାଧା ନିର୍ମାଲ୍ୟଭଳି ମନେକରିବା, ଶ୍ରୀକୃଷ୍ଣଙ୍କ ରୂପ ମାଧୁର୍ଯ୍ୟର ମଣ୍ଡନକାରୀ ମୟୂରପୁଚ୍ଛ ଓ ଗୁଞ୍ଜାଫଳ ଶ୍ରୀରାଧାଙ୍କ ହୃଦୟକୁ ଦ୍ରବୀଭୂତ କରିବା, କୃଷ୍ଣଙ୍କ ବକ୍ଷସ୍ଥଳରେ ଶୋଭିତ ବୈଜୟନ୍ତୀର ଦର୍ଶନରେ ଶ୍ରୀରାଧାଙ୍କର ହୃଦୟରେ ପ୍ରେମୋଦ୍ଦୀପନା ଜାତହେବା ପ୍ରଭୃତିକୁ ଚୈତନ୍ୟ ସମ୍ପ୍ରଦାୟର କବିମାନେ ଯେପରି ବର୍ଣ୍ଣନା କରିଛନ୍ତି, ସେହିଭଳି ଶ୍ରୀକୃଷ୍ଣଙ୍କ ପ୍ରତି ଉତ୍ତମ ଗୋପୀମାନଙ୍କର ଆସକ୍ତି ଓ ଶ୍ରୀକୃଷ୍ଣଙ୍କର ସେମାନଙ୍କପ୍ରତି ମମତା, ଗୋଚାରଣ ଯାତ୍ରାକାଳରେ ହସ୍ତରେ ଶ୍ରୀକୃଷ୍ଣଙ୍କର ଶୋଭିତ ଲଗୁଡ଼, ଶିଙ୍ଗା, ବେଣୁ, ବେତ୍ର ପ୍ରଭୃତିର ରାଧାଙ୍କପ୍ରତି ପ୍ରଭାବ, ବେଣୁଧ୍ୱନି ଶ୍ରବଣରେ ଶ୍ରୀରାଧାଙ୍କର ଆତ୍ମ ନିମଜ୍ଜିତ ଭାବ ଓ କୃଷ୍ଣଙ୍କ ପ୍ରିୟ ଜନ ଦର୍ଶନରେ ତାଙ୍କର ଅଧୀରତା ପ୍ରଭୃତିକୁ କବିମାନେ ଉଦ୍ଦୀପକ ବିଭାବ ରୂପେ ବର୍ଣ୍ଣନା କରିଛନ୍ତି । ଏତଦ୍‌ବ୍ୟତୀତ କବିମାନେ ଶ୍ରୀକୃଷ୍ଣଙ୍କ ଶରୀରରେ ଗୋରଜପତନର ମନୋରମ ପରିକଳ୍ପନା ଓ ବୃନ୍ଦାବନ, ଯମୁନା ଓ ଗୋବର୍ଦ୍ଧନ ପ୍ରଭୃତିର ବର୍ଣ୍ଣନାକରି ଏଗୁଡ଼ିକୁ ମଧୁର ରସର ଉଦ୍ଦୀପକଭାବେ ଗ୍ରହଣ କରିଛନ୍ତି । ବୃନ୍ଦାବନର ତାତ୍ତ୍ୱିକ ବର୍ଣ୍ଣନା ଅନ୍ୟତ୍ର ଦେବାର ଲକ୍ଷ୍ୟଥିବାରୁ ଏଠାରେ ସେଥିରୁ ନିବୃତ୍ତ ରହିଛୁ ।

ଉପର୍ଯ୍ୟୁକ୍ତ ସମସ୍ତ ଉଦ୍ଦୀପନ ବିଭାବଗୁଡ଼ିକ ବୈଷ୍ଣବ ରସଶାସ୍ତ୍ରରେ ସ୍ୱୀକୃତ ହୋଇଥିବାରୁ ଓଡ଼ିଆ ବୈଷ୍ଣବ କବିମାନେ ସେହି ଉପାଦାନଗୁଡ଼ିକୁ ସ୍ୱକାବ୍ୟ କବିତାମାନଙ୍କରେ ବର୍ଣ୍ଣନା କରି ରାଧାକୃଷ୍ଣ ଲୀଳାବିଳାସର ଚରମ ମହାଣତ୍ୱ ଦର୍ଶାଇଛନ୍ତି ।

**ଅନୁଭାବ** 'ଅନୁ' ଅର୍ଥ ପଶ୍ଚାତ୍ ବା ପରେ । ତେଣୁ ଭାବପରେ ଯାହା ଉଦୟ ହୋଇଥାଏ, ତାହା ହିଁ ଅନୁଭାବ । ସାଧାରଣ ଶୃଙ୍ଗାର ରସର ଅନୁଭାବ ଓ କୃଷ୍ଣରତି ଜନିତ ଅନୁଭାବ ଏକା ପ୍ରକାରର ନୁହେଁ । ସାଧାରଣ ରତିର ଅନୁଭାବ ସମ୍ପର୍କରେ ଭକ୍ତିରସାମୃତ ସିନ୍ଧୁରେ କୁହାଯାଇଛି—'ଅନୁଭାବାସ୍ତୁ ଚିତ୍ତସ୍ଥ ଭାବନାମାବବୋଧକାଃ ।' ଅର୍ଥାତ୍ ଅନୁଭାବ ହେଉଛି ଚିତ୍ତସ୍ଥ ଭାବର ଅବବୋଧକ ବା ପରିଚାୟକ । କିନ୍ତୁ ଭକ୍ତିର କୃଷ୍ଣରତି ଜନିତ ଅନୁଭାବ ହେଉଛି ନୃତ୍ୟ, ବିଲୁଣ୍ଠନ, ଗୀତ, ଚିତ୍କାର, ଗାତ୍ରମୋଟନ, ହୁଙ୍କାର, ଜୃମ୍ଭଣ, ଦୀର୍ଘଶ୍ୱାସ, ଅଟ୍ଟହାସ୍ୟ, ଅଶ୍ରୁ, କମ୍ପ,

ସ୍ୱେଦ, ପୁଲକ ଓ ସ୍ତମ୍ଭ ପ୍ରଭୃତି । ବୈଷ୍ଣବରସ ଶାସ୍ତ୍ରାନୁଯାୟୀ ଏହି ଅନୁଭାବ ଦୁଇପ୍ରକାର ଯଥା—ସାତ୍ତ୍ୱିକ ଓ ଉଦ୍ଭାସ୍ୱର । ଉଜ୍ଜ୍ୱଳ ନୀଳମଣି ଗ୍ରନ୍ଥରେ ବ୍ରଜାଙ୍ଗନାମାନଙ୍କର କାନ୍ତାରତି ବିଷୟକ ସ୍ଥାୟୀଭାବର ଯେଉଁ କୋଡ଼ିଏଟି ମୁଖ୍ୟ ସାତ୍ତ୍ୱିକ ଅନୁଭାବର ଉଲ୍ଲେଖ ଅଛି, ତାହା ବିଂଶତି ଅଳଙ୍କାର ଭାବେ ପରିଚିତ । ଏହି ବିଂଶତି ଅଳଙ୍କାରର ତିନୋଟି ଭେଦ ରହିଛି । ଯଥା, ଅଙ୍ଗଜ, ଅଯତ୍ନଜ ଓ ସ୍ୱଭାବଜ ।

ଅଙ୍ଗଜ ଅଳଙ୍କାର - ଭାବ, ହାବ, ହେଳା ।

ଅଯତ୍ନଜ ଅଳଙ୍କାର - ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ପ୍ରଗଳ୍ଭ, ଔଦାର୍ଯ୍ୟ ଓ ଧୈର୍ଯ୍ୟ ଏବଂ

ସ୍ୱଭାବଜ ଅଳଙ୍କାର - ଲୀଳା, ବିଳାସ, ବିଚ୍ଛିତ୍ତି, ବିଭ୍ରମ, କିଳକିଞ୍ଚିତ, ମୋଟ୍ଟାୟିତ, କୁଟ୍ଟମିତ, ବିବୋବକ ଲଳିତ ଓ ବିକୃତ ।

ଏହି ବିଂଶତି ଅଳଙ୍କାର ବ୍ୟତୀତ ଆଉ ଦୁଇଟି ଅଳଙ୍କାର ମଧ୍ୟ ରହିଛି । ତାହା ହେଉଛି ମୌଗ୍ଧ୍ୟ ଓ ଚକିତ । ବର୍ତ୍ତମାନ ସାତ୍ତ୍ୱିକ ଅନୁଭାବ ବିଷୟରେ ଆଲୋଚନା କରାଯାଉ ।

## ସାତ୍ତ୍ୱିକ ଅନୁଭାବ ବା ବିଂଶତି ଅଳଙ୍କାର :

୧ । **ଭାବ**—ବ୍ରଜାଙ୍ଗନାମାନଙ୍କଠାରେ କୃଷ୍ଣରତିର ପ୍ରାଦୁର୍ଭାବ ହେଲେ, ସେମାନଙ୍କର ବିକାରହୀନ ଚିତ୍ତରେ ପ୍ରଥମେ ଯେଉଁ ବିକାର ଜନ୍ମେ, ତାହାହିଁ ଭାବ । ବିଶେଷତଃ ଶ୍ରୀକୃଷ୍ଣଙ୍କ ରୂପ ଦର୍ଶନରେ ବ୍ରଜାଙ୍ଗନାମାନଙ୍କଠାରେ ଭାବର ସଞ୍ଚାର ଘଟିଥାଏ ।

୨ । **ହାବ**—ଗ୍ରୀବାର ବକ୍ରତା ଓ ନେତ୍ରାଦିର ବିକାଶ ସହିତ ଭାବ ଅଧିକ ପ୍ରକାଶିତ ହେଲେ, ତାହା ହାବରେ ପରିଣତ ହୋଇଥାଏ । ଏଗୁଡ଼ିକ ବାହ୍ୟ ବିକାର ରୂପେ ଅଙ୍ଗାଦିରେ ପ୍ରକାଶିତ ହୋଇଥାନ୍ତି ।

୩ । **ହେଳା**—ହାବ ଯେତେବେଳେ ସ୍ପଷ୍ଟ ଭାବେ ଶୃଙ୍ଗାର ସୂଚନା କରେ, ସେତେବେଳେ ତାହାକୁ ହେଳା କୁହାଯାଏ । ଉଦାହରଣ ସ୍ୱରୂପ ଶ୍ରୀକୃଷ୍ଣଙ୍କ ବଂଶୀଧ୍ୱନି ଶ୍ରବଣରେ ଶ୍ରୀରାଧାଙ୍କ ହୃଦୟରେ କାମ ଭାବ ଜାତ

ହୋଇ ଧୈର୍ଯ୍ୟ ତ୍ୟାଗ କରିବା ଏବଂ ସ୍ୱତଃ ମାଦକତାର ଖୋଳିବା ଦ୍ୱାରା ତାଂକର ସ୍ତ୍ରୀ ଶୃଙ୍ଗାର ଭାବ ସ୍ପଷ୍ଟ ହୋଇଉଠିଥାଏ ।

୪ । **ଶୋଭା**–ରୂପ, ଉପଭୋଗ ଓ ଲାବଣ୍ୟାଦି ଦ୍ୱାରା ଅଙ୍ଗ ବିଭୂଷିତ ହେଲେ ତାହାକୁ ଅଙ୍ଗର ଶୋଭା କୁହାଯାଇଥାଏ । ଏହା ହେଉଛି ଅଯତ୍ନଜ ଶୋଭା ।

୫ । **କାନ୍ତି**–କାମତୃପ୍ତି ବିଧାନ ନିମିତ୍ତ ଉଦ୍ଦିଷ୍ଟ ଶୋଭା ବିଶେଷକୁ କାନ୍ତି କୁହାଯାଇଥାଏ । ଶ୍ରୀରାଧାଂକର ସ୍ୱାଭାବିକ ରୂପମାଧୁର୍ଯ୍ୟ ବୟସ ଯୋଗ୍ୟ, ଲୀଳା କୌଶଳ ଆଦିକୁ କାନ୍ତି ଭାବରେ ଗ୍ରହଣ କରାଯାଇଥାଏ ।

୬ । **ଦୀପ୍ତି**–ବୟସ, ଉପଭୋଗ, ଦେଶ, କାଳ ଓ ଗୁଣାଦି ଦ୍ୱାରା କାନ୍ତି ଯେତେବେଳେ ଉଦ୍ଦୀପିତା ହୁଏ ଅର୍ଥାତ୍ ବିସ୍ତାରିତ ହୁଏ, ସେତେବେଳେ ତାହା ଦୀପ୍ତିରେ ପରିଣତ ହୁଏ । ଶ୍ରୀକୃଷ୍ଣଂକ ସହିତ ବିଳାସର ଆତିଶଯ୍ୟ ହେତୁ କ୍ଳାନ୍ତିରେ ଆଳସ୍ୟଯୁକ୍ତା ହୋଇଥିବା ଶ୍ରୀରାଧାଂକର ତଦାନୀନ୍ତନ ଶୋଭାକୁ ଦୀପ୍ତି କୁହାଯାଇଥାଏ ।

୭ । **ମାଧୁର୍ଯ୍ୟ**–ସମସ୍ତ ଅବସ୍ଥାରେ ଯେଉଁସବୁ ଚେଷ୍ଟାଦ୍ୱାରା ମନୋହାରିତ୍ୱ ପ୍ରକାଶିତ ହୁଏ, ତାହାକୁ ମାଧୁର୍ଯ୍ୟ କୁହାଯାଏ । ରତିଶ୍ରାନ୍ତା ଶ୍ରୀରାଧାଙ୍କର ଅଯତ୍ନ ବିନ୍ୟସ୍ତ ବେଶଭୂଷଣ ଶୋଭା ମନୋହାରିତ୍ୱକୁ ଏ ପର୍ଯ୍ୟାୟରେ ଗ୍ରହଣ କରାଯାଇଥାଏ ।

୮ । **ପ୍ରଗଲ୍‌ଭତା**–ସମ୍ଭୋଗ ବିଷୟରେ ନିଃଶଙ୍କତ୍ୱ ଭାବ ହିଁ ପ୍ରଗଲ୍‌ଭତା ଗୀତଗୋବିନ୍ଦ ବୈଷ୍ଣବ କବିମାନେ ରାଧାକୃଷ୍ଣଙ୍କର ରତିକ୍ରୀଡ଼ା ବର୍ଣ୍ଣନାରେ ଉଭୟଙ୍କର ନିଃଶଙ୍କତ୍ୱ ସମ୍ଭୋଗରେ ଉପସ୍ଥାପନ କରି ପ୍ରଗଲ୍‌ଭତାର ସୂଚନା ଦେଇଛନ୍ତି ।

୯ । **ଔଦାର୍ଯ୍ୟ**–ବିନୟ ଭାବର ପ୍ରଦର୍ଶନକୁ ଔଦାର୍ଯ୍ୟ କୁହାଯାଇଥାଏ । ଶ୍ରୀକୃଷ୍ଣଙ୍କଦ୍ୱାରା ଅବହେଳିତ ଶ୍ରୀରାଧା ବିରହ ବେଦନାରେ ଜର୍ଜରିତ ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରତି ସମସ୍ତ ଅବସ୍ଥାରେ ବିନୟଭାବ ପ୍ରଦର୍ଶନ କରିଥାନ୍ତି । ଏହାହିଁ ଶ୍ରୀରାଧାଂକର ଔଦାର୍ଯ୍ୟ ଗୁଣ ।

୧୦ । **ଧୈର୍ଯ୍ୟ**—ଚିତ୍ତବୃତ୍ତି ସମୂହର ବୃଦ୍ଧି ଘଟି ପରିଣତ ଅବସ୍ଥାରେ ତାହାର ସ୍ଥିରତା ପ୍ରକାଶିତ ହେଲେ ତାହାକୁ ଧୈର୍ଯ୍ୟ କୁହାଯାଇଥାଏ । ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତିରେ କାତର ଶ୍ରୀରାଧାଙ୍କୁ ସଖୀମାନେ କୃଷ୍ଣପ୍ରୀତିକୁ କଳଙ୍କ ବର୍ଦ୍ଧକ ଓ ଦୁଃଖଦାୟକ କହି ତାହାକୁ ବର୍ଜନ କରିବାପାଇଁ ଶ୍ରୀରାଧାଙ୍କୁ କହିଲେ ମଧ୍ୟ ଏ କ୍ଷେତ୍ରରେ ଶ୍ରୀରାଧାଙ୍କର କୃଷ୍ଣ ପ୍ରୀତିର ଏକାଗ୍ରତା ହିଁ ତାଙ୍କର ଧୈର୍ଯ୍ୟର ସୂଚନା ଦେଇଥାଏ ।

୧୧ । **ଲୀଳା**—ରମଣୀୟ ବେଶ ଓ ବିଭିନ୍ନ ଅଙ୍ଗଭଙ୍ଗୀ ଦ୍ୱାରା ପ୍ରିୟବ୍ୟକ୍ତିର ଅନୁକରଣକୁ ଲୀଳା କୁହାଯାଏ । ଅର୍ଥାତ୍ ଗୋପାଙ୍ଗନା-ମାନଙ୍କର କୃଷ୍ଣକାର୍ଯ୍ୟର ଅନୁକରଣରେ ବିଭିନ୍ନ ହାସ ପରିହାସର ପରିବେଶ ଲୀଳା ପଦବାଚ୍ୟ ।

୧୨ । **ବିଳାସ**—ପ୍ରିୟସଙ୍ଗ ହେତୁ ଗତି, ସ୍ଥାନ ଓ ଆସବାବର ଏବଂ ମୁଖ ଓ ନେତ୍ରାଦି କ୍ରିୟାରେ ଯେଉଁ ତାତ୍କାଳିକ ବୈଶିଷ୍ଟ୍ୟ ପ୍ରକାଶିତ ହୁଏ, ତାହାର ନାମ ବିଳାସ । କୁଞ୍ଜଦ୍ୱାରରେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ଦର୍ଶନ କରନ୍ତେ ତାଙ୍କଠାରେ ଯେଉଁ ଭାବ ଜାତ ହୁଏ ତାହା ବିଳାସାଳଙ୍କାର ।

୧୩ । **ବିଚ୍ଛିତ୍ତି** - ଯେଉଁ ବେଶ ରଚନା ଅଳ୍ପ ହେଲେ ମଧ୍ୟ ଦେହର କାନ୍ତିକୁ ବିକଶିତ କରିବାରେ ସାହାଯ୍ୟ କରେ, ତାହା ବିଚ୍ଛିତ୍ତି । ଭୋଜନ କାଳରେ ଶ୍ରୀକୃଷ୍ଣଙ୍କର କେବଳ ମାତ୍ର କସ୍ତୁରୀ, ତିଳକ ଓ ଗୋରଚନା ଧାରଣ ଶୋଭା ମଧ୍ୟ ଶ୍ରୀରାଧାଙ୍କର ଦୃଷ୍ଟି ଆକର୍ଷଣ କରିଥାଏ ।

୧୪ । **ବିଭ୍ରମ**—ପ୍ରିୟ ସହିତ ମିଳିତ ହେବାର ଆବେଗରେ ମଦନାବେଶ ହେତୁ ହାର ମାଲ୍ୟାଦିର ଧାରଣରେ ବିଭ୍ରମତା ଅର୍ଥାତ୍ ଅଳତାକୁ ସିନ୍ଦୁର ରୂପେ ବ୍ୟବହାର କରିବା, କଜ୍ଜଳକୁ କସ୍ତୁରୀ ରୂପେ ବ୍ୟବହାର କରିବା, ପଦ ଅଳଙ୍କାରକୁ କଣ୍ଠରେ ଧାରଣ କରିବା ଇତ୍ୟାଦି ।

୧୫ । **କିଲକିଞ୍ଚିତ** - ହର୍ଷ ହେତୁ ଏକାବେଳକେ ଗର୍ବ, ଅଭିଳାଷ, ରୋଦନ, ହାସ୍ୟ, ଅସୂୟା, ଭୟ ଓ କ୍ରୋଧ ପ୍ରକାଶିତ ହେଲେ ତାହା କିଲକିଞ୍ଚିତ ଅଳଙ୍କାର ହୁଏ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଲୀଳା ବିଳାସର

ବର୍ଣ୍ଣିତ ମତରେ କବିମାନେ ଏ ପ୍ରକାର ଅନୁଭବର ବର୍ଣ୍ଣନାକୁ ଗ୍ରହଣକରି ରାଧା ଓ କୃଷ୍ଣଙ୍କ ପ୍ରେମର ଗାଢତା ପ୍ରତିପାଦନ କରିଅଛନ୍ତି ।

୧୬ । **ମୋଟ୍ଟାୟିତ** — କାନ୍ତର ସ୍ମରଣରେ ଓ ତାଙ୍କର ବାର୍ତ୍ତା ଶ୍ରବଣରେ କାନ୍ତ ବିଷୟକ ଭାବନା ହେତୁରେ ଯେଉଁ ଅଭିଳାଷ ଜାତ ହୁଏ, ତାହାକୁ ମୋଟ୍ଟାୟିତ କୁହାଯାଏ । ଅର୍ଥାତ୍ କୃଷ୍ଣଦର୍ଶନ ଓ କୃଷ୍ଣ ବିଷୟ ଶ୍ରବଣମାନେ ଶ୍ରୀରାଧାଙ୍କ ମନରେ କାମଭାବ ଜାତ ହେବାରୁ ତାଙ୍କଠାରେ ଯେଉଁ ବ୍ୟାକୁଳତା ଦେଖାଦିଏ ତାହା ତାଙ୍କର ବିଭିନ୍ନ କର୍ମମାନରେ ପ୍ରକାଶିତ ହୋଇଥାଏ । ଏହାକୁ ମୋଟ୍ଟାୟିତ କୁହାଯାଏ ।

୧୭ । **କୁଟ୍ଟମିତ** ନାୟକ ନାୟିକାର କୁଚଧାରଣ କରି ଚୁମ୍ବନଦେବା କାଳରେ ନାୟିକା ହୃଦୟରେ ହର୍ଷଭାବ ଜାତ ହେଲେ ହେଁ ସମ୍ଭ୍ରମ ବଶତଃ ନାୟିକା ଯେଉଁ ବ୍ୟଥିତା ଓ କ୍ରୁଦ୍ଧତାର ଛଳ ପ୍ରକାଶ କରିଥାଏ, ତାହା ହିଁ କୁଟ୍ଟମିତ ଅଳଙ୍କାର । ଉଦାହରଣ ସ୍ୱରୂପ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ନୀବି ବନ୍ଧନ ଉନ୍ମୋଚନ ଓ କୁଚମର୍ଦ୍ଦନ ଶ୍ରୀରାଧାଙ୍କର ହର୍ଷ-ଦାୟକ ହେଲେ ହେଁ ସଖୀମାନଙ୍କର ଉପସ୍ଥିତି ହେତୁ ଲଜ୍ଜାବଶତଃ ଶ୍ରୀକୃଷ୍ଣଙ୍କୁ ଭର୍ତ୍ସନା କରିବା କାର୍ଯ୍ୟକୁ ଗ୍ରହଣ କରାଯାଇପାରେ ।

୧୮ । **ବିବ୍ବୋକ** — ଗର୍ବ ଓ ମାନ ବଶତଃ ଅଭୀଷ୍ଟ ବସ୍ତୁ ପ୍ରତି ଅନାଦର ଭାବ ପ୍ରକାଶ କରାଗଲେ ତାହାକୁ ବିବ୍ବୋକ କୁହାଯାଇଥାଏ । ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ଅଭୀଷ୍ଟ ବସ୍ତୁ ହେଲେ ହେଁ ଅନେକ ସମୟରେ ଗର୍ବ ଓ ଅଭିମାନ ବଶତଃ ସେ ଶ୍ରୀକୃଷ୍ଣଙ୍କଠାରୁ ଦୂରେଇବାର ଯେଉଁ ଭାବ ପ୍ରକାଶ କରିଥାନ୍ତି, ସେଥିରେ ଏହି ଅଳଙ୍କାରଟି ପ୍ରକାଶିତ ହୋଇଥାଏ ।

୧୯ । **ଲଳିତ** ଯେଉଁ ବିଶେଷ ଚେଷ୍ଟାଦ୍ୱାରା ଅଙ୍ଗସମୂହର ବିନ୍ୟାସ ଭଙ୍ଗୀ, ଭ୍ରୂବିଳାସର ମନୋହାରିତ୍ୱ ଓ ସୌକୁମାର୍ଯ୍ୟ ପ୍ରକାଶିତ ହୁଏ, ତାହାହିଁ ଲଳିତ ଅଳଙ୍କାର । ରାଧା କୃଷ୍ଣଙ୍କ, ନିକଟବର୍ତ୍ତୀ ହେବା ସମୟରେ ତାଙ୍କର ଚଞ୍ଚଳ କଟାକ୍ଷପାତ ଦୀର୍ଘଶ୍ୱାସ, ଓ ସ୍ମିତହାସ୍ୟ ମଧ୍ୟରେ ଏହି ଏହି ଅଳଙ୍କାରଟି ପ୍ରକାଶିତ ହୋଇଥାଏ ।

୨୦ । ବିକୃତ-ଯେଉଁ ସ୍ଥଳରେ ଲଜ୍ଜା, ମାନ ଓ ଈର୍ଷା ଆଦି ଯୋଗୁଁ ସ୍ୱବିବକ୍ଷିତ ବସ୍ତୁକୁ ପ୍ରକାଶିତ ନ କରାଇ, ବାହ୍ୟ ଚେଷ୍ଟା ମାଧ୍ୟମରେ ବ୍ୟକ୍ତ କରାଯାଏ, ତାହାକୁ ବିକୃତ ଅଳଙ୍କାର କୁହାଯାଏ । ଏହା ଲଜ୍ଜା, ମାନ, ଈର୍ଷା ଭେଦରେ ତିନିପ୍ରକାର । ବିରହ ଅବସ୍ଥାରେ ଶ୍ରୀରାଧାଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହେଲେ ମଧ୍ୟ ଲଜ୍ଜାବଶତଃ ସ୍ୱଭାବକୁ ପ୍ରତ୍ୟକ୍ଷ ଭାବେ ପ୍ରକାଶ ନକରି ବାହ୍ୟ ଚେଷ୍ଟା ମଧ୍ୟରେ ବ୍ୟକ୍ତ କରିଥାନ୍ତି । ଏଠାରେ ଲଜ୍ଜା ହେତୁକ ବିକୃତ ଅଳଙ୍କାର ପ୍ରକାଶିତ ହୋଇଥାଏ । ଯେତେବେଳେ ଶ୍ରୀରାଧାଙ୍କଠାରେ କୃଷ୍ଣପ୍ରୀତିର ଉଦ୍ରେକ ଘଟେ, ସେତେବେଳେ ସେ କୃଷ୍ଣଙ୍କ ଅନୁପସ୍ଥିତିରେ ଅତ୍ୟନ୍ତ ମାନିନୀ ହୋଇପଡ଼ିବାରୁ ସେ ତାଙ୍କର ମାନକୁ ବାହ୍ୟ ଚେଷ୍ଟା ମାଧ୍ୟମରେ ପ୍ରକାଶ କରିଥାନ୍ତି । ଅର୍ଥାତ୍ ଭୂମି ଉପରେ ଶୟନ କରିବା, କୃଷ୍ଣଙ୍କର ଅଳଙ୍କାର ଓ ଭୂଷଣଗୁଡିକୁ ଖଣ୍ଡବୋଳି ଟାଣା କରିବା ମଧ୍ୟରେ ତାଙ୍କର ମାନହେତୁକ ବିକୃତ ଅଳଙ୍କାର ପ୍ରକାଶ ଲାଭ କରେ । ସେହିପରି କୌଣସି କୌଣସି ସମୟରେ ଭ୍ରମବଶତଃ ଶ୍ରୀରାଧା କୃଷ୍ଣଙ୍କର ଅନ୍ୟ ପ୍ରେୟସୀଙ୍କ ସହିତ ବିହାର କରୁଥିବାର ଅନୁମାନ କରି ଈର୍ଷ୍ୟାନ୍ୱିତ ହୋଇପଡ଼ିଥାନ୍ତି ।

ଫଳରେ ତାଙ୍କଠାରେ କଣ୍ଠରୁଦ୍ଧତା, ଊର୍ଦ୍ଧ୍ୱଶ୍ୱାସ ଓ ଗାତ୍ର କମ୍ପନ ପ୍ରଭୃତି ସାତ୍ତ୍ୱିକ ଲକ୍ଷଣଗୁଡିକ ପ୍ରକାଶ ପାଇ ଈର୍ଷ୍ୟାହେତୁକ ବିକୃତ ଅଳଙ୍କାରର ପରିପ୍ରକାଶ ଘଟିଥାଏ ।

ଉପର୍ଯ୍ୟୁକ୍ତ ବିଂଶତି ଅଳଙ୍କାର ବା ଅନୁଭାବ ସମୂହ ବ୍ୟତୀତ ଆଉ ଯେଉଁ ମୌଗ୍ଧ୍ୟ ଓ ଚକିତ ନାମକ ଦୁଇଟି ଅଳଙ୍କାର ରହିଛି, ତାହାର ସମ୍ୟକ ସୂଚନା ଏଠାରେ ପ୍ରଦାନ କରାଯାଇପାରେ ।

**ମୌଗ୍ଧ୍ୟ**–ପ୍ରିୟତମ ନିକଟରେ ଥିଲାବେଳେ ଜ୍ଞାତବସ୍ତୁ ସମ୍ବନ୍ଧରେ ଅଜ୍ଞାତବତ୍ ଜିଜ୍ଞାସା କରିବାକୁ ମୌଗ୍ଧ୍ୟ ଅଳଙ୍କାର କୁହାଯାଏ । ଉଦାହରଣ- କୃଷ୍ଣଙ୍କ ପାଇଁ ଶ୍ରୀରାଧା ପୁଷ୍ପଚୟନ କରୁଥିଲେ । ଜାଣି ମଧ୍ୟ କୃଷ୍ଣ ରାଧାଙ୍କୁ ଯେତେବେଳେ ପଚାରନ୍ତି ଯେ 'ଏହି ପୁଷ୍ପ କାହାକୁ ଭୋଗ୍ୟ ହେବ' ସେତେବେଳେ ମୌଗ୍ଧ୍ୟ ଅଳଙ୍କାର ପ୍ରକାଶିତ ହୋଇଥାଏ ।

**ଚକିତ**-ଭୟର କାରଣ ନଥିଲେ ମଧ୍ୟ ପ୍ରିୟ ସମ୍ମୁଖରେ ମହାଭୟ ପ୍ରକଟନକୁ ଚକିତ କୁହାଯାଏ । କୃଷ୍ଣଙ୍କ ନୀବିକେଳି ପ୍ରସଙ୍ଗରେ ରାଧାଙ୍କର ନୀବିବନ୍ଧନ ଉନ୍ମୋଚନ ନିମିତ୍ତ ଶ୍ରୀକୃଷ୍ଣ ମହୋଦୟ ପ୍ରଦର୍ଶନ କରି ତଳେ ପଡ଼ିଯିବା ଏହି ଅଳଙ୍କାରର ଏକ ଦୃଷ୍ଟାନ୍ତ ।

ଏପର୍ଯ୍ୟନ୍ତ ଆଲୋଚିତ ଅନୁଭାବର ସମସ୍ତ ଉପାଦାନଗୁଡ଼ିକ ସାତ୍ତ୍ୱିକ ଅନୁଭାବ ଅନ୍ତର୍ଭୁକ୍ତ । ବର୍ତ୍ତମାନ ଉଦ୍‌ଭାସ୍ୱର ଅନୁଭାବର ବର୍ଣ୍ଣନ କରାଯାଉଅଛି ।

**ଉଦ୍‌ଭାସ୍ୱର** .

ଭାବ ପୂର୍ଣ୍ଣ ବା ରତି ବିଶିଷ୍ଟ ବ୍ୟକ୍ତିଙ୍କର ଦେହରେ ଯାହା ବିଶେଷ ଭାବରେ ପ୍ରକାଶିତ ହୁଏ, ତାହାକୁ ପଣ୍ଡିତଗଣ ଉଦ୍‌ଭାସ୍ୱର ଅନୁଭାବ କହିଥାନ୍ତି । (ଉ.ନୀ. ଅନୁଭାବ ପ୍ରକରଣ ଶ୍ଲୋ ୬୯-୭୦) ନୀବି ସ୍ଖଳନ, ଧମ୍ମିଲ୍ଲ ସ୍ଖଳନ, ଗାତ୍ର ମୋଟନ, ଜୃମ୍ଭା, ନାସିକାର ପ୍ରଫୁଲ୍ଲତା, ନିଃଶ୍ୱାସ ତ୍ୟାଗ ଆଦି ଏହି ଅନୁଭାବର ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ଏହାର ଦ୍ୱାଦଶ ଗୋଟି ବାଚିକ ଅନୁଭାବଗୁଡ଼ିକ ହେଉଛି ଆଳାପ, ବିଳାପ, ସଂଳାପ, ପ୍ରଳାପ, ଅନୁଳାପ, ଅପଳାପ, ସନ୍ଦେଶ, ଅତିଦେଶ, ଅପଦେଶ, ଉପଦେଶ ନିର୍ଦ୍ଦେଶ ଓ ବ୍ୟପଦେଶ । ବର୍ତ୍ତମାନ ଉଦ୍‌ଭାସ୍ୱର ଅନୁଭାବଗୁଡ଼ିକର ସଂକ୍ଷିପ୍ତ ସୂଚନା ଦିଆଯାଉଛି ।

ବଂଶୀଧ୍ୱନିର ଶ୍ରବଣରେ ଶ୍ରୀରାଧାଙ୍କ ହୃଦୟରେ କାମ ଭାବର ପ୍ରାବଲ୍ୟ ଦେଖାଦେବାରୁ ତାଙ୍କର ନୀବି ସ୍ଖଳିତ ହୋଇଥାଏ । ସେହିପରି ରତିଶ୍ରାନ୍ତା ଶ୍ରୀରାଧାଙ୍କର ତନୁର ଆଳସ୍ୟ ଓ କେଶବାସର ଶିଥିଳତା ହେତୁ କୁଞ୍ଜରୁ ଗୃହକୁ ପ୍ରତ୍ୟାବର୍ତ୍ତନ କଲାବେଳେ ତାଙ୍କର ଗଭା ଓ ଉତ୍ତରୀୟ ଖସି ପଡ଼ିଥାଏ । ପରି ଧୀରର ଲୋଭାଚ୍ଛନ୍ନ ଯନ୍ତ୍ରଣା ଦାୟକ ଅବସ୍ଥାର ଚିନ୍ତାରେ ଶ୍ରୀରାଧାଙ୍କର ଯେଉଁ ଭୂମିପତନ ଘଟେ ତାହାକୁ ଗାତ୍ରମୋଟନ କୁହାଯାଇଥାଏ । ରତିଶ୍ରାନ୍ତା ଶ୍ରୀରାଧାଙ୍କର ନିଦ୍ରା ଭଙ୍ଗକାଳରେ ଜୃମ୍ଭାର ବର୍ଣ୍ଣନା କରି କବିମାନେ ରାଧାଙ୍କର ମୁଖମଣ୍ଡଳର ଅପୂର୍ବ ଶୋଭା ପରିକଳ୍ପନା କରିଛନ୍ତି । କୃଷ୍ଣ ବସନ ଧରିବାରୁ ଶ୍ରୀରାଧା ତାହାକୁ ବାରଣ ପୂର୍ବକ ଯେଉଁ ଛଳପୂର୍ଣ୍ଣ

ବାଣୀ ପ୍ରକାଶ କରିଥାନ୍ତି ସେଥିରେ ତାଙ୍କ ନାସାରେ ପ୍ରଫୁଲ୍ଲତା ସୃଷ୍ଟି ହୋଇଥାଏ । କୃଷ୍ଣ ନାମ ଶ୍ରବଣରେ ଶ୍ରୀରାଧାଙ୍କର ବିବଶ ଅବସ୍ଥା ଓ ଉଚ୍ଛ୍ୱାସ ବର୍ଣ୍ଣନା ମଧ୍ୟରେ ନିଃଶ୍ୱାସତ୍ୟାଗ ଉଦ୍‌ଭାସ୍ୱରର ଉପସ୍ଥାପନା ହୋଇଥାଏ । ଚୈତନ୍ୟ ସମ୍ପ୍ରଦାୟର କବିମାନେ ଏହିସବୁ ବର୍ଣ୍ଣନାରେ ଉଦ୍‌ଭାସ୍ୱରର ଅନୁଭାବଗୁଡିକୁ ପ୍ରକାଶିତ କରିଅଛନ୍ତି ।

**ବାଚକ ଉଦ୍‌ଭାସ୍ୱର :**

**୧ । ଆଳାପ**–ଶୃଙ୍ଗାରସୂଚକ ପ୍ରିୟୋକ୍ତିର ନାମ ଆଳାପ, ଅର୍ଥାତ୍ ମାନଭଞ୍ଜନ ନିମିତ୍ତ ପ୍ରୟୋଗ ଶୃଙ୍ଗୋକ୍ତିକୁ ଆଳାପ କୁହାଯାଇଥାଏ ।

**୨ । ବିଳାପ**–ଦୁଃଖପୂର୍ଣ୍ଣ ଉକ୍ତି ହିଁ ବିଳାପ । ରାଧା ଓ କୃଷ୍ଣଙ୍କର ବିଚ୍ଛେଦ ଜନିତ ଦୁଃଖୋକ୍ତିକୁ ଏହି ପର୍ଯ୍ୟାୟରେ ଗ୍ରହଣ କରାଯାଇଥାଏ ।

**୩ । ସଂଳାପ**–ଉକ୍ତି-ପ୍ରତ୍ୟୁକ୍ତିମୟ ବାକ୍ୟକୁ ସଂଳାପ କୁହାଯାଇ-ଥାଏ । ରାଧା, କୃଷ୍ଣ, ତଥା ସଖୀମାନଙ୍କର ଗୁରୁତ୍ୱପୂର୍ଣ୍ଣ କଥୋପକଥନ ଏହି ପର୍ଯ୍ୟାୟର ।

**୪ । ପ୍ରଳାପ**–ବ୍ୟର୍ଥ ଆଳାପକୁ ପ୍ରଳାପ ବୋଲାଯାଇଥାଏ । ବିରହ ବିଦଗ୍‌ଧା ଶ୍ରୀରାଧାଙ୍କର ମୁଖରେ ଅନେକ ଅନାବଶ୍ୟକ ଉକ୍ତିର ଅବତାରଣା କରାଯାଇ ତାଙ୍କର ବିରହ ଦୁଃଖର ଗଭୀରତା ଦେଖାଇ ଦିଆଯାଇଥାଏ । ଏହି ଅନାବଶ୍ୟକ ଉକ୍ତି-ଉଚ୍ଚାରଣ ହିଁ ପ୍ରଳାପ ପଦବାଚ୍ୟ ।

**୫ । ଅନୁଳାପ**–ଗୋଟିଏ ଶବ୍ଦ ବାରମ୍ବାର ଉଚ୍ଚାରିତ ହୋଇ ଶବ୍ଦର ଗୁରୁତ୍ୱ ପ୍ରକାଶ କଲେ ତାହା ଅନୁଳାପ ହୁଏ । ଶ୍ରୀରାଧାଙ୍କର ହୃଦୟରେ ପ୍ରେମ ପ୍ରବଳ ହୋଇଉଠିଲେ ଏହି ଅନୁଳାପ ପ୍ରକାଶ ପାଇଥାଏ ।

**୬ । ଅପଳାପ**–ନିଜଦ୍ୱାରା କଥିତ ପୂର୍ବବାକ୍ୟକୁ ଅନ୍ୟଥା ଯୋଜନା କରାଗଲେ, ଅର୍ଥାତ୍ ଅନ୍ୟପ୍ରକାରେ ଅର୍ଥ କରାଗଲେ ତାହାକୁ ଅପଳାପ କୁହାଯାଏ ।

**୭ । ସନ୍ଦେଶ**–ପ୍ରବାସସ୍ଥ ବା ଦୂରରେ ଅବସ୍ଥାନ କରିଥିବା ପ୍ରିୟ ବ୍ୟକ୍ତି ପାଖକୁ ବାର୍ତ୍ତା ପ୍ରେରଣକୁ ସନ୍ଦେଶ କୁହାଯାଏ । ରାଧା ଓ କୃଷ୍ଣଙ୍କ ମଧ୍ୟରେ ଦୂତୀଙ୍କ ଦ୍ୱାରା ପତ୍ର ପ୍ରେରଣ ବିଷୟ ଏହି ପର୍ଯ୍ୟାୟ ଅନ୍ତର୍ଭୁକ୍ତ ।

**୮ । ଅତିଦେଶ**–'ତାଙ୍କର ଉକ୍ତି ହିଁ ମୋର ଉକ୍ତି' ଏ ପ୍ରକାର ସୂଚିତ ହେଲେ ସେଠାରେ ଅତିଦେଶ ହୋଇଥାଏ ।

**୯ । ଅପଦେଶ**– ବକ୍ତବ୍ୟ ବିଷୟ ଅନ୍ୟ ପ୍ରକାରେ ଅର୍ଥ କରା-ଗଲେ ତାହାକୁ ଅପଦେଶ କୁହାଯାଏ । ରାଧାକୃଷ୍ଣଙ୍କ ଗୂଢ଼ାର୍ଥପୂର୍ଣ୍ଣ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ଅପଦେଶର ପରିପ୍ରକାଶ ଘଟିଥାଏ ।

**୧୦ । ଉପଦେଶ**–ଶିକ୍ଷା ନିମିତ୍ତ ଉଦ୍ଦିଷ୍ଟ ବାକ୍ୟକୁ ଉପଦେଶ କୁହାଯାଇଥାଏ । କୃଷ୍ଣଙ୍କ ସହିତ ମିଳିତ ହେବା ପାଇଁ ଶ୍ରୀରାଧାଙ୍କୁ ସଖୀ-ମାନଙ୍କର ଉକ୍ତି ହିଁ ଏହାର ଅନ୍ତର୍ଭୁକ୍ତ ।

**୧୧ । ନିର୍ଦ୍ଦେଶ**–କୌଣସି ବ୍ୟକ୍ତିର ପରିଚୟ ପ୍ରଦାନ ନିମିତ୍ତ 'ଇଏ' ଅମୁକ ଲଗାଇ କୁହାଯିବାକୁ ନିର୍ଦ୍ଦେଶ କୁହାଯାଏ ।

**୧୨ । ବ୍ୟପଦେଶ**–ଛଳଛଦ୍ମରେ ନିଜର ଅଭିଳାଷକୁ ପ୍ରକାଶ କରାଗଲେ ତାହାକୁ ବ୍ୟପଦେଶ କୁହାଯାଏ । ଶ୍ରୀରାଧା ଓ ସଖୀମାନଙ୍କର ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ଏହି ବାଚିକ ଉଦ୍‌ଭାସ୍ୱରଟିର ଉପସ୍ଥାପନା କରା-ଯାଇଥାଏ । ଚୈତନ୍ୟ ସମ୍ପ୍ରଦାୟର ସମସ୍ତ କବିମାନେ ରସର ପରିପୁଷ୍ଟି ନିମିତ୍ତ ଏହି ସମସ୍ତ ଅନୁଭାବ ଗୁଡିକର ଯଥାଯଥ ବର୍ଣ୍ଣନା କରିଥିବାର ଦେଖାଯାଏ ।

## ସଞ୍ଚାରୀଭାବ :

ସ୍ଥାୟୀଭାବରୂପକ ଅମୃତ ସମୁଦ୍ରରେ ସଞ୍ଚାରୀ ଭାବଗୁଡିକ ଉନ୍ମଜ୍ଜିତ ଓ ନିମଜ୍ଜିତ ହୋଇ ସ୍ଥାୟୀଭାବକୁ ବୃଦ୍ଧି କରେ । ଏହି ସଞ୍ଚାରୀଭାବକୁ ବୈଷ୍ଣବ ରସଶାସ୍ତ୍ରରେ ୩୩ ଭାଗରେ ବିଭକ୍ତ କରାଯାଇଛି । ନିମ୍ନରେ ସେଗୁଡ଼ିକ ସମ୍ପର୍କରେ ସୂଚନା ଦିଆଯାଉଛି ।

୧ । **ନିର୍ବେଦ** ବିରହରେ ଈର୍ଷ୍ୟା ଓ ସଦ୍‌ବିବେକାଦିଜନ୍ମ କଳ୍ପିତ ନିଜର ଅବମାନନାକୁ ନିର୍ବେଦ କୁହାଯାଇଥାଏ । କର୍ତ୍ତବ୍ୟର ଅକରଣ ଓ ଅକର୍ତ୍ତବ୍ୟର କରଣ ବଶତଃ ଶୋଚନା ହେତୁ ଚିନ୍ତା, ଅଶ୍ରୁ, ବୈବର୍ଣ୍ଣ୍ୟ, ଦୈନ୍ୟ ଏବଂ ଦୀର୍ଘଶ୍ୱାସ ମଧ୍ୟରେ ଏହା ପ୍ରକାଶିତ ହୋଇଥାଏ । କୃଷ୍ଣଙ୍କ ଅପେକ୍ଷାରେ ଥିବା ଶ୍ରୀରାଧା କୃଷ୍ଣଙ୍କ ଅନୁପସ୍ଥିତିରେ ଈର୍ଷ୍ୟାପରାୟଣା ହୋଇ ଉଠିଲେ ତାଙ୍କଠାରେ ନିର୍ବେଦଭାବ ଦେଖାଦେଇଥାଏ ।

୨ । **ବିଷାଦ**—ଇଷ୍ଟ ବସ୍ତୁର ଅପ୍ରାପ୍ତି, ପ୍ରାରମ୍ଭ କାର୍ଯ୍ୟର ଅସିଦ୍ଧି, ବିପତ୍ତି, ଅପରାଧଜନିତ ଅନୁତାପ ହେଉଛି ବିଷାଦ । ଏହି ଭାବର ପ୍ରକାଶରେ ଉପାୟ ଓ ସହାୟର ଅନୁସନ୍ଧାନ, ଚିନ୍ତା, ରୋଦନ, ବିଳାପ, ଶ୍ୱାସ ଓ ଦେହର ବୈବର୍ଣ୍ଣ ଆଦି ଦେଖାଦେଇଥାଏ । ରାସଲୀଳାରୁ ଅନ୍ତର୍ହିତ ଶ୍ରୀକୃଷ୍ଣଙ୍କୁ ଗୋପାଙ୍ଗନାମାନେ ନପାଇବାରୁ ସେମାନଙ୍କଠାରେ ଏହି ବିଷାଦଭାବ ଦେଖାଦେଇଥାଏ ।

୩ । **ଦୈନ୍ୟ** ଦୁଃଖ ତ୍ରାସ ଓ ଅପରାଧ ହେତୁ ନିଜକୁ ନିକୃଷ୍ଟ ମନେକରିବାର ଭାବ ହିଁ ଦୈନ୍ୟ । ଏହା ଧୃଷ୍ଟତ୍ୱ, ମାନ୍ଦ୍ୟ, ମାଳିନ୍ୟ, ଚିନ୍ତା ଏବଂ ଅଙ୍ଗଜଡିମାଦି ଦ୍ୱାରା ପ୍ରକାଶିତ ହୋଇଥାଏ । ଶ୍ରୀକୃଷ୍ଣ-ପ୍ରାପ୍ତି ଆଶାରେ ଅଭିମାନିନୀ ଶ୍ରୀରାଧାଙ୍କର ଦୂତୀ ନିକଟରେ ଦୈନ୍ୟଭାବ ପ୍ରକାଶ ଏହାର ଏକ ଉଦାହରଣ ।

୪ । **ଗ୍ଲାନି**—ଶ୍ରମ, ମନଃପୀଡ଼ା ଇତ୍ୟାଦିଦ୍ୱାରା ଓଜଃକ୍ଷୟ ଘଟିଲେ ଯେଉଁ ଦୁର୍ବଳତା ଜନ୍ମେ, ତାହାକୁ ଗ୍ଲାନି କୁହାଯାଇଥାଏ । ଏହାଦ୍ୱାରା ଶରୀରରେ କମ୍ପ, ଅଙ୍ଗରେ ଜଡ଼ତା, ବୈବର୍ଣ୍ଣ୍ୟ, କୃଶତା ଓ ନୟନରେ ଘୂର୍ଣ୍ଣନ ଆଦି ଦେଖାଦେଇଥାଏ । ରତିଶ୍ରାନ୍ତା ଶ୍ରୀରାଧାଙ୍କଠାରେ କବିମାନେ ଏହି ଭାବର ଆରୋପ କରିଛନ୍ତି ।

୫ । **ଶ୍ରମ**—ପଥ ଭ୍ରମଣ, ନୃତ୍ୟ, ରମଣାଦିଜନିତ ଖେଦକୁ ଶ୍ରମ କୁହାଯାଏ । ନିଦ୍ରା ଭ୍ରମ, ଜୃମ୍ଭା, ଦୀର୍ଘଶ୍ୱାସ ଏବଂ ଅଙ୍ଗ-ଆଳସ୍ୟାଦି ଏହାର ସୂଚକ । କବିମାନେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କଠାରେ ରମଣାଦି ଜନିତ ଶ୍ରମର ଆରୋପ କରିଛନ୍ତି ।

**୬ । ମଦ** — ଜ୍ଞାନ ନାଶକ ଆନନ୍ଦର ନାମ ମଦ । ଏହା ମଧୁପାନ ଜନିତ ଓ କନ୍ଦର୍ପ ବର୍ଦ୍ଧିଷ୍ଣୁ-ବିକାର ଜନିତ ଭେଦରେ ଦ୍ୱିବିଧ । ଗତି, ଅଙ୍ଗ ଓ ବାକ୍ୟର ସ୍ଖଳନ, ନେତ୍ର ଘୂର୍ଣ୍ଣନ ଓ ରକ୍ତିମା ଇତ୍ୟାଦି ଏହାର ସୂଚକ । କୃଷ୍ଣପ୍ରାପ୍ତି ର ଆଶା ଉତ୍କଟ ହୋଇ ଉଠିଲେ ଶ୍ରୀରାଧା ଆନନ୍ଦରେ ଅଧୀର ହୋଇପଡ଼ନ୍ତି । ଫଳରେ ତାଙ୍କଠାରେ ଏ ପ୍ରକାର ଭାବର ପ୍ରକାଶ ଘଟେ ।

**୭ । ଗର୍ବ** — ସୌଭାଗ୍ୟ, ରୂପ, ତାରୁଣ୍ୟ, ଗୁଣ, ସର୍ବୋତ୍ତମ ଆଶ୍ରୟ ଏବଂ ଇଷ୍ଟବସ୍ତୁ ପ୍ରାପ୍ତି ହେତୁ ଅନ୍ୟପ୍ରତି ଅବହେଳା ପ୍ରଦର୍ଶନକୁ ଗର୍ବ କୁହାଯାଇଥାଏ । ଗର୍ବଭାବ ପ୍ରକାଶ ଘଟିଲେ ଅତି ଉଲ୍ଲସିତ ବଦନ, ନିଜାଙ୍ଗ ଦର୍ଶନ ଓ ନିଜ ଅଭିପ୍ରାୟ ଗୋପନ ଆଦି ଦେଖାଦିଏ । ଅନେକ ସମୟରେ ଗୋପୀମାନେ ଯୌବନମଦରେ ଗର୍ବିତା ହୋଇ କୃଷ୍ଣଙ୍କପ୍ରତି ଯେଉଁ ମନ୍ଦ ବ୍ୟବହାର କରଥାନ୍ତି, ତାହାକୁ ଏହି ପର୍ଯ୍ୟାୟରେ ଗ୍ରହଣ କରାଯାଇପାରେ ।

**୮ । ଶଙ୍କା** — ଚୌର୍ଯ୍ୟାପବାଦ, ଅପରାଧ ଏବଂ କ୍ରୂରତା ହେତୁ ସ୍ୱ-ଅନିଷ୍ଟ ଆଶଙ୍କାକୁ ଶଙ୍କା କୁହାଯାଏ । ଏହି ଭାବ ଦେଖାଦେଲେ ମୁଖ-ଶୋଷ, ବୈବର୍ଣ୍ଣ୍ୟ, ଦିଗ୍ ନିରୀକ୍ଷଣ ଓ ଆତ୍ମଗୋପନ ଅବସ୍ଥା ଦେଖା-ଦେଇଥାଏ । ବଂଶୀଚୋରି ଲୀଳାରେ ଏହି ଭାବର ଉପସ୍ଥାପନା କରାଯାଇଛି ।

**୯ । ତ୍ରାସ** — ବିଦ୍ୟୁତ୍ ଭୟାନକ ପ୍ରାଣୀ ଓ ପ୍ରଖର ଶବ୍ଦ ଶ୍ରବଣ ହେତୁ ହୃଦୟରେ ଜାତ ଭୟକୁ ତ୍ରାସ କୁହାଯାଏ । ତ୍ରାସର ଉଦ୍ରେକ ଘଟିଲେ ପାର୍ଶ୍ୱସ୍ଥ ବସ୍ତୁର ଆଶ୍ରୟଗ୍ରହଣ, ଶରୀରରେ ରୋମାଞ୍ଚ, କମ୍ପ, ସ୍ତମ୍ଭ ଏବଂ ଭ୍ରମ ଆଦି ଲକ୍ଷଣ ଦେଖାଦେଇଥାଏ । କାନନରେ ସିଂହରଡ ଶୁଣି କୁଞ୍ଜରେ ଥିବା ଶ୍ରୀରାଧା ଭୟଭୀତ ହୋଇ କୃଷ୍ଣଙ୍କୁ ଜାବୁଡି ଧରିବା ଏହାର ଏକ ଦୃଷ୍ଟାନ୍ତ ।

**୧୦ । ଆବେଗ** — ଚିତ୍ତର ସମ୍ଭ୍ରମକୁ ଆବେଗ କୁହାଯାଇଥାଏ । ଏହା ପ୍ରିୟହେତୁକ, ଅପ୍ରିୟ ହେତୁକ, ଅଗ୍ନିହେତୁକ, ବାୟୁହେତୁକ, ବର୍ଷାହେତୁକ, ଉତ୍ପାତ ଜନିତ, ଗଜ ହେତୁକ ଓ ଶତ୍ରୁ ହେତୁକ ଭେଦରେ ଆଠ ପ୍ରକାର । ହେତୁର ପ୍ରାଧାନ୍ୟାନୁଯାୟୀ ଏହାର ନାମକରଣ କରାଯାଇଥାଏ ।

୧୧ । ଉନ୍ମାଦ – ଆପଦ ଏବଂ ବିରହଜନିତ ଚିତ୍ତ ଭ୍ରମକୁ ଉନ୍ମାଦ କୁହାଯାଏ । ଉନ୍ମାଦ ଦେଖାଦେଲେ ଅଟ୍ଟହାସ୍ୟ, ନର୍ତ୍ତନ, ଧାବନ, ଗୀତଗାନ, ବ୍ୟର୍ଥଚେଷ୍ଟା, ପ୍ରଳାପ, ଚିତ୍କାର ଓ ବିପରୀତ କ୍ରିୟାଦି ପ୍ରକାଶିତ ହୋଇଥାଏ । ଶ୍ରୀରାଧାଙ୍କଠାରେ ଜାତ ଉନ୍ମାଦକୁ ଦିବ୍ୟ ଉନ୍ମାଦ କୁହାଯାଏ ।

୧୨ । ଅପସ୍ମାର – ଦୁଃଖୋତ୍ପନ୍ନ, ଧାତୁ ବୈଷମ୍ୟଜନିତ ଚିତ୍ତର ବିକାରକୁ ଅପସ୍ମାର କୁହାଯାଏ । ଏହାଦ୍ୱାରା ହଠାତ୍ ଭୂପତନ, ଧାବନ, ଭୂମିରେ ହାତ ବାଡେଇବା, ଭ୍ରମ, କମ୍ପ, ମୁଖରୁ ଫେଣ ବାହାରିବା, ହାତ ଘୁଣ୍ଟିବା, ଚିତ୍କାର କରିବାଆଦି ଲକ୍ଷଣ ଦେଖାଦେଇଥାଏ । ବିରହିଣୀ ରାଧାଙ୍କଠାରେ କବିମାନେ ଏହି ଭାବର ସଂଯୋଜନା କରିଛନ୍ତି ।

୧୩ । ବ୍ୟାଧି–ଦୋଷର ଉଦ୍ରେକ ଓ ବିୟୋଗ ( ବିରହ )ରେ ଜ୍ୱାଳାଦି ହେତୁ ଯେଉଁ ସବୁ ଦଶା ଦେଖାଦିଏ, ତାହାର ନାମବ୍ୟାଧି । ସ୍ତମ୍ଭ, ଅଙ୍ଗର ଶିଥିଳତା, ଶ୍ୱାସ, ଉଚ୍ଛ୍ୱାସ, କ୍ଳାନ୍ତି ପ୍ରଭୃତି ମାଧ୍ୟମରେ ଏହା ପ୍ରକାଶ ଲାଭ କରେ । ଶ୍ରୀରାଧାଙ୍କଠାରେ ଦଶଦଶାର ବର୍ଣ୍ଣନା କରି କବିମାନେ ଏହି ଭାବର ପ୍ରକାଶ ଘଟାଇଛନ୍ତି ।

୧୪ । ମୋହ–ହର୍ଷ, ବିରହ, ବିରହଭୟ ଓ ବିଷାଦହେତୁ ଚିତ୍ତରେ ଯେଉଁ ମୂଢତା ଜାତହୁଏ, ତାହାକୁ ମୋହ କୁହାଯାଏ । ଏହି ଭାବର ଉଦ୍ରେକରେ ଭୂପତନ, ଦେହ ନଥିବାଭଳି ଅନୁଭବ, ଭ୍ରମଣ ଏବଂ ନିଃଚେଷ୍ଟତା ଆଦି ଲକ୍ଷଣ ଦେଖାଦେଇଥାଏ । ବିଶାଖାଙ୍କର ପ୍ରୀତିତତ୍ତ୍ୱ ଶ୍ରବଣକାଳରେ ଶ୍ରୀରାଧା ବିରହ ଭୟ ଓ ପ୍ରେମ ବାଧାର ଆଶଙ୍କା କରିବାରୁ ମୋହଗ୍ରସ୍ତ ହୋଇପଡିବା ଏହାର ଦୃଷ୍ଟାନ୍ତ ।

୧୫ ।ମୃତ–ବିଷାଦ, ବ୍ୟାଧି, ତ୍ରାସ, ପ୍ରହାର, ଗ୍ଲାନି ପ୍ରଭୃତିଦ୍ୱାରା ଅସ୍ପଷ୍ଟ ବାକ୍ୟ, ଦେହର ବୈବର୍ଣ୍ଣ୍ୟ, ମନ୍ଦଶ୍ୱାସ ଓ ହେକା ପ୍ରଭୃତି ମୃତ୍ୟୁ-ପୂର୍ବର ଲକ୍ଷଣମାନ ପ୍ରକାଶିତ ହେଲେ, ତାହାକୁ ମୃତ କୁହାଯାଏ । ବିରହିଣୀ ଶ୍ରୀରାଧାଙ୍କଠାରେ ମୋହ ପ୍ରକାଶିତ ଉତ୍ତାରେ ଏହି ଭାବ ଉଦ୍ରେକ

ହେବାରୁ ସଖୀମାନେ ମୃତ ନା ଜୀବିତ ଜାଣିବା ନିମନ୍ତେ ତାଙ୍କ ଶ୍ୱାସରେ ତୁଳାଦେଇ ପରୀକ୍ଷା କରିବାର ବର୍ଣ୍ଣନା କବିମାନେ ପ୍ରଦାନ କରିଅଛନ୍ତି ।

**୧୬ । ଆଳସ୍ୟ**–ତୃପ୍ତି ଓ ଶ୍ରମାଦି ବଶତଃ ସାମର୍ଥ୍ୟ ସତ୍ତ୍ୱେ କାର୍ଯ୍ୟପ୍ରତି ପ୍ରବୃତ୍ତିହୀନତା ହିଁ ଆଳସ୍ୟ । ରତିଶ୍ରାନ୍ତା ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ରତିତୃପ୍ତି ଜନିତ ଆଳସ୍ୟକୁ ଏହାର ଅନ୍ତର୍ଭୁକ୍ତ କରାଯାଇଥାଏ ।

**୧୭ । ଜାଡ଼୍ୟ**–ଇଷ୍ଟ ଓ ଅନିଷ୍ଟ ବସ୍ତୁ ସମ୍ବନ୍ଧୀୟ ଶ୍ରବଣ ବା ଦର୍ଶନ ଜନିତ ଓ ବିରହାଦି ଜନିତ ବିଚାରଶୂନ୍ୟ ଅବସ୍ଥାକୁ ଜାଡ୍ୟ କୁହାଯାଏ । ଏହାର ମୋହର ପୂର୍ବ ଓ ପରେ ଜାତ ହୋଇଥାଏ । ନୟନର ଅପଲକ ଭାବ, ବିସ୍ମରଣ ଭାବ ଓ ତୃଷ୍ଣୀଭାବ ଏହାର ଲକ୍ଷଣ । ଇଷ୍ଟବସ୍ତୁ ଶ୍ରୀକୃଷ୍ଣଙ୍କର ନାମ ଶ୍ରବଣରେ ଶ୍ରୀରାଧାଙ୍କଠାରେ ଜାତ ଭାବ ଏକ ଦୃଷ୍ଟାନ୍ତ ।

**୧୮ । ବ୍ରୀଡ଼ା**–ନବ ସଙ୍ଗମ, ଔଦାର୍ଯ୍ୟ, ଅବଜ୍ଞାଦିରେ ଯେଉଁ ଅଧୃଷ୍ଟତା ଜନ୍ମେ, ତା'ର ନାମ ବ୍ରୀଡ଼ା । ମୌନଭାବ, ମୁଖାଚ୍ଛାଦନ, ଚିନ୍ତା, ଭୂମି ଲିଖନ ଓ ଅଧୋମୁଖତା ଏହାର ଲକ୍ଷଣ । ରାଧା ଓ କୃଷ୍ଣଙ୍କ କୁଞ୍ଜରେ ମିଳନ କାଳର ଭାବ ବର୍ଣ୍ଣନାରେ ରାଧାଙ୍କଠାରେ ଏହି ଭାବର ଆରୋପ କରାଯାଇଛି ।

**୧୯ । ଅବହିତ୍ଥା**–କୌଣସି ଭାବର ଲକ୍ଷଣ ସମୂହକୁ ଗୋପନ କରିବାର ଇଚ୍ଛା ସମ୍ବନ୍ଧୀୟ ଭାବକୁ ଅବହିତ୍ଥା କୁହାଯାଏ । ଭାବପ୍ରକାଶକ ଅଙ୍ଗାଦିର ଗୋପନ, ଅନ୍ୟଦିଗରେ ଦୃଷ୍ଟିପାତ, ବୃଥାଚେଷ୍ଟା, ବାଗ୍‌ଭଙ୍ଗୀ-ଆଦି ଏହାର ଲକ୍ଷଣ । ନବସଙ୍ଗମ କାଳରେ କୃଷ୍ଣଙ୍କ ସୁରତ ଶ୍ରୀରାଧାଙ୍କୁ କଷ୍ଟପ୍ରଦ ହେଲେ ହେଁ ସେ ତାହାକୁ ଗୋପନ ରଖିବାକୁ ଚେଷ୍ଟା କରିଥାନ୍ତି ।

**୨୦ । ସ୍ମୃତି**–ସଦୃଶ ବସ୍ତୁର ଦର୍ଶନେ ଅଥବା ଦୃଢ ଅଭ୍ୟାସ ବଶତଃ ପୂର୍ବାନୁଭୂତ ଅର୍ଥର ଯେ ପ୍ରତୀତି ବା ଜ୍ଞାନ ତାହାର ନାମ ସ୍ମୃତି । ଏଥିରେ ଶିରକମ୍ପ, ଭ୍ରୂବିକ୍ଷେପ ପ୍ରଭୃତି ଲକ୍ଷଣ ପ୍ରକାଶ ପାଇଥାଏ । କୃଷ୍ଣଙ୍କର ବେଶ ଓ ବର୍ଣ୍ଣର ସାମ୍ୟଥିବା ବସ୍ତୁର ଦର୍ଶନରେ ଶ୍ରୀରାଧାଙ୍କଠାରେ କୃଷ୍ଣପ୍ରତୀତି ଜାତ ହେବାର ଭାବ ହିଁ ଏହାର ଅନ୍ତର୍ଭୁକ୍ତ ।

୨୧ । ବିତର୍କ— ବିମର୍ଷ ଏବଂ ସଂଶୟ ହେତୁ ବସ୍ତୁର ତତ୍ତ୍ୱ ନିର୍ଣ୍ଣୟ ପାଇଁ ଯେଉଁ ବିଚାର କରାଯାଏ, ତାହାର ନାମ ବିତର୍କ । ଭ୍ରୂକ୍ଷେପ, ମସ୍ତକ ଓ ଅଙ୍ଗୁଳିର ସଞ୍ଚାଳନ ଏହାର ଲକ୍ଷଣ ।

୨୨ । ଚିନ୍ତା—ଅଭିଳଷିତ ବସ୍ତୁର ଅପ୍ରାପ୍ତି ଓ ଅନଭିଳଷିତ ବସ୍ତୁର ପ୍ରାପ୍ତିରୁ ଯେଉଁ ଧ୍ୟାନ ଜନ୍ମେ, ତାହାକୁ ଚିନ୍ତା କୁହାଯାଏ । ରାଧା ଓ କୃଷ୍ଣଙ୍କ ଲୀଳା ବିଳାସ ମଧ୍ୟରେ ଏ ପ୍ରକାର ଚିନ୍ତାର ବର୍ଣ୍ଣନା ଅନେକତ୍ର ଦୃଷ୍ଟି-ଗୋଚର ହୋଇଥାଏ ।

୨୩ । ମତି—ଶାସ୍ତ୍ରାଦିର ବିଚାର ହେତୁ ଉତ୍ପନ୍ନ ଅର୍ଥ ନିର୍ଦ୍ଧାରଣକୁ ମତି କୁହାଯାଏ । ସଂଶୟ, ଭ୍ରମେମେୟ, ଛେଦନ ହେତୁ କର୍ତ୍ତବ୍ୟକରଣ, ଶିଷ୍ୟଗଣ ପ୍ରତି ଉପଦେଶ ଏହାର ଲକ୍ଷଣ । ପ୍ରୀତିତତ୍ତ୍ୱ ବର୍ଣ୍ଣନା କାଳରେ ଶ୍ରୀରାଧାଙ୍କଠାରେ ଏପ୍ରକାର ଭାବର ଆରୋପ କରାଯାଇଥିବା ଦେଖା-ଯାଇଥାଏ ।

୨୪ । ଧୃତି—ଜ୍ଞାନ, ଦୁଃଖର ଅଭାବ, ଉତ୍ତମ ବସ୍ତୁର ପ୍ରାପ୍ତି ଅର୍ଥାତ୍ ଭଗବତ୍ ସମ୍ବନ୍ଧିତ ପ୍ରେମ ପ୍ରାପ୍ତି ହେଲେ ମନରେ ଯେଉଁ ପରିପୂର୍ଣ୍ଣ ଭାବ ପ୍ରକାଶ ପାଏ, ତାହାକୁ ଧୃତି କୁହାଯାଏ । ରାସସ୍ଥଳରୁ ଅନ୍ତର୍ହିତ ଶ୍ରୀକୃଷ୍ଣଙ୍କର ହଠାତ ଆବିର୍ଭାବରେ ନିରାଶ ଗୋପୀଙ୍କ ହୃଦୟ ସରସ ହୋଇଯିବାରୁ ତାଙ୍କଠାରେ ଏହି ଭାବ ପ୍ରକାଶ ପାଇଥିଲା ।

୨୫ । ହର୍ଷ—ଅଭୀଷ୍ଟ ଲାଭହେତୁକ ପ୍ରସନ୍ନତାହିଁ ହର୍ଷ । ରୋମାଞ୍ଚ, ସ୍ୱେଦ, ଅଶ୍ରୁ, ମୁଖ ପ୍ରସନ୍ନତା, ଆବେଗ, ଉନ୍ମାଦ, ଜଡତା ଓ ମୋହ ଏହାର ଲକ୍ଷଣ । ଶ୍ରୀକୃଷ୍ଣଙ୍କୁ ଲାଭ କରିବା ବେଳେ ଶ୍ରୀରାଧାଙ୍କଠାରେ ଏହି ଭାବର ଉଦ୍ରେକ ଘଟିଥାଏ ।

୨୬ । ଔତ୍ସୁକ୍ୟ—ଅଭୀଷ୍ଟ ବସ୍ତୁର ଦର୍ଶନ ସ୍ପୃହା ପାଇଁ ବ୍ୟଗ୍ରତା ହେତୁ କାଳବିଳମ୍ବ ଅତ୍ୟନ୍ତ ଅସହ୍ୟ ହେଲେ ତାହାକୁ ଔତ୍ସୁକ୍ୟ କୁହାଯାଏ । ମୁଖଶୋଷ, ଚିନ୍ତା, ଦୀର୍ଘଶ୍ୱାସ ଏବଂ ସ୍ଥିରତା ଏହାର ପ୍ରକାଶକ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ପ୍ରତୀକ୍ଷା କାଳରେ ଉଭୟଙ୍କର କାଳବିଳମ୍ବ ପ୍ରତ୍ୟେକଙ୍କ

ପ୍ରତି ଅସହ୍ୟ ହୋଇଉଠିଥିବାର ବର୍ଣ୍ଣନା ଚୈତନ୍ୟ ପନ୍ଥୀ କବିମାନେ ଦର୍ଶାଇ ଅଛନ୍ତି ।

୨୭ । **ଔଗ୍ର**–ଅପରାଧ ଏବଂ ଦୁରୁକ୍ତି ପ୍ରଭୃତି ହେତୁ ଜାତ କ୍ରୋଧକୁ ଔଗ୍ର୍ୟ କୁହାଯାଏ । ବଧ କରିବା, ବାନ୍ଧି ପକାଇବା, ଶିର କମ୍ପହେବା, ଭର୍ତ୍ସନା ଓ ତାଡ଼ନାଦି ଏହାର ପ୍ରକାଶକ । ଶ୍ରୀକୃଷ୍ଣଙ୍କର ଇଙ୍ଗିତପୂର୍ଣ୍ଣ ଭାଷା ପ୍ରତି ଗୋପୀମାନଙ୍କର ପ୍ରତିକ୍ରିୟା ଏହାର ଉଦାହରଣ ।

୨୮ । **ଅମର୍ଷ**–ଅତ୍ୟଧିକ ଅପମାନ ହେତୁ ଜାତ ଅସହିଷ୍ଣୁତାର ନାମ ଅମର୍ଷ । ଏହି ଭାବର ଉଦ୍ରେକ ଘଟିଲେ ଶିରକମ୍ପ, ବିବର୍ଣ୍ଣତା, ନିନ୍ଦା, ଉପାୟ ଅନ୍ୱେଷଣ, ଆକ୍ରୋଶ, ବିମୁଖତା ଓ ତାଡ଼ନା ପ୍ରଭୃତି ଲକ୍ଷଣମାନ ପ୍ରକାଶିତ ହୋଇଥାଏ । ଶ୍ରୀକୃଷ୍ଣ ଚନ୍ଦ୍ରାବଳୀ କୁଞ୍ଜକୁ ଯାଇଥିବାର ଶୁଣି ଶ୍ରୀରାଧାଙ୍କଠାରେ ଯେଉଁ ଭାବର ଉଦ୍ରେକ ଘଟିଥାଏ ତାହା ଏହି ପର୍ଯ୍ୟାୟଭୁକ୍ତ ।

୨୯ । **ଅସୂୟା**–ଅନ୍ୟର ସୌଭାଗ୍ୟ ଓ ଗୁଣାଦିର ଉତ୍କର୍ଷ ଦର୍ଶନରେ ହୃଦୟରେ ଯେଉଁ ଦ୍ୱେଷ ଭାବ ଜାତ ହୁଏ, ତାହାକୁ ଅସୂୟା କୁହାଯାଏ । ଶ୍ରୀକୃଷ୍ଣଙ୍କଠାରେ ଚନ୍ଦ୍ରାବଳୀଙ୍କ ସହ ରତିକ୍ରୀଡ଼ାର ଦନ୍ତ ଓ ନଖକ୍ଷତଚିହ୍ନ ଦେଖି ଶ୍ରୀରାଧାଙ୍କଠାରେ କ୍ରୋଧବଶତଃ ଅସୂୟା ଭାବ ଜାତ ହେବାର ବର୍ଣ୍ଣନା ବୈଷ୍ଣବ କାବ୍ୟମାନଙ୍କରେ ଦୃଷ୍ଟିଗୋଚର ହୋଇଥାଏ ।

୩୦ । **ଚପଳ**–ରାଗ ଓ ଦ୍ୱେଷ ହେତୁ ଚିତ୍ତର ଲଘୁତାକୁ ଚପଳ କୁହାଯାଏ । ମିଶ୍ରବାକ୍ୟ ଓ ସ୍ୱଚ୍ଛନ୍ଦ ଆଚରଣ ଏହାର ଲକ୍ଷଣ । ଶ୍ରୀରାଧାଙ୍କ ସହିତ ଶ୍ରୀକୃଷ୍ଣ ରାସସ୍ଥଳରୁ ଅନ୍ତର୍ହିତ ହେବାରୁ ଗୋପୀମାନଙ୍କଠାରେ ଏହି ଚପଳ ଭାବର ପରିପ୍ରକାଶ ଘଟିଥିବାର ବର୍ଣ୍ଣନା ଦେଖିବାକୁ ମିଳେ ।

୩୧ । **ନିଦ୍ରା**–ଚିନ୍ତା, ଆଳସ୍ୟ ଓ କ୍ଳାନ୍ତି ପ୍ରଭୃତି ଦ୍ୱାରା ଚିତ୍ତର ବହିର୍ବୃତ୍ତିର ଅଭାବକୁ ନିଦ୍ରା କୁହାଯାଏ । ଅଙ୍ଗଭଙ୍ଗ, ଜୃମ୍ଭା, ଜଡ଼ତା,

ନେତ୍ର ନିମୀଳନ ଆଦି ଏହାର ଲକ୍ଷଣ । ରତିଶ୍ରାନ୍ତା ରାଧା ଓ କୃଷ୍ଣଙ୍କର କୁଞ୍ଜରେ ନିଦ୍ରାଯିବାର ବର୍ଣ୍ଣନାକୁ ବୈଷ୍ଣବ କବିମାନେ ସ୍ୱକାବ୍ୟରେ ଉପସ୍ଥାପିତ କରିଛନ୍ତି ।

**୩୨ । ସୁପ୍ତି**–ଯେଉଁ ନିଦ୍ରାରେ ନାନା ପ୍ରକାର ଭାବନା ଦେଖାଯାଏ ଏବଂ ବିଭିନ୍ନ ଜ୍ଞାନାଦି ପ୍ରକାଶିତ ହୁଏ, ତାହାକୁ ସୁପ୍ତି କୁହାଯାଏ । କୁଞ୍ଜରେ ଶୟନ କାଳରେ କୃଷ୍ଣଙ୍କ ମନର ବିଭିନ୍ନ ଭାବନା ଏହି ଭାବର ପ୍ରକାଶକ ।

**୩୩ । ବୋଧ**–ଅବିଦ୍ୟା, ମୋହ, ନିଦ୍ରା ଆଦି ଧ୍ୱଂସଜନିତ ପ୍ରବୁଦ୍ଧତାର ନାମ ବୋଧ । ଏହି ଧ୍ୱଂସଜନିତ ବୋଧକୁ ଗନ୍ଧ, ସ୍ପର୍ଶ ଓ ରସ, ଶବ୍ଦ ଦ୍ୱାରା ବୋଧ କରାଯାଇଥାଏ । ବିରହ ବିଧୁରା ଶ୍ରୀରାଧା କୃଷ୍ଣଙ୍କର କୁସୁମମାଳାର ଗନ୍ଧରେ ବୋଧ ହୋଇଥାନ୍ତି । ପରସ୍ପରର ଅଙ୍ଗ ସ୍ପର୍ଶରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ଉଭୟେ ପୁଲକିତ ହୋଇଉଠିଥାନ୍ତି, ଶ୍ରୀକୃଷ୍ଣଙ୍କର ଭୋଜନାବଶେଷକୁ ଗ୍ରହଣକରି ଶ୍ରୀରାଧା ମହାସୁଖୀ ହେବା ଓ ବିରହ ଜ୍ୱାଳାରେ ମୂର୍ଚ୍ଛିତା ଶ୍ରୀରାଧା କୃଷ୍ଣନାମ ଶ୍ରବଣରେ ସଚେତନ ହୋଇ ଉଠିବା ପ୍ରଭୃତି ଏହି ବୋଧର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ ।

ଉପରେ ବର୍ଣ୍ଣିତ ସମସ୍ତ ସଞ୍ଚାରୀ ଭାବଗୁଡିକ ଚାରିଟିସ୍ତରରେ ପ୍ରକାଶିତ ହୋଇଥାଆନ୍ତି । ସେହି ଚାରିଟିସ୍ତର ହେଉଛି ଭାବୋତ୍ପତ୍ତି, ଭାବସନ୍ଧି, ଭାବଶାବଲ୍ୟ ଓ ଭାବଶାନ୍ତି । ଉପର୍ଯ୍ୟୁକ୍ତ ସମସ୍ତ ସଞ୍ଚାରୀ ଭାବଗୁଡ଼ିକ ଏହି ଚାରିସ୍ତରର ଅନ୍ତର୍ଭୁକ୍ତ ଓ ରାଧାକୃଷ୍ଣଙ୍କର ବିଭିନ୍ନ ଭାବ ମଧ୍ୟରେ ପ୍ରକାଶିତ ହୋଇଥିବାରୁ ଏଗୁଡ଼ିକର ସ୍ୱତନ୍ତ୍ର ଆଲୋଚନା ଏଠାରେ ଦିଆଯାଇ ନାହିଁ । ଉପର୍ଯ୍ୟୁକ୍ତ ସମସ୍ତ ବିଭାବ, ଅନୁଭାବ, ଓ ସଞ୍ଚାରୀଭାବଗୁଡିକ ଚୈତନ୍ୟ ସମ୍ପ୍ରଦାୟର ରସଶାସ୍ତ୍ର ଉଜ୍ଜ୍ୱଳ ନୀଳମଣି ଓ 'ଭକ୍ତି ରସାମୃତ ସିନ୍ଧୁ' ଗ୍ରନ୍ଥର ଆଧାରରେ ଓ ଓଡିଆ ବୈଷ୍ଣବକାବ୍ୟଗୁଡ଼ିକୁ ଭିତ୍ତି କରି ଉପସ୍ଥାପନ କରାଯାଇଛି ।

## ସାତ୍ତ୍ୱିକ ପ୍ରକରଣ :

'ଭକ୍ତିରସାମୃତ' ଗ୍ରନ୍ଥାନୁଯାୟୀ ଶ୍ରୀକୃଷ୍ଣ ସମ୍ବନ୍ଧି-ଦାସ୍ୟ ସଖ୍ୟାଦି ପଞ୍ଚ ମୁଖ୍ୟ ରତିଦ୍ୱାରା ସାକ୍ଷାତ୍‌ଭାବେ ଅଥବା ହାସ କରୁଣାଦି ସପ୍ତଗୌଣ

ରତିଦ୍ୱାରା କମ୍ପାଦ୍ ବ୍ୟବଧାନରେ ଆକ୍ରାନ୍ତ ଚିତ୍ତକୁ ସତ୍ତ୍ୱ କୁହାଯାଏ ଓ ଏହି ସତ୍ତ୍ୱରୁଜାତ ଭାବ ହିଁ ସାତ୍ତ୍ୱିକଚ୍ଛବ । (୩୮୧) ସ୍ନିଗ୍ଧ, ଦଗ୍ଧ ଓ ରୁକ୍ଷ ଭେଦରେ ଏହି ସାତ୍ତ୍ୱିକ ଭାବ ତିନପ୍ରକାର ।

**ସ୍ନିଗ୍ଧ ସାତ୍ତ୍ୱିକ**–ସ୍ନିଗ୍ଧ ସାତ୍ତ୍ୱିକ ମୁଖ୍ୟସ୍ନିଗ୍ଧ ଓ ଗୌଣ ସ୍ନିଗ୍ଧ ଭେଦରେ ଦ୍ୱିବିଧ । ମୁଖ୍ୟ ଶାନ୍ତାଦି ପଞ୍ଚରତି ଦ୍ୱାରା ଆକ୍ରାନ୍ତ ହେଲେ ତାହାକୁ ମୁଖ୍ୟ ସ୍ନିଗ୍ଧ ଓ ଗୌଣ ହାସାଦି ସପ୍ତରତି ଦ୍ୱାରା ଆକ୍ରାନ୍ତ ଭାବକୁ ଗୌଣସ୍ନିଗ୍ଧ କୁହାଯାଏ ।

**ଦଗ୍ଧ ସାତ୍ତ୍ୱିକ**–ମୁଖ୍ୟ ଓ ଗୌଣ ରତି ବ୍ୟତିରେକେ ଅନ୍ୟଭାବ (କମ୍ପାଦି) ଦ୍ୱାରା ଜାତରତି ମନୁଷ୍ୟର ମନକୁ ଆକ୍ରାନ୍ତକଲେ, ଯଦି ଏହିଭାବ ରତିର **ଅନୁଗାମୀ** ହୁଏ, ତେବେ ତାହାକୁ ଦଗ୍ଧ ସାତ୍ତ୍ୱିକ କୁହାଯାଇଥାଏ । ଭୟାନକ ଦୃଶ୍ୟର ଦର୍ଶନ ଅର୍ଥାତ୍ ପୂତନାଦି ମୃତ୍ୟୁ ଗୋପୀମାନଙ୍କ ଶରୀରରେ ଯେଉଁ ଭୟହେତୁକ କମ୍ପ ଜାତ କରାଇଲା ତାହା ଏହି ଶ୍ରେଣୀୟ ।

**ରୁକ୍ଷ ସାତ୍ତ୍ୱିକ**–ମଧୁର ଓ ଆଶ୍ଚର୍ଯ୍ୟଜନକ ଭଗବତ୍ କଥାରୁ ଜାତ ଆନନ୍ଦ ଓ ବିସ୍ମୟ ଜନିତ ରତିଭାବ ଭକ୍ତତୁଲ୍ୟ ରତିଶୂନ୍ୟ ବ୍ୟକ୍ତିଠାରେ ଯେକୌଣସି ଭାବ ଉଦୟକଲେ, ତାହାକୁ ରୁକ୍ଷ ସାତ୍ତ୍ୱିକ କୁହାଯାଇଥାଏ ।

ଏହି ସବୁ ସାତ୍ତ୍ୱିକଭାବଗୁଡ଼ିକୁ ଆଠଟି ମୁଖ୍ୟ ଭାଗରେ ବିଭକ୍ତ କରାଯାଇଥାଏ । ସେଗୁଡ଼ିକର ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।

**ସ୍ତମ୍ଭ**–ହର୍ଷ ଭୟ, ଆଶ୍ଚର୍ଯ୍ୟ, ବିଷାଦ ଓ ଅମର୍ଷ ବା କ୍ରୋଧ ହେତୁ ଏହି ସ୍ତମ୍ଭ ସାତ୍ତ୍ୱିକ ଜାତ ହୋଇଥାଏ । ବାକଶକ୍ତିହୀନତା, ନିଶ୍ଚଳତା ଓ ଶୂନ୍ୟତାଦି ଏହାର ଲକ୍ଷଣ । ଅତ୍ୟଧିକ ଆନନ୍ଦରେ ଶ୍ରୀରାଧାଙ୍କଠାରେ ଏହି ଭାବ ଜାତ ହୋଇଥାଏ ।

**ସ୍ୱେଦ**–ହର୍ଷ, ଭୟ ଓ କ୍ରୋଧ ହେତୁ ଶରୀରରୁ ଜାତ, ସ୍ୱେଦକୁ ଏହି ସାତ୍ତ୍ୱିକଭାବ ଭାବେ ଗ୍ରହଣ କରାଯାଇଥାଏ ।

**ରୋମାଞ୍ଚ**–ଆଶ୍ଚର୍ଯ୍ୟଦର୍ଶନ, ହର୍ଷ, ଉତ୍ସାହ ଓ ଭୟାଦି କାରଣରୁ ଜାତ ରୋମାଞ୍ଚ ହିଁ ଏହି ସାତ୍ତ୍ୱିକ ପର୍ଯ୍ୟାୟଭୁକ୍ତ । କୁଞ୍ଜ ଦ୍ୱାରରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ପରସ୍ପର ଦର୍ଶନରେ ରୋମାଞ୍ଚିତ ହୋଇ ଉଠିଥାନ୍ତି ।

**ସ୍ୱରଭଙ୍ଗ**–ବିଷାଦ, ବିସ୍ମୟ, କ୍ରୋଧ, ଭୟ ଓ ଆନନ୍ଦରେ ସ୍ୱରଭଙ୍ଗ ଘଟିଥାଏ । ଅତ୍ୟଧିକ ଆନନ୍ଦିତ ହେବାବେଳେ ଶ୍ରୀରାଧାଙ୍କ କଣ୍ଠରୁ ଥନ ଥନ ବାକ୍ୟ ପ୍ରକାଶ ପାଇବାର ବର୍ଣ୍ଣନା ବୈଷ୍ଣବ ସାହିତ୍ୟରେ ଦେଖିବାକୁ ମିଳେ ।

**ବେପଥୁ**–ବିହ୍ୱାସ, ଅମର୍ଷ (କ୍ରୋଧ) ଓ ହର୍ଷ ହେତୁ ଶରୀରରେ ଏହି ଭାବ ଜାତ ହୋଇଥାଏ ।

**ବୈବର୍ଣ୍ଣ୍ୟ**–ବିପଦ, କ୍ରୋଧ, ଭୟ ହେତୁ ଶରୀର-ବର୍ଣ୍ଣ ବିକାର ଗ୍ରସ୍ତ ହେଲେ ତାହାକୁ ବୈବର୍ଣ୍ଣ୍ୟ କୁହାଯାଇଥାଏ । ବିରହିଣୀ ରାଧାଙ୍କର ବର୍ଣ୍ଣନା ବେଳେ ତାଙ୍କଠାରେ ଏହି ଭାବର ଆରୋପ କରାଯାଇଛି ।

**ଅଶ୍ରୁ**–ହର୍ଷ, କ୍ରୋଧ, ବିଷାଦାଦି ହେତୁ ନେତ୍ରରୁ ଜଳୋଦ୍‌ଗମ ହେଲେ ତାହାକୁ ଅଶ୍ରୁ କୁହାଯାଇଥାଏ । କୃଷ୍ଣନାମ ଶ୍ରବଣରେ ହର୍ଷହେତୁତ ଅଶ୍ରୁ ଶ୍ରୀରାଧାଙ୍କ ନେତ୍ରରୁ ଜାତ ହେବାର ବର୍ଣ୍ଣନା ସର୍ବତ୍ର ପରିଦୃଷ୍ଟ ହୋଇଥାଏ ।

**ପ୍ରଳୟ**–ଯେଉଁଥିରେ ଚେଷ୍ଟା ଓ ଜ୍ଞାନାଦିର ଅଭାବ ହୁଏ, ତଦ୍‌ଜାତ ଦୁଃଖସୁଖରୁ ଉଦ୍ଭୂତ ସାତ୍ତ୍ୱିକ ଭାବକୁ ପ୍ରଳୟ କୁହାଯାଏ । ଭୂପତନ ଏହାର ଲକ୍ଷଣ । ବିରହ ଯନ୍ତ୍ରଣା ଅତ୍ୟଧିକ ହେତୁ ଶ୍ରୀରାଧାଙ୍କର ମୂର୍ଚ୍ଛା ଏହି ପର୍ଯ୍ୟାୟଭୁକ୍ତ ।

ଉପର୍ଯ୍ୟୁକ୍ତ ଆଠଟି ସାତ୍ତ୍ୱିକ ଭାବକୁ ପ୍ରକାଶର ତାରତମ୍ୟ ଅନୁଯାୟୀ ରୂପଗୋସ୍ୱାମୀ ପୁନଶ୍ଚ ଚୁରିଭାଗରେ ବିଭକ୍ତ କରିଛନ୍ତି । ଯଥା –ଧୂମାୟିତ, ଜ୍ୱଳିତ, ଦୀପ୍ତ ଓ ଉଦ୍ଦୀପ୍ତ ।

**ଧୂମାୟିତ**–ପୂର୍ବୋକ୍ତ ସାତ୍ତ୍ୱିକ ଭାବଗୁଡ଼ିକ ମଧ୍ୟରୁ ଗୋଟିଏ କିମ୍ବା ଦୁଇଟି ଈଷତ୍ ପ୍ରକାଶିତ ହେଲେ ଏବଂ ତାହାକୁ ଗୋପନ କରାଯାଇ-ପାରିଲେ ତାହାକୁ ଧୂମାୟିତ କୁହାଯାଇଥାଏ । ଏହାର ଉଦାହରଣ ଭାବେ "କାଳିଆ କମଳ ଦେଖିଲେ କମଳ ନୟନରେ ହୁଏ ଜରଜର, ଦେଖି ନବଘନ ତା'ର ଅପଘନ ପୁଲକ ହୁଅଇ ଥରଥର" (ବି.ଚ. ୫୨।୨)

ପଦଟିକୁ ଗ୍ରହଣ କରାଯାଇପାରେ । ଏଥିରେ ରାଧାଙ୍କଠାରେ ଅଶ୍ରୁ ଓ ବେପଥୁ–ଦୁଇ ସାତ୍ତ୍ୱିକ ଭାବର ବର୍ଣ୍ଣନା ରହିଛି ।

**ଜ୍ୱଳିତ**–ଦୁଇ ତିନଟି ସାତ୍ତ୍ୱିକ ଭାବ ଯୁଗପତ୍ ଉଦିତ ହେଲେ ଏବଂ କଷ୍ଟରେ ତାହାକୁ ଗୋପନ କରାଯାଇପାରିଲେ, ତାହା ଜ୍ୱଳିତ ନାମରେ କଥିତ ହୁଏ । ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀରାଧାଙ୍କର ସ୍ୱପ୍ନମିଳନ ଜନିତ ଭାବ ମଧ୍ୟରେ ଶ୍ରୀରାଧାଙ୍କଠାରେ ଏକାଧିକମେ ଅଶ୍ରୁ, ବେପଥୁ ସ୍ୱେଦ ଜାତ ହେଲେହେଁ, ସେ ତାହାକୁ ଗୋପନ କରିବାକୁ ଚେଷ୍ଟା କରିଛନ୍ତି ।

**ଦୀପ୍ତ**–ଏକାବେଳକେ ପ୍ରକାଶିତ ତିନି, ଚାରି ବା ପାଞ୍ଚଟି ସାତ୍ତ୍ୱିକ ଭାବକୁ ଗୋପନ କରାଯାଇ ନପାରିଲେ ତାହାକୁ ଦୀପ୍ତ କୁହାଯାଏ । ଶ୍ରୀରାଧାଙ୍କଠରେ ଏହି ଭାବକୁ ଲକ୍ଷ୍ୟ କରାଯାଇଥାଏ ।

**ଉଦ୍ଦୀପ୍ତ**–ଏକକ ପାଞ୍ଚରୁ ଅଧିକ ସାତ୍ତ୍ୱିକ ଭାବ ବା ସମସ୍ତ ସାତ୍ତ୍ୱିକ ଭାବ ପ୍ରକାଶିତ ହୋଇ ଚରମୋତ୍କର୍ଷ ଅବସ୍ଥା ପ୍ରାପ୍ତ ହେଲେ ତାହା ଉଦ୍ଦୀପ୍ତ ଭାବେ କଥିତ ହୁଏ । ରାଧାକୃଷ୍ଣଙ୍କ ଷଡ଼ଋତୁଯୌମ୍ୟାତ୍ମ ମଧ୍ୟରେ ରାଧାଙ୍କଠାରେ ଅଷ୍ଟସାତ୍ତ୍ୱିକ ଲକ୍ଷଣ ପ୍ରକାଶ ପାଇବାର ବର୍ଣ୍ଣନା ବୈଷ୍ଣବ କବିମାନେ ପ୍ରଦାନ କରିଛନ୍ତି । ଏହି ଉଦ୍ଦୀପ୍ତ ସାତ୍ତ୍ୱିକ ଭାବ ମହାଭାବରେ ସୁଦ୍ଦୀପ୍ତ ଆଖ୍ୟାଧାରଣ କରିଥାଏ ।

## ଉଜ୍ଜ୍ୱଳ ରସ ବା ଶୃଙ୍ଗାର ରସ :

ପୂର୍ବ ବର୍ଣ୍ଣିତ ବିଭାବ, ଅନୁଭାବ ଓ ସଞ୍ଚାରୀ ଭାବର ସଂଯୋଗରେ ଜାତ ଶୃଙ୍ଗାର ରସ ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମରେ ଉଜ୍ଜ୍ୱଳ ରସ ନାମରେ କଥିତ । ଏହି ଉଜ୍ଜ୍ୱଳ ରସକୁ ସେମାନେ ସମ୍ଭୋଗ ଓ ବିପ୍ରଲମ୍ଭ ଭେଦରେ ଦୁଇଭାଗରେ ବିଭକ୍ତ କରିଥାନ୍ତି । ନାୟକ ନାୟିକଙ୍କ ମିଳନ କୈନ୍ଦ୍ରିକ ଶୃଙ୍ଗାର ରସକୁ ସମ୍ଭୋଗ ଶୃଙ୍ଗାର ରସ ଏବଂ ବିରହ କୈନ୍ଦ୍ରିକ ଶୃଙ୍ଗାର ରସକୁ ବିପ୍ରଲମ୍ଭ ଶୃଙ୍ଗାର ରସ ନାମରେ ନାମିତ । ଏହି ଦୁଇ ଶୃଙ୍ଗାର ରସ ମଧ୍ୟରେ ବିପ୍ରଲମ୍ଭ ପ୍ରକାର ଶୃଙ୍ଗାର ରସର ମହତ୍ତ୍ୱ ସ୍ୱୀକାର କରାଯାଇଛି । ଏହି ବିପ୍ରଲମ୍ଭ ଶୃଙ୍ଗାର ରସ ଚାରିଭାଗରେ ବିଭକ୍ତ । ଯଥା—ପୂର୍ବରାଗ, ମାନ, ପ୍ରେମ ବୈଚିତ୍ତ୍ୟ ଓ ପ୍ରବାସ । ବର୍ତ୍ତମାନ ଏହି ବିଭାଗଗୁଡିକ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଉଅଛି ।

୧ । **ପୂର୍ବରାଗ**–ମିଳନ ପୂର୍ବରୁ ନାମ ଶ୍ରବଣ ଓ ରୂପ ଦର୍ଶନ ହେତୁ ନାୟକ–ନାୟିକାଙ୍କର ହୃଦୟରେ ଜାତ ରତି ହିଁ ପୂର୍ବରାଗ । ହୃଦୟରେ ପୂର୍ବରାଗର ଉଦୟ ଘଟିଲେ ବ୍ୟାଧି, ଶଙ୍କା, ଅସୂୟା ଶ୍ରମ, କ୍ଲମ, ନିର୍ବେଦ, ଔତ୍ସୁକ୍ୟ, ଦୈନ୍ୟ, ନିଦ୍ରା, ବିଷାଦ, ଜଡତା, ଉନ୍ମାଦ, ମୋହ ଓ ମୃତି ଆଦି ସଞ୍ଚାରୀ ଭାବଗୁଡିକ ଜାତ ହୋଇଥାଏ । ଓଡିଆ ବୈଷ୍ଣବ କବିମାନେ ରାଧାକୃଷ୍ଣଙ୍କ ମଧ୍ୟରେ ଏହି ପୂର୍ବରାଗକୁ ପରମ୍ପରାନୁଯାୟୀ ବର୍ଣ୍ଣନା କରିଛନ୍ତି । ବୈଷ୍ଣବ ଆଚାର୍ଯ୍ୟମାନେ ପୂର୍ବରାଗ ଉଦୟର ମାଧ୍ୟମକୁ ମୁଖ୍ୟ ଦୁଇ ଭାଗରେ ଅର୍ଥାତ୍ ଦର୍ଶନ ଓ ଶ୍ରବଣ ଭେଦରେ ବିଭକ୍ତ କରି ପ୍ରତ୍ୟେକର ଉପବିଭାଗ ମଧ୍ୟ ଗ୍ରହଣ କରିଛନ୍ତି । ଦର୍ଶନ ମଧ୍ୟରେ ଚିତ୍ରରେ ଦର୍ଶନ, (ଚିତ୍ରପଟ ଦର୍ଶନ), ସ୍ୱପ୍ନରେ ଦର୍ଶନ ଓ ସାକ୍ଷାତ ଦର୍ଶନ ଅନ୍ତର୍ଭୁକ୍ତ । ସେହିପରି ଶ୍ରବଣ ଜନିତ ପୂର୍ବରାଗ ରସ ଶାସ୍ତ୍ରରେ ବନ୍ଦୀମୁଖରେ ଶ୍ରବଣ, ଦୂତୀ ମୁଖରେ ଶ୍ରବଣ ଓ ସଖୀ ମୁଖରେ ଶ୍ରବଣ ଭେଦରେ ବିଭକ୍ତ କରାଯାଇଛି ଏବଂ ପ୍ରତ୍ୟେକ ଉପବିଭାଗକୁ ତଦ୍ଜନିତ ପୂର୍ବରାଗ ନାମରେ ନାମିତ କରାଯାଇଛି । ଏତଦ୍ବ୍ୟତୀତ ବୈଷ୍ଣବ କାବ୍ୟଗୁଡ଼ିକରେ ଶ୍ରବଣ ଜନିତ ପୂର୍ବରାଗ ମଧ୍ୟରେ ନାମ ଶ୍ରବଣ ଜନିତ, ବଂଶୀଧ୍ୱନି ଶ୍ରବଣ ଜନିତ ଓ ଦୂତୀ ମୁଖରୁ ଗୁଣ ଶ୍ରବଣ ଜନିତ ପୂର୍ବରାଗକୁ ଗ୍ରହଣ କରାଯାଇଛି । ଏହିସବୁ ପୂର୍ବରାଗଗୁଡିକ ରାଧା-କୃଷ୍ଣ ଲୀଳା ବିଳାସ ମଧ୍ୟରେ ଆରୋପିତ ହୋଇଛି ।

ବୈଷ୍ଣବ ଶାସ୍ତ୍ରରେ ଏହି ପୂର୍ବରାଗକୁ ମୁଖ୍ୟତଃ ପ୍ରୌଢ ପୂର୍ବରାଗ, ସାଧାରଣ ପୂର୍ବରାଗ ଓ ସମଞ୍ଜସ ପୂର୍ବରାଗ ଭେଦରେ ଗ୍ରହଣ କରାଯାଇଛି । କୃଷ୍ଣଙ୍କର ସାଧାରଣୀ ନାୟିକା ଓ ସମଞ୍ଜସା ନାୟିକାମାନଙ୍କର ପୂର୍ବରାଗକୁ ଯଥାକ୍ରମେ ସାଧାରଣ ପୂର୍ବରାଗ ଓ ସମଞ୍ଜସ୍ୟ ପୂର୍ବରାଗ କୁହାଯାଉଥିବା ବେଳେ ସମର୍ଥାରତି ସମ୍ପନ୍ନା ନାୟିକାମାନଙ୍କର ପୂର୍ବରାଗକୁ ପ୍ରୌଢ ପୂର୍ବରାଗ କୁହାଯାଇଥାଏ । ଚୈତନ୍ୟ ପରମ୍ପରାରେ ରଚିତ ବୈଷ୍ଣବ ସାହିତ୍ୟରେ ଶେଷୋକ୍ତ ପୂର୍ବରାଗର ବିସ୍ତୃତ ବର୍ଣ୍ଣନା ଦୃଷ୍ଟିଗୋଚର ହେଉଥିବାରୁ ଏଠାରେ ତଦ୍ ସମ୍ପର୍କରେ କେତେକ ସୂଚନା ଦିଆଯାଉଛି ।

## ପ୍ରୌଢ଼ ପୂର୍ବରାଗ ଜନିତ ଦଶ ଦଶା

ପ୍ରୌଢ଼ ପୂର୍ବରାଗ ବୃଦ୍ଧିପ୍ରାପ୍ତ ହେଲେ ନାୟିକାଠାରେ ଦଶ ଦଶା ପ୍ରକାଶିତ ହୋଇଥାଏ । ସେଗୁଡ଼ିକ ହେଲା—

୧ । **ଲାଲସା**-ଲାଲସା ଅର୍ଥ ଅଭୀଷ୍ଟ ବସ୍ତୁକୁ ଲାଭ କରିବାର ପ୍ରଗାଢ଼ ତୃଷ୍ଣା । ଶ୍ରୀକୃଷ୍ଣଙ୍କୁ ପାଇବା ଲାଗିରେ ଶ୍ରୀରାଧାଙ୍କର ଏବଂବିଧ ଲାଲସା ପ୍ରକାଶର ବର୍ଣ୍ଣନା ବୈଷ୍ଣବ ସାହିତ୍ୟର ଛନ୍ଦେ ଛନ୍ଦେ ଦେଖିବାକୁ ମିଳେ । ନାୟିକାଠାରେ ଏହି ଦଶା ପ୍ରକାଶିତ ହେଲେ ଅଭୀଷ୍ଟ ବସ୍ତୁର ପ୍ରାପ୍ତି ପାଇଁ ସେ ସମସ୍ତ ପ୍ରକାର ଦୁଃଖକଷ୍ଟକୁ ସ୍ୱୀକାର କରିନେବାକୁ ପ୍ରସ୍ତୁତ ହୋଇଥାଏ ।

୨ । **ଉଦ୍‌ବେଗ**-ମନର ଚଞ୍ଚଳତା ହିଁ ଉଦ୍‌ବେଗ । ଦୀର୍ଘଶ୍ୱାସ ତ୍ୟାଗ, ଚପଳତା, ସ୍ତମ୍ଭ, ଚିନ୍ତା, ଅଶ୍ରୁ, ବୈବର୍ଣ୍ଣ୍ୟ ଓ ସ୍ୱେଦ ଆଦି ଏହାର ଲକ୍ଷଣ ।

୩ । **ଜାଗର୍ଯ୍ୟ**-ନିଦ୍ରାର ଅଭାବକୁ ଜାଗର୍ଯ୍ୟ କୁହାଯାଏ । ଅଭୀଷ୍ଟ ବସ୍ତୁର ପ୍ରାପ୍ତି ଆଶାରେ ଚକ୍ଷୁରେ ନିଦ୍ରା ନଆସିଲେ ସ୍ତମ୍ଭ, ଶୋଷ ବ୍ୟାଧି ପ୍ରଭୃତି ଲକ୍ଷଣ ପ୍ରକାଶ ପାଇଥାଏ ।

୪ । **ଆଣବ**-ଶରୀରର କୃଶତା ଅର୍ଥାତ୍ ଶରୀରର କ୍ଷୀଣତାକୁ ଆଣବ କୁହାଯାଏ । ଏହି ଦଶା ଦେଖାଦେଲେ ଦୌର୍ବଲ୍ୟ ଓ ଭ୍ରମଣାଦି ଲକ୍ଷଣ ପ୍ରକାଶ ପାଇଥାଏ ।

୫ । **ଜଡ଼ିମା**-ହିତ ଓ ଅହିତର ଜ୍ଞାନହୀନ ଅବସ୍ଥାର ନାମ ଜଡ଼ିମା । ଏ ଅବସ୍ଥାରେ ନାୟିକାଠାରେ ଦେଖି ନ ଦେଖିଲାପରି ଓ ଶୁଣି ନ ଶୁଣିଲାପରି ଭାବ ପରିଲକ୍ଷିତ ହୋଇଥାଏ ।

୬ । **ବୈୟଗ୍ର୍ୟ**-ଭାବ ବିକାରର ସମ୍ଭାରର ବାହ୍ୟିକ ପ୍ରକାଶ ନ ଘଟିବା ହେତୁ ଯେଉଁ ଗାମ୍ଭୀର୍ଯ୍ୟ ପ୍ରକାଶ ପାଏ ଏବଂ ତଦ୍‌ହେତୁ ଯେଉଁ ବିକ୍ଷୋଭଜନିତ ଅସହିଷ୍ଣୁତା ସୃଷ୍ଟି ହୁଏ, ତାହାକୁ ବୈୟଗ୍ର୍ୟ କୁହାଯାଏ । ଏହି ଦଶାରେ ଅବିମୃଷ୍ୟକାରିତା, ନିର୍ବେଦ, ଅସୂୟା ଓ ଖେଦ ଆଦି ଲକ୍ଷଣ ପ୍ରକାଶ ପାଇଥାଏ ।

୭ । ବ୍ୟାଧି–ଅଭୀଷ୍ଟ ବସ୍ତୁର ଅପ୍ରାପ୍ତି ହେତୁ ଶରୀରର ଶ୍ୱେତତା ଓ ମହାତାପ ପ୍ରକଟିତ ଅବସ୍ଥାକୁ ବ୍ୟାଧି କୁହାଯାଏ । ଶୀତ, ସ୍ପୃହା, ମୋହ, ଦୀର୍ଘଶ୍ୱାସ, ପତନ ଆଦି ଏହାର ଲକ୍ଷଣ ।

୮ । ଉନ୍ମାଦ–ନିର୍ବେଦ, ବିଷାଦ ଓ ଦୈନ୍ୟାଦିରେ ଚିତ୍ତ ଭ୍ରମିତ ହୋଇ ଅନ୍ୟମନସ୍କତା ଦେଖାଦେଲେ ପ୍ରକୃତ ବସ୍ତୁରେ ଅପ୍ରକୃତ ପ୍ରତୀତି ଆସିଥାଏ । ଏହି ଅବସ୍ଥାକୁ ଉନ୍ମାଦ କୁହାଯାଏ ।

୯ । ମୋହ–ଚୈତନ୍ୟ ରହିତ ଅବସ୍ଥାର ନାମ ମୋହ । ନିଶ୍ଚଳତା ଓ ପତନ ଏହାର ଲକ୍ଷଣ । ଏହା ହେଉଛି ଜୀବନ୍ମୃତ ଅବସ୍ଥା ।

୧୦ । ମୃତି–କାମଲେଖ ପ୍ରେରଣ ଆଦିଦ୍ୱାରା କାନ୍ତର ସମାଗମ ନ ହେଲେ ଅତ୍ୟଧିକ କାମପୀଡ଼ା ହେତୁ ନାୟିକାଠାରେ ମୃତ୍ୟୁନିମିତ୍ତ ଉଦ୍ୟମ ଲକ୍ଷିତ ହେଲେ, ତାହାକୁ ମୃତି କୁହାଯାଏ । ପୂର୍ବରାଗବତୀ ଶ୍ରୀରାଧାଙ୍କଠାରେ ଏବଂ ବିଧ ଅବସ୍ଥାର ଆରୋପ କରାଯାଇଛି ।

୨ । ମାନ :

ଏକ ସ୍ଥାନରେ ଅବସ୍ଥାନ କରି ପରସ୍ପରପ୍ରତି ଅନୁରକ୍ତ ହେଲେ ମଧ୍ୟ ନାୟକ ନାୟିକାଙ୍କର ସ୍ୱ ସ୍ୱ ଅଭିପ୍ରେତ ଆଲିଙ୍ଗନ, ଦର୍ଶନ, ଚୁମ୍ବନ, ପ୍ରିୟଭାଷଣ ପ୍ରଭୃତିର ପ୍ରତିବନ୍ଧକ ଭାବକୁ ମାନ କୁହାଯାଏ । ବିପ୍ରଲମ୍ଭ ଅବସ୍ଥାରେ ଜାତ ଏହି ମାନର ସଞ୍ଚାରୀଭାବ ସମୂହ ହେଉଛି—ନିର୍ବେଦ, ଶଙ୍କା, ଅମର୍ଷ, ଚପଳ, ଗର୍ବ, ଅସୂୟା, ଅବହିତ୍ଥା, ଗ୍ଲାନି ଏବଂ ଚିନ୍ତା । 'ଉଜ୍ଜ୍ୱଳ-ନୀଳମଣି' ଗ୍ରନ୍ଥାନୁଯାୟୀ ଏହି ମାନ ଦୁଇପ୍ରକାର । ଯଥା:—ସହେତୁମାନ ଓ ନିର୍ହେତୁ ମାନ । ଏହି ମାନ ଉପଶମନର ବିଭିନ୍ନ ଉପାୟ ମଧ୍ୟ ଏହି ଗ୍ରନ୍ଥରେ ନିର୍ଦ୍ଦେଶିତ ହୋଇଛି ।

ସହେତୁ ମାନ–କାରଣ ଥାଇ ଜାତମାନକୁ ସହେତୁ ମାନ କୁହାଯାଏ । ସାଧାରଣତଃ ନାୟକଠାରେ ବିପକ୍ଷ ନାୟିକାର ବୈଶିଷ୍ଟ୍ୟ ପ୍ରଖ୍ୟାପିତ ହେଲେ, ନାୟିକାଠାରେ ଯେଉଁ ଈର୍ଷାଦି ଜାତ ହୋଇଥାଏ ତାହା ସହେତୁମାନ ଅନ୍ତର୍ଭୁକ୍ତ । ଏ କ୍ଷେତ୍ରରେ ନାୟିକା ପ୍ରତି ସ୍ନେହ

ଥିବାରୁ ନାୟକ ନିଜର ଅପରାଧକୁ ଯେଉଁଭଳି ଭୟ କରିଥାଏ, ସେହିପରି ନାୟକ ପ୍ରତି ନାୟିକାର ପ୍ରଣୟ ଥିବାରୁ ନାୟିକା ଈର୍ଷାନ୍ୱିତା ହୋଇ-ଉଠିଥାଏ । ନାୟିକା ନାୟକଠାରୁ ଯେଉଁ ବିପକ୍ଷ ବୈଶିଷ୍ଟ୍ୟର ସୂଚନା ପାଇଥାଏ ତାହାକୁ ତିନିଭାଗରେ ବିଭକ୍ତ କରାଯାଇଛି । ଯଥା—ଶ୍ରୁତ, ଅନୁମିତ ଓ ଦୃଷ୍ଟ । ଅର୍ଥାତ୍ ଶ୍ରବଣ ହେତୁକ, ଅନୁମାନ ହେତୁକ ଓ ଦର୍ଶନ ହେତୁକ ।

**ଶ୍ରୁତ**—ପ୍ରିୟସଖୀ ବା ଶୁକାଦି ମୁଖରୁ ବିପକ୍ଷର ବୈଶିଷ୍ଟ୍ୟ ଶ୍ରବଣରେ ନାୟିକାଠାରେ ଜାତ ମାନ ଶ୍ରୁତମାନ କୁହାଯାଏ । ବିଶାଖାଠାରୁ ପ୍ରତିପକ୍ଷ ନାୟିକା ଚନ୍ଦ୍ରାବଳୀର ଗୌରିପୂଜା ବିଷୟ ଶ୍ରବଣରେ ଶ୍ରୀରାଧାଙ୍କର ମାନ ଏହି ପର୍ଯ୍ୟାୟଭୁକ୍ତ ।

**ଅନୁମିତ**—ଭୋଗାଙ୍କ ଦର୍ଶନ ଅର୍ଥାତ୍ ନାୟକ କିମ୍ବା ବିପକ୍ଷ ନାୟିକା ଗାତ୍ରରେ ସମ୍ଭୋଗ ଚିହ୍ନ ଦର୍ଶନ, ଗୋତ୍ର ସ୍ଖଳନ ଅର୍ଥାତ ନାୟକ ମୁଖରେ ବିପକ୍ଷ ନାୟିକାର ନାମ ଉଚ୍ଚାରଣ ଏବଂ ସ୍ୱପ୍ନ ହେତୁ ଅର୍ଥାତ୍ ସ୍ୱପ୍ନରେ ନାୟକ ସହିତ ବିପକ୍ଷ ନାୟିକାର ସମ୍ଭୋଗ ଦର୍ଶନ ଭେଦରେ ଏହା ତ୍ରିବିଧ । ଏହି ତିନି ଅନୁମାନକୁ ସତ୍ୟ ମନେକରି ନାୟିକାଠାରେ ଜାତ ମାନକୁ ଏହି ପର୍ଯ୍ୟାୟରେ ଗ୍ରହଣ କରାଯାଇଥାଏ ।

**ଦୃଷ୍ଟ (ଦର୍ଶନ)**—ନାୟକ ସହିତ ପ୍ରତିପକ୍ଷ କାମିନୀର ମିଳନ ଦର୍ଶନରେ ନାୟିକାଠାରେ ଏହି ମାନ ଜାତ ହୁଏ । କୃଷ୍ଣ ଓ ଚନ୍ଦ୍ରାବଳୀଙ୍କର ମିଳନ ରାଧାଙ୍କ ମନରେ ଏହି ମାନ ଜାତ କରାଇଥାଏ ।

**ନିର୍ହେତୁ ମାନ**—କୌଣସି କାରଣ ନଥାଇ ବା କାରଣାଭାସ ଯୋଗେ ନାୟିକାଠାରେ ଜାତ ମାନକୁ ନିର୍ହେତୁ ମାନ କୁହାଯାଏ । ପଣ୍ଡିତମାନଙ୍କ ମତରେ ସହେତୁମାନ ହେଉଛି ପ୍ରଣୟର ପରିଣାମ ଓ ନିର୍ହେତୁମାନ ହେଉଛି ପ୍ରଣୟର ବିଳାସାତିଶୟ ରୂପ ବୈଭବ । ଉପର୍ଯ୍ୟୁକ୍ତ ସହେତୁମାନ ଓ ନିର୍ହେତୁମାନକୁ ପଣ୍ଡିତଗଣ ଯଥାକ୍ରମେ ଈର୍ଷ୍ୟାମାନ ଓ ପ୍ରଣୟମାନ କହିଥାନ୍ତି । ନିର୍ହେତୁମାନର ବ୍ୟଭିଚାରୀ ଭାବଗୁଡ଼ିକ ହେଉଛି, ଅବହିତ୍ଥା, ଅମର୍ଷ, ଅସୂୟା ଏବଂ ଗର୍ବ । ଏହା

ଶ୍ରୀକୃଷ୍ଣମାନ, ଶ୍ରୀକୃଷ୍ଣ-ପ୍ରିୟାଙ୍କର ମାନ ଓ ଯୁଗପତ୍ ଉଭୟଙ୍କର ମାନ ଭେଦରେ ଅବତାରଣା କରାଯାଇଥାଏ । ନହେତୁମାନ ଉଦୟର କାରଣକୁ କାବ୍ୟକାରମାନେ ତିନ ଭାଗରେ ଗ୍ରହଣ କରିଛନ୍ତି । ଯଥା-୧-ବହୁ ପୁରୁଷଙ୍କ ସହିତ ନାୟକର ସଦ୍‌ଭାବ ଓ ଧନଦାନ, ୨-ଯୁବାନାଗ ପଥରେ ନାୟକର ଗତିହେତୁକ ନାୟିକା ମନରେ ସନ୍ଦେହ ଉଦ୍ରେକ ଓ ୩-ନାୟିକା ନିକଟରେ ଅନ୍ୟ ଯୁବତୀର ପ୍ରଶଂସା । ଏ ସମସ୍ତ କାରଣ ମିଥ୍ୟା ବୋଲି ନାୟିକାର ହୃଦ୍‌ବୋଧ ହେଲେ ଏହି ମାନ ଶାନ୍ତ ହୋଇଥାଏ । ପ୍ରଣୟ-ମାନକୁ ପଣ୍ଡିତମାନେ ପୁନଶ୍ଚ ଦୈନ୍ୟଜା, ଭଙ୍ଗିଜା ଓ ଭ୍ରମଜା ଭେଦରେ ବିଭକ୍ତ କରିଛନ୍ତି । ଏଗୁଡିକ ବୈଷ୍ଣବ ସାହିତ୍ୟରେ ପ୍ରାୟ ଗୌଣ ହୋଇ-ଥିବାରୁ ସେସବୁର ବର୍ଣ୍ଣନା ଏଠାରେ ଦିଆଯାଉନାହିଁ ।

**ସହେତୁ ମାନ ଉପଶମର ଉପାୟ :**

'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥରେ ସହେତୁମାନ ଉପଶମନର ଛଅଟି ଉପାୟ ଉଲ୍ଲେଖ କରାଯାଇଛି । ଯଥା—

୧ । **ସାମ**—ପ୍ରିୟବାକ୍ୟ ଦ୍ୱାରା ନାୟିକାର ସନ୍ତୋଷ ବିଧାନକୁ 'ସାମ' କୁହାଯାଏ ।

୨ । **ଭେଦ**—ଭଙ୍ଗୀଦ୍ୱାରା ସ୍ୱମାହାତ୍ମ୍ୟ ପ୍ରକାଶ ଓ ସଖୀ ବା ଦୂତୀ ଉପାଲମ୍ଭ (ଦୋଷାର୍ପଣ ପୂର୍ବକ ହିତୋକ୍ତି) ଏହି ଦୁଇପ୍ରକାରର ନୀତିକୁ ଭେଦ କୁହାଯାଇଥାଏ ।

୩ । **ଦାନ**—ଭୂଷଣାଦି ପ୍ରଦାନ ଦ୍ୱାରା ନାୟିକାର ମାନଭଞ୍ଜନ ହିଁ ଦାନ ।

୪ । **ନତି**—ଦୈନ୍ୟ ଭାବ ଅବଲମ୍ବନ ପୂର୍ବକ ନାୟକ ନାୟିକାର ଚରଣ ତଳେ ପଡ଼ିବା ହେଉଛି ନତି ।

୫ । **ଉପେକ୍ଷା**—ମାନଭଞ୍ଜନର ସମସ୍ତ ଉଦ୍ୟମ ବ୍ୟର୍ଥ ହେଲେ ନାୟକ ଉପେକ୍ଷାରେ ଆଶ୍ରୟ ନେଇଥାଏ ।

୬ । **ରସାନ୍ତର**—ଅକସ୍ମାତ୍ ଉତ୍ପନ୍ନ ଭୟାଦି ହେତୁ ନାୟୀକାର ମାନଭଞ୍ଜନକୁ ରସାନ୍ତର କୁହାଯାଏ । ଏହି ରସାନ୍ତର ପୁନଶ୍ଚ ଦୁଇପ୍ରକାର ।

ଯଥା—ଯାଦୃଚ୍ଛିକ ରସାନ୍ତର ଓ ବୁଦ୍ଧିପୂର୍ବ ରସାନ୍ତର । ଆକସ୍ମିକ ବିପଦର ଉପୁଚରେ ନାୟିକାର ମାନଭଞ୍ଜନ ଘଟିଲେ ତାହା ଯାଦୃଚ୍ଛିକ ରସାନ୍ତର ହୁଏ । କିନ୍ତୁ ନାୟକ ବୁଦ୍ଧିପ୍ରୟୋଗ କରି କାଠ ବା ସର୍ପାଘାତ ଘଟିବାର ଛଳନାରେ ନିଜେ ବ୍ୟଥିତା ହେଲେ ନାୟିକାର ମାନଭଞ୍ଜନକୁ ବୁଦ୍ଧିପୂର୍ବ ରସାନ୍ତର କୁହାଯାଏ ।

ମାନୋପଶମର ଏହି ଷଡବିଧ ଉପାୟ ବ୍ୟତୀତ ବୈଷ୍ଣବ ସାହିତ୍ୟରେ ବୃନ୍ଦାବନ ଭ୍ରମଣ, ଚନ୍ଦ୍ର ଚର୍ଚ୍ଚିତ ରାତି ଓ ମୁରଲୀଧ୍ୱନି ଶ୍ରବଣ ଶ୍ରୀରାଧାଙ୍କ ମାନଭଞ୍ଜନର ଗୋଟିଏ ଲେଖାଏଁ ଉପାୟ ଭାବେ ଗୃହୀତ ହୋଇଛି । ଏହିସବୁ ମାନବ୍ୟତୀତ କେତେକ ବୈଷ୍ଣବ କାବ୍ୟରେ ମଧ୍ୟ ନାୟିକା ଭେଦରେ ମାନ ଓ ତାହାର ଉପଶମନର ଉପାୟ ବର୍ଣ୍ଣିତ ହେବାର ଦେଖାଯାଇଥାଏ ।

୩ । **ପ୍ରେମବୈଚିତ୍ତ୍ୟ**–'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥରେ କୁହାଯାଇଛି, 'ପ୍ରେମୋତ୍କର୍ଷ ହେତୁ ପ୍ରିୟତମ ନିକଟରେ ଥାଇ ସୁଦ୍ଧା ବିରହ ଭୟଜନିତ ଆର୍ତ୍ତିକୁ ପ୍ରେମବୈଚିତ୍ତ୍ୟ କୁହାଯାଇଥାଏ । (ଶୃଙ୍ଗାରଭେଦ ପ୍ରକରଣ ଶ୍ଳୋ-୧୪୮) ଅଭିମନ୍ୟୁଙ୍କ 'ପ୍ରେମଚିନ୍ତାମଣି'ରେ ଏହାର ଏକ ସୁନ୍ଦର ଉଦାହରଣ ଦେଖିବାକୁ ମିଳେ, ଯେଉଁଠି କୃଷ୍ଣଙ୍କ ସହିତ ଶ୍ରୀରାଧା ପ୍ରେମ ସଦନରେ ଥାଇ ହଠାତ୍ କଂସଦୂତ ଶ୍ରୀକୃଷ୍ଣଙ୍କୁ ଧରିନେବାର ଆଶଙ୍କାରେ ବ୍ୟଥିତା ହୋଇ ବିରହ ଦୁଃଖରେ ବିଳାପ କରିଛନ୍ତି । (୭୫।୪୫-୫୭)

୪ । **ପ୍ରବାସ**–ପ୍ରବାସସ୍ଥିତ ନାୟକ ହେତୁ ନାୟିକାଠାରେ ବିପ୍ରଲମ୍ଭ ଶୃଙ୍ଗାର ରସର ସଞ୍ଚାର ଘଟିଥାଏ । ଅବସ୍ଥିତିର ଦୂରତା ନେଇ ଏହି ପ୍ରବାସ ମଧ୍ୟ ବିଭିନ୍ନ ପ୍ରକାରର ହୋଇଥାଏ । ନାୟକ ପ୍ରବାସରେ ରହିଥିବାରୁ ନାୟିକା ବିରହ ଦୁଃଖରେ ଜର୍ଜରିତା ହୋଇଉଠେ । ଫଳରେ ବିପ୍ରଲମ୍ଭ ଶୃଙ୍ଗାର ରସର ସଞ୍ଚାର ଘଟିଥାଏ ।

## ସମ୍ଭୋଗ ଶୃଙ୍ଗାର :

ନାୟକ ଓ ନାୟିକାଙ୍କର ଦର୍ଶନ, ଆଲିଙ୍ଗନ, ସମ୍ଭାଷଣ ଓ ସ୍ପର୍ଶାଦିର ଯେଉଁ ପରସ୍ପର ସୁଖ ତାତ୍ପର୍ଯ୍ୟମୂଳକ ନିଷେବଣ ଏବଂ ତଦ୍ଦ୍ୱାରା

ଉଲ୍ଲାସପ୍ରାପ୍ତ ଭାବକୁ ସମ୍ଭୋଗ କୁହାଯାଇଥାଏ । ଏହା ମୁଖ୍ୟ ସମ୍ଭୋଗ ଓ ଗୌଣ ସମ୍ଭୋଗ ଭେଦରେ ଦ୍ୱିବିଧ ।

**ମୁଖ୍ୟ ସମ୍ଭୋଗ**–ଜାଗ୍ରତାବସ୍ଥାରେ ଜାତ ସମ୍ଭୋଗର ନାମ ମୁଖ୍ୟ ସମ୍ଭୋଗ । ଏହା ପୁନଶ୍ଚ ଚତୁର୍ବିଧ । ଯଥା—ସଂକ୍ଷିପ୍ତ, ସଙ୍କୀର୍ଣ୍ଣ, ସମ୍ପନ୍ନ ଓ ସମୃଦ୍ଧିମାନ୍, ସମ୍ଭୋଗ ।

**(କ) ସଂକ୍ଷିପ୍ତ ସମ୍ଭୋଗ**–ପୂର୍ବରାଗ ପରେ ନାୟକ ନାୟିକାଙ୍କର ପ୍ରଥମ ମିଳନରେ ସମ୍ଭ୍ରମ ଓ ଲଜ୍ଜାଦି ହେତୁ ସେମାନଙ୍କ ମଧ୍ୟରେ ସଂକ୍ଷିପ୍ତ ଚୁମ୍ବନ ଓ ଆଲିଙ୍ଗନକୁ ସଂକ୍ଷିପ୍ତ ସମ୍ଭୋଗ କୁହାଯାଇଥାଏ ।

**(ଖ) ସଂକୀର୍ଣ୍ଣ ସମ୍ଭୋଗ**–ଯେଉଁ ସମ୍ଭୋଗରେ ନାୟକକୃତ ବଞ୍ଚନାର ସ୍ମରଣହେତୁ, କେତେବେଳେ ଅବା ଉକ୍ତ ଚନ୍ଦ୍ରାଦିର ଦର୍ଶନ ଓ ଶ୍ରବଣ ହେତୁ ସୌରତ ଚେଷ୍ଟା ବିଷୟକ ଉପଚାର ସମୂହ ମିଶ୍ରିତ ହୋଇ ତପ୍ତ ଇକ୍ଷୁଭଳି ଯୁଗପତ୍ ଉଷ୍ଣତା ଓ ମାଧୁର୍ଯ୍ୟର ଆସ୍ୱାଦନ ପ୍ରଦାନ କରିଥାଏ, ତାହାକୁ ସଂକୀର୍ଣ୍ଣ ସମ୍ଭୋଗ କୁହାଯାଇଥାଏ । ଏହା ସାଧାରଣତଃ ମାନପରେ ଜାତ ହୋଇଥାଏ ।

**(ଗ) ସମ୍ପନ୍ନ ସମ୍ଭୋଗ**–କଞ୍ଚିତ୍ ଦୂର ପ୍ରବାସରୁ ସମାଗତ ନାୟକ ସହିତ ନାୟିକାର ମିଳନ ଘଟିଲେ ସମ୍ପନ୍ନ ସମ୍ଭୋଗ ହୁଏ ।

**(ଘ) ସମୃଦ୍ଧିମାନ ସମ୍ଭୋଗ**–ଏ ପ୍ରକାର ସମ୍ଭୋଗ ଦ୍ୱାରକାସ୍ଥିତ ଶ୍ରୀକୃଷ୍ଣଙ୍କ ପକ୍ଷେ ସମ୍ଭବ ହୋଇଥିବାରୁ ପ୍ରେମାଖ୍ୟାନମୂଳକ କୃଷ୍ଣକାବ୍ୟରେ ପରିଦୃଷ୍ଟ ହୁଏ ନାହିଁ । ତେଣୁ ସମୃଦ୍ଧିମାନ୍ ସମ୍ଭୋଗ କହିଲେ ଦ୍ୱାରକାସ୍ଥିତ କୃଷ୍ଣଙ୍କର ସମ୍ଭୋଗକୁ ବୁଝିବାକୁ ପଡ଼ିବ ।

**ଗୌଣ ସମ୍ଭୋଗ**–ଗୌଣ ସମ୍ଭୋଗକୁ 'ଉଜ୍ଜ୍ୱଳ ନୀଳମଣି'ଗ୍ରନ୍ଥରେ ଚାରିଭାଗରେ ବିଭକ୍ତ କରାଯାଇଛି । ଯଥା—ସ୍ୱପ୍ନେ ସଂକ୍ଷିପ୍ତ, ସ୍ୱପ୍ନେ ସଂକୀର୍ଣ୍ଣ ସ୍ୱପ୍ନେ ସମ୍ପନ୍ନ ଓ ସ୍ୱପ୍ନେ ସମୃଦ୍ଧିମାନ୍ । ଉପରେ ବର୍ଣ୍ଣିତ ଚାରି ମୁଖ୍ୟ ସମ୍ଭୋଗ ଯେତେବେଳେ ସ୍ୱପ୍ନ ମଧ୍ୟରେ ସାଧିତ ହୋଇଥାଏ, ସେତେବେଳେ ଗୌଣ ସମ୍ଭୋଗ ହୋଇଥାଏ ।

**ସମ୍ଭୋଗର ଅନୁଭାବ ସମୂହ :**

ପୂର୍ବୋକ୍ତ ଚାରିପ୍ରକାର ସମ୍ଭୋଗର ଜ୍ଞାପକଭାବେ ଯେଉଁ ଅନୁଭାବ-ଗୁଡ଼ିକ ପ୍ରକାଶିତ ହୋଇଥାନ୍ତି, ସେଗୁଡ଼ିକୁ ନିମ୍ନରେ ଦର୍ଶାଇ ଦିଆଗଲା ।

୧ । **ସନ୍ଦର୍ଶନ**–ନାୟକ ନାୟିକାଙ୍କର ପରସ୍ପର ଦର୍ଶନରେ ପ୍ରକାଶିତ ଔତ୍ସୁକ୍ୟ ଓ ଲଜ୍ଜାହୀନତା ଭାବକୁ ସନ୍ଦର୍ଶନ କୁହାଯାଏ ।

୨ । **ଜଳ୍ପ**–ପରସ୍ପର ଆଳାପ ଓ ଅସତ୍ୟ ଭାଷଣର ନାମ ଜଳ୍ପ ।

୩ । **ସ୍ପର୍ଶନ**–ଶ୍ରୀକୃଷ୍ଣଙ୍କର ସ୍ପର୍ଶଲାଭରେ ଶ୍ରୀରାଧାଙ୍କଠାରେ ଜାତ କମ୍ପାଦି ସାତ୍ତ୍ୱିକ ବିକାର ଦ୍ୱାରା ପ୍ରକାଶିତ ଅଙ୍ଗ ବୈଲକ୍ଷଣକୁ ଅବହିତ୍ଥା କ୍ରମେ ଶପଥକରି ବାକ୍ୟରେ ତାହାର ମର୍ମ ଉଦ୍‌ଘାଟନ କଲେ ତାହାକୁ ସ୍ପର୍ଶନ କୁହାଯାଏ ।

୪ । **ଲୀଳାଚୌର୍ଯ୍ୟ**–ଲୀଳାଚୌର୍ଯ୍ୟ ନିମ୍ନ ପ୍ରସଙ୍ଗଗୁଡ଼ିକୁ ନେଇ ପ୍ରକାଶଲାଭ କରିଥାଏ ଯଥା—ବଂଶୀଚୋରି, ବସ୍ତ୍ରଚୋରି, ପୁଷ୍ପଚୋରି, ଦାନକେଳି, କୁଞ୍ଜାଦିଲୀନତା (କୁଞ୍ଜ ମଧ୍ୟରେ ଆତ୍ମଗୋପନ), ମଧୁପାନ, ବଧୂବେଶଧୃତ (ଶ୍ରୀକୃଷ୍ଣଙ୍କର ଶବରଣୀ, ନାପିତୁଣୀ, ମାଳୁଣୀ, କାଚରାଣୀ-ପ୍ରଭୃତି କପଟ ବେଶ ଧାରଣ), ଅଭିମନ୍ୟୁ ବେଶ ଧାରଣ (ଚନ୍ଦ୍ରସେଣା ବେଶ ଧାରଣ), କପଟସୁପ୍ତି (କପଟ ନିଦ୍ରା), ଦ୍ୟୁତକ୍ରୀଡ଼ା, ପଟ୍ଟାକୃଷ୍ଟି (କାମ-ଜ୍ୱାଳାରେ ଶ୍ରୀରାଧାଙ୍କର ବସ୍ତ୍ର ଟାଣିବା), ଚୁମ୍ବନ, ଆଲିଙ୍ଗନ, ନଖକ୍ଷତ, ବିମ୍ବାଧର ସୁଧାପାନ, ସମ୍ପ୍ରଯୋଗ (ରତିର କାମ ଶାସ୍ତ୍ରୀୟ ବର୍ଣ୍ଣନା) ।

୫ । **ବର୍ତ୍ମରୋଧନ**–ନାୟକ ନାୟିକାଙ୍କ ମଧ୍ୟରେ ସାମୟିକ କ୍ରିୟା ପ୍ରତିକ୍ରିୟାରେ କେହି ବାଟଭାଙ୍ଗି ପଳାଇବା କାଳରେ ପଥରୋଧ କରିବା । ଏହା ସେମାନଙ୍କର ପ୍ରେମର ସୌନ୍ଦର୍ଯ୍ୟ ଓ ମସୃଣତାକୁ ବୃଦ୍ଧି କରିଥାଏ ।

୬ । **ରାସ**–ଶ୍ରୀକୃଷ୍ଣଙ୍କ ସହିତ ଗୋପୀମାନଙ୍କର ରସମୟ ବର୍ଣ୍ଣନା ।

୭ । **ବୃନ୍ଦାବନ କ୍ରୀଡ଼ା**–ରାଧା କୃଷ୍ଣଙ୍କର ବୃନ୍ଦାବନ ଭ୍ରମଣ ଓ ବିଭିନ୍ନ କ୍ରୀଡ଼ା ।

୮ । **ଯମୁନା କେଳି**–ସଖୀମାନଙ୍କ ସହିତ ରାଧା କୃଷ୍ଣଙ୍କର ଯମୁନାରେ ଜଳକେଳି କରିବା ।

୯ । **ନାବକେଳି**–ରାଧା, କୃଷ୍ଣ ଓ ଗୋପାଙ୍ଗନାମାନଙ୍କର ନାବ-କେଳି ।

ଏହିସବୁ ଅନୁଭାବଗୁଡ଼ିକ ରାଧାକୃଷ୍ଣଙ୍କର ଲୀଳା ବିଳାସ ମଧ୍ୟରେ ଆତ୍ମପ୍ରକାଶ କରିଥାନ୍ତି । ତେଣୁ କବିମାନେ ଏ ସବୁକୁ ପ୍ରେମାଖ୍ୟାନ ମୂଳକ କୃଷ୍ଣକାବ୍ୟରେ ବର୍ଣ୍ଣନା କରିଅଛନ୍ତି ।

ଉପରେ ବର୍ଣ୍ଣିତ ଶୃଙ୍ଗାର ରସ ବ୍ୟତୀତ ଚୈତନ୍ୟ ସମ୍ପ୍ରଦାୟର କୃଷ୍ଣକାବ୍ୟ ମାନଙ୍କରେ ଶାନ୍ତ, ଦାସ୍ୟ, ସଖ୍ୟ ଓ ବାତ୍ସଲ୍ୟାଦି ରସର କ୍ଷୀଣ ପ୍ରବାହକୁ ଲକ୍ଷ୍ୟ କରାଯାଇଥାଏ । ଚୈତନ୍ୟପନ୍ଥୀ ବୈଷ୍ଣବମାନେ ଶୃଙ୍ଗାର ରସକୁ ପ୍ରାଧାନ୍ୟ ଦେଇଥିବାରୁ ଏଗୁଡ଼ିକ କାବ୍ୟ ମଧ୍ୟରେ ଗୌଣ ହୋଇ-ପଡ଼ିଥିଲେ ହେଁ ସଂକ୍ଷିପ୍ତ ପରିସର ମଧ୍ୟରେ ସେ ସବୁ ରସର ସରସ ପରିବେଷଣ ପ୍ରତ୍ୟେକ ରସପ୍ରାଣ ବ୍ୟକ୍ତିକୁ ବିମୋହିତ କରିଥାଏ । ତେଣୁ ଏଠାରେ ଏହି ସବୁ ରସର ସଂକ୍ଷିପ୍ତ ସୂଚନା କେବଳ ପ୍ରଦତ୍ତ ହେଉଛି ।

**ଦାସ୍ୟରତି**–ବୈଷ୍ଣବ କାବ୍ୟମାନଙ୍କରେ ଦାସ୍ୟରତିର ବର୍ଣ୍ଣନା ଅତ୍ୟନ୍ତ ସୀମିତ ଓ ସଂକୀର୍ଣ୍ଣ । ଦ୍ୱାରକା ଓ ଗୋପପୁରର ଅନେକ ବ୍ୟକ୍ତିଙ୍କୁ 'ଉଜ୍ଜ୍ୱଳ ନୀଳମଣି' ଗ୍ରନ୍ଥରେ ଦାସ୍ୟରତି ଉପାସକଭାବେ ଗ୍ରହଣ କରାଯାଇଛି ।

**ସଖ୍ୟଭକ୍ତିରସ**–ସଖ୍ୟଭକ୍ତି ରସ ସମ୍ପର୍କରେ ସୂଚନା ଦେବା ପୂର୍ବରୁ ପ୍ରଥମେ ସଖାମାନଙ୍କର ବିଷୟରେ ଜାଣିବା ଦରକାର । ଶ୍ରୀକୃଷ୍ଣଙ୍କର ବୟସ୍ୟଗଣ, ଯେଉଁମାନେକି ରୂପ, ଗୁଣ, ବେଶାଦିରେ ଶ୍ରୀକୃଷ୍ଣଙ୍କ ସହିତ ସମାନ ସେମାନଙ୍କୁ ସଖା କୁହାଯାଇଥାଏ । ବୈଷ୍ଣବ ଶାସ୍ତ୍ରରେ ଏହି ସଖାମାନେ ଚାରିଭାଗରେ ଗୃହୀତ । ଯଥା—ସୁହୃଦ୍, ସଖା, ପ୍ରିୟସଖା ଓ ପ୍ରିୟ ନର୍ମସଖା ।

**ସୁହୃଦ୍**–ଏମାନଙ୍କଠାରେ ସଖ୍ୟଭାବ ସହିତ ବାତ୍ସଲ୍ୟ ଭାବ ମିଶ୍ରିତ ହୋଇଥାଏ । ଏମାନେ ଶ୍ରୀକୃଷ୍ଣଙ୍କଠାରୁ ସାମାନ୍ୟ ବୟସାଧିକ୍ୟ ଅଟନ୍ତି ।

ଦରକାରବେଳେ ଏମାନେ ଅସ୍ତ୍ରଧାରଣ କରି କୃଷ୍ଣଙ୍କୁ ଦୁଷ୍ଟମାନଙ୍କଠାରୁ ରକ୍ଷା କରିଥାନ୍ତି । ସୁଭଦ୍ର, ମଣ୍ଡଳୀ ଭଦ୍ର, ଭଦ୍ର ବର୍ଦ୍ଧନ, ଗୋଭଟ୍ଟ, ଭଦ୍ରାଙ୍ଗ, ବୀରଭଟ୍ଟ ଓ ବଳଭଦ୍ରାଦି ଏହି ଶ୍ରେଣୀ ଅନ୍ତର୍ଭୁକ୍ତ । କର୍ତ୍ତବ୍ୟା-କର୍ତ୍ତବ୍ୟ ସମ୍ବନ୍ଧରେ ଉପଦେଶ ପ୍ରଦାନ, ହିତ କାର୍ଯ୍ୟରେ ପ୍ରବର୍ତ୍ତନ ଓ ସମସ୍ତ କାର୍ଯ୍ୟରେ ଅଗ୍ରସର ହେବା ଏମାନଙ୍କ କାର୍ଯ୍ୟ ।

**ସଖା**–ଯେଉଁମାନେ କନିଷ୍ଠ ତୁଲ୍ୟ ଏବଂ ପ୍ରୀତି ଗନ୍ଧ ସଖ୍ୟ ବଶିଷ୍ଟ, ତାହାକୁ ସଖା କୁହାଯାଇଥାଏ । ବିଶାଳ ବୃଷଭ, ଓଜସ୍ୱୀ, ଦେବପ୍ରସ୍ଥ, ବରୂଥପ, ମରନ୍ଦ, କୁସୁମପୀଡ, ମଣିବନ୍ଧ ଓ କରନ୍ଧମ ଆଦି ଏହି ଶ୍ରେଣୀୟ, ତାମ୍ବୁଲ ଅର୍ପଣ, ତିଳକ ନିର୍ମାଣ, ଚନ୍ଦନ-ଚର୍ଚ୍ଚା, ଇତ୍ୟାଦି ଏମାନଙ୍କର କାର୍ଯ୍ୟ ।

**ପ୍ରିୟସଖା**–ଏମାନଙ୍କର ବୟସ କୃଷ୍ଣଙ୍କର ବୟସ ସହିତ ସମାନ । ଶ୍ରୀଦାମ, ସୁଦାମ, ବସୁଦାମ, ସ୍ତୋକକୃଷ୍ଣ ପ୍ରଭୃତି ଏହି ଶ୍ରେଣୀୟ । ବିଭିନ୍ନ କ୍ରୀଡାଦ୍ୱାରା ଶ୍ରୀକୃଷ୍ଣ ମନୋରଞ୍ଜନ କରିବା ଏମାନଙ୍କ କାର୍ଯ୍ୟ ।

**ପ୍ରିୟନର୍ମ ସଖା**–ପୂର୍ବୋକ୍ତ ସଖାମାନଙ୍କଠାରୁ ଏମାନେ ଶ୍ରେଷ୍ଠ । କୃଷ୍ଣଙ୍କର ଅତ୍ୟନ୍ତ ଗୋପନୀୟ କାର୍ଯ୍ୟରେ ଏମାନେ ନିଯୁକ୍ତ ଥାଆନ୍ତି । ସୁବଳ, ଅର୍ଜ୍ଜୁନ (କ୍ଷତ୍ରିୟ ଅର୍ଜ୍ଜୁନ ନୁହନ୍ତି), ଗନ୍ଧର୍ବ, ବସନ୍ତ ଓ ଉଜ୍ଜ୍ୱଳ ଆଦି ଏହି ଶ୍ରେଣୀ ଅନ୍ତର୍ଭୁକ୍ତ ।

ଏହି ସମସ୍ତ ସଖାମାନଙ୍କ ମଧ୍ୟରୁ କେହି କେହି ମନ୍ତ୍ରୀଭଳି ସେବା-କରିଥାନ୍ତି, କେହି କେହି ବିଦୂଷକଭଳି କୃଷ୍ଣଙ୍କୁ ହସାଇଥାନ୍ତି, ଆଉ କେହି କେହି ବାକ୍‌ଭଙ୍ଗୀ ଦ୍ୱାରା କୃଷ୍ଣଙ୍କର ସୁଖ ବିଧାନ କରିଥାନ୍ତି । ଏମାନେ ସମସ୍ତେ ସୁମିଷ୍ଟ, ସତ୍ୟଭାଷୀ ।

ସଖ୍ୟ ଭକ୍ତିରସର ବିଷୟାଲମ୍ବନ ହେଉଛନ୍ତି ହରି ଓ ଆଶ୍ରୟାଲମ୍ବନ ହେଉଛନ୍ତି ତାଙ୍କର ବୟସ୍ୟଗଣ । ଶ୍ରୀହରିଙ୍କର ବୟସ, ରୂପ, ଶୃଙ୍ଗ, ବେଣୁ, ଶଙ୍ଖ, ବିନୋଦନର୍ମ, ପରାକ୍ରମାଦିଗୁଣ, ତାଙ୍କର ପ୍ରିୟଜନ, ରାଜା ଏବଂ ରାଜ୍ୟ ପ୍ରଭୃତି ଏହି ରସର ଉଦ୍ଦୀପନ ବିଭାବ । କନ୍ଦୁକକ୍ରୀଡା, ବାହୁଯୁଦ୍ଧ, ଦ୍ୟୂତ-କ୍ରୀଡା, ସ୍କନ୍ଧାରୋହଣ, ଯଷ୍ଟିକ୍ରୀଡା, କୃଷ୍ଣଙ୍କ ସହିତ ଏକତ୍ର ଉପବେଶନ ଓ ଶୟନ, ହାସପରିହାସାଦି ଏହାର ଅନୁଭାବ । ଏହି ଭକ୍ତି ରସର ଆଷ୍ଟସାତ୍ତ୍ୱିକ ଭାବ ପ୍ରକାଶଲାଭ କରିଥାନ୍ତି । କୃଷ୍ଣ ବିଷୟକ ଔଗ୍ର୍ୟ, ତ୍ରାସ ଏବଂ ଆଳସ୍ୟ ଏହି ତିନୋଟି ବ୍ୟତୀତ ଅନ୍ୟ ସମସ୍ତ ବ୍ୟଭିଚାରୀ ଭାବଗୁଡିକ ଏଥିରେ ଉଦୟ

ହୋଇଥାଏ । ଶ୍ରୀକୃଷ୍ଣଙ୍କ ବିରହକାଳରେ ମଦ, ଗର୍ବ, ହର୍ଷ, ନିଦ୍ରା ଓ ଧୃତି ଏବଂ ମିଳନ ସମୟରେ ମୃତି, କ୍ଲମ, ବ୍ୟାଧି, ଅପସ୍ମାର ଓ ଦୀନତା ବ୍ୟତୀତ ଅନ୍ୟ ସମସ୍ତ ବ୍ୟଭିଚାରୀଭାବ ଏହି ରସରେ ପ୍ରକାଶିତ ହୋଇଥାଏ— '

**ବତ୍ସଳ ଭକ୍ତିରସ**–ବାତ୍ସଲ୍ୟ ନାମକ ସ୍ଥାୟୀଭାବ ବିଭାବାଦି-ଦ୍ୱାରା ପୁଷ୍ଟି ଲଭିକଲେ, ତାହାକୁ ବତ୍ସଳ ଭକ୍ତିରସ କୁହାଯାଏ । ଶ୍ରୀକୃଷ୍ଣ ଓ ଗୁରୁଜନବର୍ଗ ହେଉଛନ୍ତି ଏହି ରସର ଆଲମ୍ବନ । ଏମାନଙ୍କ ମଧ୍ୟରୁ ଶ୍ରୀକୃଷ୍ଣ ବିଷୟାଲମ୍ବନ ଓ ଗୁରୁଜନବର୍ଗ ଆଶ୍ରୟାଲମ୍ବନ । କୃଷ୍ଣଙ୍କର କୌମାରାଦି ବୟସ, ରୂପ, ବେଶ, ଶୈଶବ, ଚପଳତା, ଜଳ୍ପିତ, ସ୍ମିତ ଓ କ୍ରୀଡ଼ାଦି ଏହାର ଉଦ୍ଦୀପନ ବିଭାବ । ସେହିଭଳି ମସ୍ତକ ଆଘ୍ରାଣ, ହସ୍ତଦ୍ୱାରା ଅଙ୍ଗ-ମାର୍ଜନ, ଆଶୀର୍ବାଦ, ଆଦେଶଦାନ, ସ୍ନାନାଦି ଦ୍ୱାରା ଲାଳନ, ରକ୍ଷଣାଦି-ଦ୍ୱାରା ପ୍ରତିପାଳନ ଓ ହିତୋପଦେଶାଦି ହେଉଛି ଏହି ରସର ଅନୁଭାବ । ଚୁମ୍ବନ, ଆଲିଙ୍ଗନ, ନାମ ଆହ୍ୱାନ, ଆଦି ଏହାର ସାଧାରଣ କାର୍ଯ୍ୟ । ଅଷ୍ଟ ସାତ୍ତ୍ୱିକଭାବ ସହିତ ସ୍ତନ୍ୟର କ୍ଷୀରସ୍ରାବଣ ଏହି ରସର ସାତ୍ତ୍ୱିକଭାବ । ପ୍ରୀତି ଭକ୍ତିରସରେ ପ୍ରକାଶିତ ସମସ୍ତ ବ୍ୟଭିଚାରୀ ଭାବ ଏଥିରେ ପ୍ରକାଶଲାଭ କରିଥାଏ ।

ସମସ୍ତ ପ୍ରେମାଖ୍ୟାନ ମୂଳକ ବୈଷ୍ଣବୀୟ କାବ୍ୟ ସମୂହରେ ଉପରୋକ୍ତ ରସତତ୍ତ୍ୱର ବର୍ଣ୍ଣନା ଦେଖିବାକୁ ମିଳେ । ତାହା ଯେଭଳି ଭାବଗର୍ଭକ ସେହିଭଳି ରସଶାସ୍ତ୍ର ସମର୍ଥିତ । ଚୈତନ୍ୟ ପରମ୍ପରାର ସମସ୍ତ କବି ଉପରେ ବର୍ଣ୍ଣିତ ରସତତ୍ତ୍ୱକୁ ସ୍ୱକାବ୍ୟ ମଧ୍ୟରେ ଗ୍ରହଣ କରି ରାଧା କୃଷ୍ଣଙ୍କର ପ୍ରେମର ମାହାତ୍ମ୍ୟ ପ୍ରଖ୍ୟାପନ ପୂର୍ବକ ନିଜେ ଆତ୍ମବିଭୋର ହୋଇ ଉଠିଛନ୍ତି ।

(ଙ) **ଧାମତତ୍ତ୍ୱ** -

ଚୈତନ୍ୟ ପରମ୍ପରାରେ ଶ୍ରେଷ୍ଠଧାମ ହେଉଛି ବୃନ୍ଦାବନ । ଏହି ବୃନ୍ଦାବନର ପରିକଳ୍ପନା କରିବାକୁଯାଇ ବୈଷ୍ଣବ ଗୋସ୍ୱାମୀ କିଭଳି ଶାସ୍ତ୍ରୀୟ ଆଧାରକୁ ଗ୍ରହଣ କରିଛନ୍ତି, ତାହା ଲକ୍ଷ୍ୟ କରିବାର କଥା । ଚୈତନ୍ୟପନ୍ଥୀ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଭଗବାନ୍, ସଗୁଣ ତଥା ସର୍ବଶ୍ରେଷ୍ଠ ବ୍ରହ୍ମଭାବେ ଗ୍ରହଣ କରିଥାନ୍ତି । ତେଣୁ ଋଗ୍‌ବେଦରେ କୁହାଯାଇଛି ସେହି ଭଗବାନ୍, ଯେ ଅପ୍ରାକୃତ ଗୁଣବିଶିଷ୍ଟ, ତାଙ୍କର ଧାମ ହେଉଛି ଚିତ୍‌ଶକ୍ତିର

ବିଳାସ । (୧୦।୯) ପୁନଶ୍ଚ ଋଗ୍‌ବେଦରେ କୁହାଯାଇଛି ଯେ ବ୍ରହ୍ମଙ୍କର ଚତୁଷ୍ପାଦ ବିଭୂତିରୁ ଗୋଟିଏ ପାଦ ବିଭୂତି ଏ ଦୃଶ୍ୟମାନ୍ ବିଶ୍ୱ [ପ୍ରାକୃତ ଜଗତ]ରେ ପରିବ୍ୟାପ୍ତ ଏବଂ ତାଙ୍କର ଅନ୍ୟ ତିନିପାଦ ବିଭୂତି ଅମୃତ, ଅନଶ୍ୱର ଓ ଅପରିଣାମୀ (ଯାହା ପ୍ରାକୃତ ଜଗତରେ ପରିଣତ ହୁଏ ନାହିଁ ।) ଏଥିରେ ତାହାଙ୍କୁ 'ତଦ୍ ବିଷ୍ଣୋ ପରମଂ ପଦଂ ସଦା ପଶ୍ୟନ୍ତି ସୁରୟଃ' ବୋଲି କୁହାଯାଇଛି । (ଋଗ୍‌ବେଦ, ୧।୨୨।୨୦) ଋଗ୍‌ବେଦର ଏହି ଶ୍ଳୋକ ଦୁଇଟିରୁ ପରବର୍ତ୍ତୀ କାଳରେ ବିଷ୍ଣୁ ଏବଂ ପରବ୍ରହ୍ମ କୃଷ୍ଣଙ୍କର ଧାମ କଳ୍ପନା ଉଦ୍ଭୂତ ହୋଇଥିବାର ଦେଖାଯାଏ ।

ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ କୁହାଯାଇଛି "ଚିଚ୍ଛକ୍ତି ବିଭୂତି ଧାମ ତ୍ରିପାଦୈଶ୍ୱର୍ଯ୍ୟ ନାମ\ମାୟିକ ବିଭୂତି ଏକ ପାଦ ଅଭିଧାନ" (ମଧ୍ୟଲୀଳା, ୨୧\ପୃ ୫୯୭) ପଦ୍ମପୁରାଣର ଉତ୍ତରଖଣ୍ଡରେ ବର୍ଣ୍ଣିତ ଅଛି ଯେ, ଯେଉଁଠୁ ବ୍ରହ୍ମଙ୍କର ଏକପାଦ ବିଭୂତି ବିଶିଷ୍ଟ ପ୍ରାକୃତ ଜଗତର ସୀମା ଶେଷ ହୋଇଛି, ସେଠାରେ ବିରଜାନାମ୍ନୀ ନଦୀ, ଚତୁର୍ଦ୍ଦିଷ୍ଟ ମୂର୍ତ୍ତିମାନ ଦେବଗଣଙ୍କର ଅଙ୍ଗସ୍ୱେଦ ଜନିତ ଜଳରାଶିକୁ ନେଇ ପ୍ରବାହିତ ହେଉଛି । (୨୫୫।୫୭।୫୮) ତାହାପରେ ପରମବ୍ୟୋମ ନାମକ ଧାମ ବିରାଜିତ । × × ବିରଜା ନଦୀର ଅପରପାର୍ଶ୍ୱରେ ଥିବା ଏହି ପରମ ବ୍ୟୋମ ଧାମ ବ୍ରହ୍ମଙ୍କର ତ୍ରିପାଦ ବିଭୂତି ଯୁକ୍ତ । ଏହା ସନାତନ, ଅମୃତ, ଶାଶ୍ୱତ, ନିତ୍ୟ, ଅନନ୍ତ, ଶୁଦ୍ଧ ବା ଅପ୍ରାକୃତ ସତ୍ତ୍ୱମୟ, ଦିବ୍ୟ ଅକ୍ଷର ବ୍ରହ୍ମର ପଦ । ଅନେକ କୋଟି ସୂର୍ଯ୍ୟ ଓ ଅଗ୍ନିତୁଲ୍ୟ ତେଜୋମୟ ପ୍ରାପଞ୍ଚିକ ମାୟା ବିରଜାନଦୀ ବା କାରଣାବ୍ଧି ଅପର ପାର୍ଶ୍ୱରେ ଅବସ୍ଥାନ କରେ । ପରମ ବ୍ୟୋମକୁ ଏହା ସ୍ପର୍ଶ କରିପାରେ ନାହିଁ । (ଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ୨୦।ପୃ ୫୭୭)

ଏହି ପରମ ବ୍ୟୋମ ହିଁ ନାରାୟଣଙ୍କର ସ୍ଥାନ । ସେ ଶଙ୍ଖ-ଚକ୍ର ଗଦା ପଦ୍ମ-ହସ୍ତ ମହୈଶ୍ୱର୍ଯ୍ୟମୟ । ସେ ସମସ୍ତ ପ୍ରକାର ମୁକ୍ତିଦାତା । ବ୍ରହ୍ମ ସଂହିତାରେ ମଧ୍ୟ ବର୍ଣ୍ଣିତ ଅଛି, ଗୋଲୋକ ନାମ୍ନୀ ନିଜ ଧାମ ତଳେ ଯଥାକ୍ରମେ ହରିଧାମ, ମହେଶଧାମ ଓ ଦେବୀ ଧାମ ବିଦ୍ୟମାନ । (୫।୪୩) ବ୍ରହ୍ମ ସଂହିତାର ଏହି ମତ ଅବଲମ୍ବନରେ 'ଶ୍ରୀଚୈତନ୍ୟ ଚରିତାମୃତ'ରେ

କୁହାଯାଇଛି । ସେ ପାଧେ ବଇକୁଣ୍ଠ ଯୁକ୍ତ ପରମ ବ୍ୟୋମ ଧାମ ଉପରେ କୃଷ୍ଣ ଲୋକର ବିଭୂତି ବର୍ଣ୍ଣିତ । କୃଷ୍ଣ ଏକ ହେଲେ ହେଁ ତାଙ୍କର ତିନି ପ୍ରକାର ଲୋକ ରହିଛି । ଯଥା ଗୋକୁଳ, ମଥୁରା ଓ ଦ୍ୱାରକା ।(ମଧ୍ୟଲୀଳା, ୨୦।ପୃଃ୭୨) ପୁନଶ୍ଚ ଏହି ଗ୍ରନ୍ଥର ଏକବିଂଶ ପରିଚ୍ଛେଦରେ କୁହାଯାଇଛି, 'ପରମ ବ୍ୟୋମ ଧାମ ମଧ୍ୟରେ ସର୍ବୋତ୍କୃଷ୍ଟ ବିଶିଷ୍ଟ ଆନନ୍ଦ ଚିନ୍ମୟ ପାରିଷଦ ରୂପକ ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣ ଅନେକ ବୈକୁଣ୍ଠ ରହିଛି । ଏଗୁଡିକ ପରମ ବ୍ୟୋମ ରୂପ ପଦ୍ମପୁଷ୍ପର ବର୍ତ୍ତୁଳ ଦଳ ଭଳି । କୃଷ୍ଣ ଲୋକ ହେଉଛି ତାହାର କେଶର ସଦୃଶ । (ପୃଃ୯୧) କୃଷ୍ଣଲୋକ ମଧ୍ୟରେ ଥିବା ଗୋକୁଳ, ମଥୁରା ଓ ଦ୍ୱାରକା ମଧ୍ୟରୁ ଶ୍ରେଷ୍ଠ ହେଉଛି ଗୋକୁଳ ବା ବ୍ରଜଲୋକ ବା ବୃନ୍ଦାବନ । ( ତତ୍ରୈବ, ଲଧ୍ୟଲୀଳା, ୨୧।ପୃଃ୯୯ ) ଚୈତନ୍ୟପନ୍ଥୀ ବୈଷ୍ଣବ ଧର୍ମ ତତ୍ତ୍ୱରେ ଗୃହୀତ ଧାମଗୁଡିକର କ୍ରମ ହେଉଛି, ପ୍ରଥମେ ସର୍ବୋଚ୍ଚରେ କୃଷ୍ଣଲୋକ ଗୋକୁଳ, ଦକ୍ଷିଣରେ ମଥୁରା ଓ ତପରେ ଦ୍ୱାରକା । ଏହା ମଧ୍ୟରେ ଗୋକୁଳ ଶ୍ରେଷ୍ଠ, ଯାହାର ଅନ୍ୟନାମ ଗୋଲକ ।

## ଗୋକୁଳ ଧାମ ବା ନିତ୍ୟଧାମ ଗୋଲୋକ :

ଋଗ୍‌ବେଦରେ ବିଷ୍ଣୁଙ୍କୁ ଗୋପ ବୋଲି ସମ୍ବୋଧନ କରାଯାଇଥିବାର ଦେଖାଯାଏ । (୧।୨୨।୧୮) ଏହାଛଡା ଏଥିରେ ପୁଣି କୁହାଯାଇଛି, "ତୁମେ ସେଇ ବସ୍ତୁ (ଗୃହ ବା ଧାମ) ସମୂହ ପାଇବାକୁ ଇଚ୍ଛା କରୁଛ । ସେହି ଧାମରେ ଭୂରିଶୃଙ୍ଗ ବିଶିଷ୍ଟ ଗୋ ସକଳ ବାସ କରୁଛନ୍ତି । ଏହି ଭୂମିରେ ଉରୁଗାୟ (ବିଷ୍ଣୁ ବା ଭଗବାନ), ଯେ କୃଷ୍ଣ (ଯାହାଙ୍କର ଚରଣ ସମସ୍ତ ଅଭିଳାଷ ପୂରଣ କରେ) ଅଟନ୍ତି, ତାଙ୍କର ପରମ ପଦ ବହୁ ପ୍ରକାରରେ ପ୍ରକାଶମାନ ହୋଇଅଛି । (ତତ୍ରୈବ, ୧।୧୫୪।୧୮) ଶ୍ରୀକୃଷ୍ଣ ସନ୍ଦର୍ଭରେ ଶ୍ରୀଜୀବଗୋସ୍ୱାମୀ ଏହାର ବ୍ୟାଖ୍ୟା କରି ଏହାକୁ କୃଷ୍ଣଙ୍କର ନିବାସସ୍ଥଳ ପ୍ରପଞ୍ଚାତୀତ ଗୋଲୋକଧାମ ବୋଲି କହିଛନ୍ତି । [୧୧୭ ଅନୁଚ୍ଛେଦ] ସେ ପୁଣି କହିଛନ୍ତି, ବ୍ରହ୍ମ ସଂହିତା, ହରିବଂଶ, ମୋକ୍ଷଧର୍ମ ପ୍ରଭୃତି ଗ୍ରନ୍ଥରେ ଗୋ ସକଳର ସ୍ଥାନ ବୋଲି ଏହାର 'ଗୋଲୋକ' ନାମର ପ୍ରସିଦ୍ଧି ରହିଛି । (ତତ୍ରୈବ)

ଅତଏବ ଉପାଦାନରେ ଗଠିତ ପ୍ରାକୃତ ଜଗତ ଭଳି ଏହାର ଧ୍ୱଂସ ନାହିଁ । ଭଗବାନଙ୍କର ସ୍ୱରୂପ ଯେହେତୁ ସଦାସର୍ବଦା ବିଦ୍ୟମାନ, ତେଣୁ ଏହା ନିତ୍ୟ । ସେଥିପାଇଁ ଏହାକୁ ନିତ୍ୟଧାମ ବା ନିତ୍ୟ ଗୋଲକ ଧାମ କୁହାଯାଇଥାଏ । ଏହି ଧାମ ଗୁଣାତୀତ ମହାଧାମ ଏବଂ ପୂର୍ଣ୍ଣପ୍ରେମ ସ୍ୱରୂପ ଯେଉଁଠାରେ କୃଷ୍ଣାଦି ପୂର୍ଣ୍ଣ ଆନନ୍ଦାଶ୍ରୁ ବିସର୍ଜନ କରିଥାଆନ୍ତି । (ପଦ୍ମପୁରାଣ, ପାତାଳଖଣ୍ଡ, ୩୮/୭୧) ଚୈତନ୍ୟ ଚରିତାମୃତ'ରେ ଏହି ନିତ୍ୟଗୋଲକ ଗୋକୁଳ, ବ୍ରଜଲୋକ, ଶ୍ୱେତଦ୍ୱୀପ ଓ ବୃନ୍ଦାବନ ଭେବେ ବର୍ଣ୍ଣିତ । (ଆଦିଲୀଳା ୫।୧୭)

ପରମବ୍ୟୋମ ବା ବୈକୁଣ୍ଠାଦିଧାମ ହେଉଛି ଏହି ବୃନ୍ଦାବନର ଅଂଶ ବିଶେଷ ପଦ୍ମପୁରାଣର ପାତାଳଖଣ୍ଡରେ ଶ୍ରୀଭଗବାନଙ୍କ ମୁଖରେ କୁହାଯାଇଛି । "ମୋର ଏହି ମଥୁରା ନିତ୍ୟ; ବନ ନିତ୍ୟ, ବୃନ୍ଦାବନ ନିତ୍ୟ, ଯମୁନା ନିତ୍ୟ, ଗୋପ କନ୍ୟା ଓ ଗୋପବାଳକ ନିତ୍ୟ ।" (୪୨।୨୬)

## ମର୍ତ୍ତ୍ୟ ବୃନ୍ଦାବନ ବା ମର୍ତ୍ତ୍ୟ ଗୋଲକ

'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ କୁହାଯାଇଛି ।' ଭଗବାନ କୃଷ୍ଣ ଯେତେବେଳେ ବ୍ରହ୍ମାଣ୍ଡରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ତାଙ୍କ ଇଚ୍ଛାରେ ତାଙ୍କର ଧାମ ମଧ୍ୟ ବ୍ରହ୍ମାଣ୍ଡରେ ଆତ୍ମପ୍ରକାଶ କରିଥାଏ । ମର୍ତ୍ତ୍ୟରେ ବା ବ୍ରହ୍ମାଣ୍ଡରେ ପ୍ରକାଶିତ ଏହି ଧାମ ନିତ୍ୟ ଧାମଠାରୁ ଅଲଗା ନୁହେଁ । ଶ୍ରୀ ଜୀବଗୋସ୍ୱାମୀ ମଧ୍ୟ ଏହାକୁ ସ୍ୱୀକାର କରିଅଛନ୍ତି । ଏହାର କାରଣ ହେଉଛି, ଶ୍ରୀକୃଷ୍ଣ ଯେତେବେଳେ ବ୍ରହ୍ମାଣ୍ଡରେ ନିଜର ଲୀଳା ପ୍ରକାଶ କରିବାକୁ ଇଚ୍ଛା କରନ୍ତି ସେତେବେଳେ ତାଙ୍କର ଅପ୍ରାକୃତ ଲୀଳା ଓ ଅପ୍ରାକୃତ ଧାମର ପରିକରମାନଙ୍କୁ ଧାରଣ କରିବା ପାଇଁ ପ୍ରାକୃତ ଜଗତ ଅସମର୍ଥ ହୋଇପଡ଼ିଥାଏ । (ଶ୍ରୀକୃଷ୍ଣ ସନ୍ଦର୍ଭ ୧୭୪ ଅନୁଛେଦ) ତେଣୁ ନିତ୍ୟ ବୃନ୍ଦାବନର ସକଳ ପଦାର୍ଥ ମର୍ତ୍ତ୍ୟ ବୃନ୍ଦାବନରେ ପରିଦୃଷ୍ଟ ହୋଇଥାଆନ୍ତି ।

## ବୃନ୍ଦାବନର ବୈଚିତ୍ର୍ୟ ଓ ମହିମା

ଶ୍ରୀମଦ୍ ଭାଗବତ, ବ୍ରହ୍ମସଂହିତା, ପଦ୍ମପୁରାଣ, ସ୍କନ୍ଦପୁରାଣ,

ବ୍ରହ୍ମବୈବର୍ତ୍ତପୁରାଣ, ଗୋପାଳ ତାପିନୀ ପ୍ରଭୃତି ଗ୍ରନ୍ଥମାନଙ୍କରେ ବୃନ୍ଦାବନର ମାହାତ୍ମ୍ୟ---ସବିଶେଷ ବର୍ଣ୍ଣନା କରାଯାଇଛି । ଏହିସବୁ ଗ୍ରନ୍ଥର ପ୍ରାମାଣିକ ଆଧାର ଉପରେ ବୈଷ୍ଣବ ଗୋସ୍ୱାମୀମାନେ ତାଙ୍କର ବୃନ୍ଦାବନର ବୈଚିତ୍ର୍ୟ ବର୍ଣ୍ଣନା କରିଅଛନ୍ତି । ଶ୍ରୀମଦ୍ ଭାଗବତର ବର୍ଣ୍ଣନାନୁଯାୟୀ, 'ବୃନ୍ଦାବନ ନାମକ ବନ-ବୈକୁଣ୍ଠରେ ନୈଃଶ୍ରେୟସନାମକ ଏକ ବନ ଅଛି । ସେହି ବନର ବୃକ୍ଷ ସକଳ ବାସନାରୂପ ଫଳ ପ୍ରଦାନ କରନ୍ତି । ସେହି ବନ ମୂର୍ତ୍ତିମାନ୍ କୈବଲ୍ୟ ସଦୃଶ ଏବଂ ସବୁ ସମୟରେ ସମସ୍ତ ଋତୁରେ ଶୋଭା ସମ୍ପନ୍ନ ରହିଥାଏ । × × ଉପବନସ୍ଥ ସରୋବରର ଜଳମଧ୍ୟରେ ବିକଶିତ ମକରନ୍ଦ ଓ ସୁବାସଯୁକ୍ତ ମାଧବୀ ଫୁଲର ଗନ୍ଧକୁ ପବନ ଦୂରରେ ନିକ୍ଷିପ୍ତ କରିଥାଏ । ଯେଉଁ ବୈକୁଣ୍ଠରେ ଭୃଙ୍ଗ ଦମ୍ଭ ଗୁଞ୍ଜନ କରିବା ଆରମ୍ଭ କଲେ, ତାହାକୁ ଶୁଣି ସେଠାରେ ଥିବା ପାରା, କୋକିଳ, ମାଉସ ଚକ୍ରବାକ, ଡାହୁକ ହଂସ, ଶୁକ, ତିତ୍ତିରି ଓ ମୟୂରୀ ପ୍ରଭୃତି ପକ୍ଷୀଗଣ ସେହି ଭ୍ରମର ଗୁଞ୍ଜନକୁ ହରିକଥା ମନେକରି ନିଜର କୋଳାହଳକୁ ଶାନ୍ତ କରିଥାଆନ୍ତି' ଇତ୍ୟାଦି (୨/୯/୧୦)

'ବ୍ରହ୍ମସଂହିତାରେ ଏହି ନିତ୍ୟଗୋଲକ ସମ୍ବନ୍ଧରେ କୁହାଯାଇଛି । ଏଠାରେ ପରମ ଲକ୍ଷ୍ମୀ ସ୍ୱରୂପା ଶ୍ରୀକୃଷ୍ଣ ପ୍ରେୟସୀ ଶ୍ରୀ ବ୍ରଜସୁନ୍ଦରୀଗଣ କାନ୍ତାବର୍ଗ ଅଛନ୍ତି ଏବଂ ପରମପୁରୁଷ ସ୍ୱୟଂ ଭଗବାନ୍ ଶ୍ରୀପୁରୁଷୋତ୍ତମ ଶ୍ରୀ ଗୋବିନ୍ଦକାନ୍ତ ଅଛନ୍ତି । ସମସ୍ତ ପଦାର୍ଥ ପ୍ରଦାନ ସମର୍ଥ, ଯଥାର୍ଥ କଳ୍ପତରୁଗଣ ଏଠାରେ ବୃକ୍ଷ ସଦୃଶ ଅଛନ୍ତି । ଭୂମି ଚିନ୍ତାମଣି ତୁଲ୍ୟ ଅର୍ଥାତ୍ ତେଜୋମୟୀ ଓ ବାଞ୍ଛିତାର୍ଥ ପ୍ରଦାୟିନୀ । ଏଠାରେ ଜଳ ଅମୃତ ତୁଲ୍ୟ ସୁସ୍ୱାଦୁ । କଥା ଗାନ ତୁଲ୍ୟ ମଧୁର ଓ ସାଧାରଣ ଗତି ହେଉଛି ନୃତ୍ୟଭଳି ଚିତ୍ତାକର୍ଷକ । ବଂଶୀପ୍ରିୟସଖୀଗଣ ସ୍ୱରୂପ ଅଛନ୍ତି । + + + ଏଠାରେ ଶ୍ରୀକୃଷ୍ଣଙ୍କର ବଂଶୀଧ୍ୱନି ହେତୁ ଗାଭୀମାନଙ୍କଠାରୁ କ୍ଷୀରଧାରା ସ୍ରବିତ ହୋଇଥାଏ । ତାହା କ୍ଷୀରାବ୍ଧି ସ୍ୱରୂପ । ଏଠାରେ

ନମେଷାର୍ଦ୍ଧ ସମସ୍ତ ମଧ୍ୟ ଅନାବୃତ ହୁଏ ନାହିଁ । ଅର୍ଥାତ୍ ଏଠାରେ ମାୟାର ସ୍ପର୍ଶ ନାହିଁ । ଏହାକୁ ଶ୍ୱେତଦ୍ୱୀପ କୁହାଯାଇଥାଏ । ଶ୍ରୀଗୋବିନ୍ଦଙ୍କର ନିବାସସ୍ଥଳ ଏହି ଗୋଲୋକକୁ ଅତି ଅଳ୍ପ କେତେକ ପରମ ପ୍ରେମାବିଷ୍ଟ ବୈଷ୍ଣବ ସଜ୍ଜନବୃନ୍ଦ ଜାଣନ୍ତି । (୫।୫୬ ୫୮)

ଶ୍ରୀ ଜୀବଗୋସ୍ୱାମୀ ତାଙ୍କର ଶ୍ରୀକୃଷ୍ଣସନ୍ଦର୍ଭର ୧୦୬ ଅନୁବାକରେ କେତେକ ଶାସ୍ତ୍ରୀୟ ପ୍ରମାଣ ପ୍ରଦାନକରି ବୈକୁଣ୍ଠଲୋକ, ଦ୍ୱାରକା, ମଥୁରା, ଯମୁନା ପ୍ରଭୃତିର ସ୍ଥାନ ସମୂହରେ ବୃନ୍ଦାବନର ମାହାତ୍ମ୍ୟ ପ୍ରତିପାଦନ କରିଛନ୍ତି । ଏଥିରେ ଉଲ୍ଲେଖ ଅଛି ଶୁଦ୍ଧବ୍ୟକ୍ତି ସର୍ବଶେଷରେ ବିଳାସର ନିକେତନ ଭୂଷିତ ବୃନ୍ଦାବନକୁ ସ୍ମରଣ କରିବ । ସେହି ବୃନ୍ଦାବନ ନିତ୍ୟ ନୂତନ ପୁଷ୍ପଶୋଭିତ, ମୃଗ ସମାକୁଳ, ସ୍ୱରୂପାନୁଭୂତି ଜନିତ ଆନନ୍ଦଠାରୁ ଅଧିକାତର ସୁଖର ଅଭିବ୍ୟକ୍ତିକାରକ ବିଷୟପଞ୍ଚାତ୍ମକରେ ପରିପୂର୍ଣ୍ଣ, ସକଳ ଋତୁଜାତ ଫଳ ପୁଷ୍ପରେ ପରିପୂର୍ଣ୍ଣ । ସମସ୍ତ ଦିଗ ପ୍ରବାଳ ସମୂହରେ ପରିଶୋଭିତ ଜ୍ୟୋତ୍ସ୍ନାରେ ପରିପ୍ଲୁତ ଓ ଏଠାରେ କାଳିନ୍ଦୀ ଜଳସ୍ପର୍ଶୀ ବାୟୁର ମୃଦୁ ହିଲ୍ଲୋଳ ଅନୁଭୂତ ହୋଇଥାଏ । ଏହା ବହୁବୃକ୍ଷ ଓ ପକ୍ଷୀ ସମୂହରେ ସୁଶୋଭିତ ।

ବୃନ୍ଦାବନରେ ଶ୍ରୀରାଧାକୁଣ୍ଡ ସବୁଠାରୁ ପବିତ୍ର ସ୍ଥାନ ବୋଲି 'ଶ୍ରୀଚୈତନ୍ୟ ଚରିତାମୃତ'ରେ ବର୍ଣ୍ଣିତ ହୋଇଛି । ଶ୍ରୀଚୈତନ୍ୟ ମଧ୍ୟ ବୃନ୍ଦାବନ ଭ୍ରମଣ କଲାବେଳେ ଦୁଇ ଧାନବିଲ ମଧ୍ୟରେ ଥିବା ଅଳ୍ପ ପାଣିରେ (ଯାହାକି ରାଧାକୁଣ୍ଡର ସ୍ମାରକୀ) ସ୍ନାନକରି ରାଧାକୁଣ୍ଡର ସ୍ତବ କରିଥିଲେ—

'ସବ୍ ଗୋପୀ ହୈତେ ରାଧାକୃଷ୍ଣେର ପ୍ରେୟସୀ
ତୈଛେ ରାଧାକୃଷ୍ଣ ପ୍ରିୟ ପ୍ରିୟାର ସରସି ।'

ଶ୍ରୀଚୈତନ୍ୟଙ୍କ ଉକ୍ତି ଅନୁଯାୟୀ, 'ଏହି କୁଣ୍ଡରେ ଶ୍ରୀକୃଷ୍ଣ ପ୍ରତ୍ୟେକଦିନ ରାଧାଙ୍କ ସଙ୍ଗରେ ଜଳକେଳି କରନ୍ତି ଏବଂ ତୀରରେ ରାସ କରନ୍ତି । ଏହି କୁଣ୍ଡରେ ଥରେ ସ୍ନାନ କଲେ ସ୍ନାନକାରୀଙ୍କୁ ଶ୍ରୀକୃଷ୍ଣ ରାଧାଙ୍କୁ ପ୍ରେମଦାନ-କଲପରି ପ୍ରେମଦାନ କରିଥାନ୍ତି ।' (ଚୈ.ଚ ମଧ୍ୟଲୀଳା, ୧୮।ପୃ ୫୧୫) ଏଥିରୁ ସୂଚିତ ହୁଏ ଯେ ବୃନ୍ଦାବନରେଥିବା ଶ୍ୟାମକୁଣ୍ଡ ଓ ରାଧାକୁଣ୍ଡ ରାଧା ଓ କୃଷ୍ଣଙ୍କଭଳି ପୂଜାହ ଓ ପରମ ପ୍ରେମାସ୍ପଦ ।

ଗୋପାଳ ତାପିନୀର ବର୍ଣ୍ଣନାନୁଯାୟୀ ଏହି ବୃନ୍ଦାବନ ହେଉଛି ଦ୍ୱାଦଶବନ ବିଶିଷ୍ଟ । ଏହି ଗ୍ରନ୍ଥରେ ଦ୍ୱାଦଶ ବନର ବିସ୍ତୃତ ବିବରଣୀ ପ୍ରଦାନ କରାଯାଇ ବନଗୁଡ଼ିକର ଯେଉଁ ନାମ ପ୍ରଦାନ କରାଯାଇଛି ତାହା ଏହିପରି । ଯଥା ବୃହଦ୍‌ବନ, ମଧୁବନ, ତାଳବନ, କାମ୍ୟବନ, ବହୁଳାବନ, କୁମୁଦବନ, ଖଦିରବନ, ଭଦ୍ରବନ, ଭାଣ୍ଡୀରବନ, ଶ୍ରୀବନ, ଲୋହବନ, ଓ ବୃନ୍ଦାବନ । ଏହି ବୃନ୍ଦାବନର ଅବସ୍ଥିତ କେନ୍ଦ୍ରସ୍ଥଳରେ ଓ ଏହା ବୃନ୍ଦାଦେବୀଙ୍କର ତପସ୍ୟାରେ ନିର୍ମିତ ହୋଇଥିଲା ଅନ୍ୟ ଏକାଦଶଟି ବନ ସମାନ୍ୱୟରେ ବୃନ୍ଦାବନକୁ ବେଷ୍ଟନ କରିଅଛି । ମଥୁରାପୁରୀର ଏହି ଦ୍ୱାଦଶ ବନରେ ଦ୍ୱାଦଶ ଆଦିତ୍ୟ (ବରୁଣ, ସୂର୍ଯ୍ୟ, ବେଦାଙ୍ଗ, ଭାନୁ, ଇନ୍ଦ୍ର, ରବି, ଗଭସ୍ତିମାନ, ଯମ, ହିରଣ୍ୟରେତା, ଦିବାକର, ମିତ୍ର ଓ ବିଷ୍ଣୁ), ଏକାଦଶ ରୁଦ୍ର (ବୀରଭଦ୍ର, ଶମ୍ଭୁ, ଗିରିଶ, ଅଜୈକପାଦ, ଅହିର୍ବୁଧ୍ନ, ପିନାକୀ, ଭୁବନେଶ୍ୱର, କପାଳୀ, ଦିକ୍‌ପତି, ସ୍ଥାଣୁ, ଓ ଭଗ), ଅଷ୍ଟବସୁ (ଧ୍ରୁବ, ଧର, ସୋମ, ଆପ, ଅନଳ, ଅନିଳ, ପ୍ରତ୍ୟୂଷ ଓ ପ୍ରଭାସ), ସପ୍ତର୍ଷି (କଶ୍ୟପ, ଅତ୍ରି, ଭରଦ୍ୱାଜ, ବିଶ୍ୱାମିତ୍ର, ଗୌତମ, ଯମଦଗ୍ନି ଓ ବଶିଷ୍ଠ), ପଞ୍ଚବିନାୟକ (ମୋଦ, ପ୍ରମୋଦ, ଆମୋଦ, ସୁମୁଖ, ଓ ଦୁର୍ମୁଖ), ଅଷ୍ଟଲିଙ୍ଗ, (ରଙ୍ଗେଶ୍ୱର, ଭୂତେଶ୍ୱର, ଅର୍ଦ୍ଧକେଶ୍ୱର, ଗଣେଶ୍ୱର, ନୀଳକଣ୍ଠେଶ୍ୱର, ବଙ୍କେଶ୍ୱର ଗୋପାଳେଶ୍ୱର ଓ ଭଦ୍ରେଶ୍ୱର ଏବଂ ବ୍ରହ୍ମା ଓ ନାରଦ ସଦାସର୍ବଦା ଅବସ୍ଥାନ କରିଥାଆନ୍ତି । ଏହି ବୃନ୍ଦାବନର ଅଧିଷ୍ଠାତା ଦେବତା ହେଉଛନ୍ତି ଗୋପେଶ୍ୱର ଶିବ ଓ ଅଧିଷ୍ଠାତ୍ରୀଦେବୀ ହେଉଛନ୍ତି କାତ୍ୟାୟନୀ ।

ଶ୍ରୀକୃଷ୍ଣଙ୍କର ଏହି ନିତ୍ୟଧାମ ହିଁ ଗୋଲୋକ ନାମରେ ଖ୍ୟାତ । ଗୋଲୋକର ଅର୍ଥ ଜ୍ୟୋତିର୍ମୟ ଭୁବନ । ବୈଦିକ ଯୁଗରେ ପ୍ରଧାନ ଦେବତା ସୂର୍ଯ୍ୟଙ୍କର ଭୁବନକୁ ବା ସୂର୍ଯ୍ୟଲୋକକୁ ଗୋଲୋକ କୁହାଯାଉଥିଲା । ମାତ୍ର ପରବର୍ତ୍ତୀ କାଳରେ ସୂର୍ଯ୍ୟ ଉପାସନା ବିଷ୍ଣୁ ଉପାସନାରେ ଓ ବିଷ୍ଣୁ ଉପାସନା କୃଷ୍ଣ ଉପାସନାରେ ପରିଣତ ହେବାବେଳେ ଶ୍ରୀକୃଷ୍ଣଙ୍କର ନିତ୍ୟଧାମ ଗୋଲୋକ ନାମରେ ଅଭିହିତ ହୋଇଛି । ଚତୁର୍ଦ୍ଦଶ-ବ୍ରହ୍ମାଣ୍ଡର ଷୋଳଭୁବନ ବା ଷୋଳଟି ଲୋକର ଊର୍ଦ୍ଧ୍ୱରେ ଏହି ଗୋଲୋକ

ଅବସ୍ଥିତ ବୋଲି ବହୁନ୍ଧ ଉପନିଷଦ୍‌ରୁ ଜଣାଯାଏ । ଏହି ଗୋଲକକୁ ଶ୍ୱେତଦ୍ୱୀପ କୁହାଯାଇଥାଏ । ସେହି ଦ୍ୱୀପବାସୀଗଣ ସୂର୍ଯ୍ୟଙ୍କପରି ତେଜସ୍ୱୀ ଓ ରୁଦ୍ରଙ୍କପରି ସ୍ନିଗ୍ଧ ଦର୍ଶନ । ଶ୍ରୀ ଜୀବଗୋସ୍ୱାମୀ ଶ୍ରୀକୃଷ୍ଣ ସନ୍ଦର୍ଭରେ ଏହି ଦ୍ୱୀପ ବିଷୟରେ କହିଛନ୍ତି ଯେ, ଶ୍ୱେତଦ୍ୱୀପ ହେଉଛି ଚତୁଷ୍କୋଣା-କୃତି । ଏହାର ଅଭ୍ୟନ୍ତରରେ ଗୋକୁଳାଖ୍ୟ ମହତ୍ପଦ ରହିଛି । ଶ୍ୱେତଦ୍ୱୀପ ଓ ଗୋକୁଳ ଏ ଉଭୟ ଗୋଲୋକ ନାମରେ ଖ୍ୟାତ । ବ୍ରହ୍ମ ସଂହିତା ଗ୍ରନ୍ଥରେ ମଧ୍ୟ ଏହାକୁ ସ୍ୱୀକାରକରି କୁହାଯାଇଛି ଯେ ଶ୍ୱେତଦ୍ୱୀପର ଚତୁଃକୋଣରେ ଚତୁର୍ମୂର୍ତ୍ତି (ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ)-ଙ୍କର ଚାରିଟି ଧାମଅଛି । ଜ୍ୟୋତିର୍ମୟ ସଦାନନ୍ଦ ପରାତ୍ପର ଭଗବାନ୍ ଏହି ଶ୍ୱେତଦ୍ୱୀପ ଧାମରେ ବିରାଜିତ ଅଛନ୍ତି । ପୁନଶ୍ଚ ଏହି ବ୍ରହ୍ମସଂହିତାରେ ଅନ୍ୟତ୍ର କୁହାଯାଉଛି, 'ସହସ୍ରଦଳ କମଳ ସଦୃଶ ଗୋକୁଳ ହେଉଛି ମହତ୍ପଦ । ସେହି ପଦ୍ମର କେଶରକୁ ସେହି ମହତ୍ପଦ କୁହାଯାଇଥାଏ । ଏହି ସ୍ଥାନରେ ଅନନ୍ତଙ୍କ ଅଂଶରୁ ଜାତ ବଳରାମ ସର୍ବଦା ବିରାଜିତ ଥାଆନ୍ତି । ସେହି ସହସ୍ରଦଳ କମଳର କର୍ଣ୍ଣିକାର ବା କେଶର ହେଉଛି ମହାମନ୍ତ୍ର । ଏହା ଷଟ୍‌କୋଣଯୁକ୍ତ, ବଜ୍ରକୀଳକ ବିଶିଷ୍ଟ, ଅଙ୍ଗଷଟ୍କ ସମନ୍ୱିତ ଷଟ୍‌ପଦସ୍ଥାନ । ଏହା ପ୍ରକୃତି ଓ ପୁରୁଷଙ୍କର ବିହାରବେଦୀ । ଏହି ସ୍ଥାନରେ ଜ୍ୟୋତିରୂପ କାମବୀଜ ଦ୍ୱାରା ସଙ୍ଗତ ହୋଇ ପ୍ରେମାନନ୍ଦରେ ପ୍ରକୃତି ପୁରୁଷ ଅବସ୍ଥାନ କରନ୍ତି । ଶ୍ରୀକୃଷ୍ଣଙ୍କର ଅଂଶ ସମ୍ଭୂତ ସ୍ତ୍ରୀଗଣ (ଗୋପାଙ୍ଗନା) ସେହି ପଦ୍ମର କେଶର ବା ପତ୍ରସ୍ୱରୂପ । (୫\୨ ୩) ଏହି ବ୍ରହ୍ମ ସଂହିତାରେ ଆଦିପୁରୁଷ ଗୋବିନ୍ଦଙ୍କୁ ନିଖିଳ ବ୍ରହ୍ମାଣ୍ଡର ଆତ୍ମସ୍ୱରୂପ ଭାବେ ଅଭିହିତ କରାଯାଇ ସେ ହ୍ଲାଦିନୀଶକ୍ତିରୂପା ଗୋପୀଗଣଙ୍କ ସହିତ ଗୋଲୋକ ଧାମରେ ବାସ କରୁଥିବା କୁହାଯାଇଛି । (୫\୩୭)

'ବ୍ରହ୍ମସଂହିତା' ଗ୍ରନ୍ଥଟି ଶୁଦ୍ଧରାଗାନୁଗା ଭକ୍ତି ପରମ୍ପରାର ଏକ ଆଦର୍ଶ ଗ୍ରନ୍ଥ ହୋଇଥିବାରୁ ବୃନ୍ଦାବନର ପରିକଳ୍ପନା ଏହି ଗ୍ରନ୍ଥର ବର୍ଣ୍ଣନା ଉପରେ ଆଧାରିତ ହୋଇଥିବାର ଅନୁମାନ କରାଯାଏ । ଏତଦ୍‌ବ୍ୟତୀତ ପଦ୍ମ ପୁରାଣ, ବ୍ରହ୍ମ ବୈବର୍ତ୍ତପୁରାଣ, ବୃହଦ୍ ଗୌତମୀୟ ତନ୍ତ୍ର, ପୁରୁଷୋତ୍ତମ ତାପିନୀ ପ୍ରଭୃତି ଗ୍ରନ୍ଥର ପ୍ରଭାବ ଏହି ବୃନ୍ଦାବନ ପରିକଳ୍ପନା ଉପରେ ପଡ଼ିଅଛି ।

ଏହି ବଙ୍ଗୀୟ ପୁରାଣମାନଙ୍କରେ ମଧ୍ୟ ବୃନ୍ଦାବନର ପ୍ରଶସ୍ତି ଦେଖାଯାଏ । ଯଥା—

'ତ୍ରୈଲୋକ୍ୟେ ପୃଥିବୀ ଧନ୍ୟା ଯତ୍ର ବୃନ୍ଦାବନ ପୁରୀ
ତତ୍ରାପି ଗୋପିକାଃ ପାର୍ଥ ଯତ୍ର ରାଧାଭିଧା ମମ' (ଆଦିପୁରାଣ)
—'ଅହୋ ମଧୁପୁରୀ ଧନ୍ୟା ବୈକୁଣ୍ଠାଚ ଗରୀୟସୀ
ଦିନମେକଂ ନିବାସେନ ହରୌ ଭକ୍ତିଃ ପ୍ରଜାୟତେ

*   *

ନିତ୍ୟଂ ମେ ମଥୁରାଂ ବିଦ୍ଧି ବନଂ ବୃନ୍ଦାବନଂ ତଥା
ଯମୁନାଂ ଗୋପକନ୍ୟାଶ୍ଚ ତଥା ଗୋପାଳ ବାଳକାନ୍'
(ପଦ୍ମପୁରାଣ)

—'ତତୋ ବୃନ୍ଦାବନଂ ପୁଣ୍ୟଂ ବୃନ୍ଦାଦେବୀ ସମାଶ୍ରିତମ୍
ହରିଣାଧିଷ୍ଠିତଂ ତଚ୍ଚ ବ୍ରହ୍ମରୁଦ୍ରାଦି ସେବିତମ୍
ବୃନ୍ଦାବନଂ ସୁଗହନଂ ବିଶାଳାଂ ବିସ୍ତୃତଂ ବହୁ
ମୁନୀନାମାଶ୍ରମୈଃ ପୂର୍ଣ୍ଣଂ ବନ୍ୟବୃନ୍ଦ ସମନ୍ୱିତମ୍
ଯଥା ଲକ୍ଷ୍ମୀ ପ୍ରିୟତମା ଯଥା ଭକ୍ତି ପରାନରାଃ
ଗୋବିନ୍ଦସ୍ୟ ପ୍ରିୟତମଂ ତଥା ବୃନ୍ଦାବନ 'ଭୁବି' (ସ୍କନ୍ଦପୁରାଣ)

ବଙ୍ଗୀୟ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ଏହି ବୃନ୍ଦାବନ ତତ୍ତ୍ୱ ଓଡ଼ିଶାର ବୈଷ୍ଣବ ଗୋସ୍ୱାମୀମାନଙ୍କଦ୍ୱାରା ପରବର୍ତ୍ତୀକାଳରେ ବହୁ ଚର୍ଚ୍ଚିତ ହୋଇଥିଲା । ସଂସ୍କୃତରେ ରଚିତ ଓଡ଼ିଶାର ବୈଷ୍ଣବ ଗୋସ୍ୱାମୀ ରାଧାକୃଷ୍ଣ ଗୋସ୍ୱାମୀଙ୍କର ସାଧନ ଦୀପିକା, ଗୋପାଳଗୁରୁ ଗୋସ୍ୱାମୀଙ୍କର 'ଗୋପାଳଗୁରୁ ପଦ୍ଧତି', ଧ୍ୟାନଚନ୍ଦ୍ର ଗୋସ୍ୱାମୀଙ୍କର 'ଧ୍ୟାନଚନ୍ଦ୍ର ଗୋସ୍ୱାମୀ' ପଦ୍ଧତି ଓ କୃଷ୍ଣଦାସ ବାବା କୃତ 'ସାଧନା ଚନ୍ଦ୍ରିକା' ପ୍ରଭୃତି ଗ୍ରନ୍ଥରେ ବୃନ୍ଦାବନତତ୍ତ୍ୱର ଚର୍ଚ୍ଚା ଉଲ୍ଲେଖଯୋଗ୍ୟ । ତେଣୁ ଓଡ଼ିଆ ବୈଷ୍ଣବ କବିମାନେ ତାଙ୍କ କାବ୍ୟରେ ବୃନ୍ଦାବନର ମାହାତ୍ମ୍ୟକୁ ଠିକ୍‌ଭାବରେ ବର୍ଣ୍ଣନା କରିଥିଲେ ।

ଓଡ଼ିଆ ବୈଷ୍ଣବ ସାହିତ୍ୟରେ ବୃନ୍ଦାବନକୁ ଚାରିଅଣି କୋଣ ସ୍ଥଳଭାବେ ବର୍ଣ୍ଣନା କରାଯାଇଛି । ଏହି ପରିକଳ୍ପନା ଆଧ୍ୟାତ୍ମିକ ଦୃଷ୍ଟିରୁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ମନୁଷ୍ୟର ଦେହ ଚାରିଅଣି ଅଙ୍ଗୁଳ ବିଶିଷ୍ଟ ।

ବୃନ୍ଦାବନ ହେଉଛି ଏହି ଦେହ । ନାଥ ପରମ୍ପରାରେ ଏହି ଶରୀର ମଧ୍ୟରେ ଷୋଳନ ସ୍ୱରୂପ ପରିକଳ୍ପନା କରାଯାଇଛି । କବିମାନେ ମଧ୍ୟ ବୃନ୍ଦାବନର ଷୋଳ ଆବରଣର କଳ୍ପନାକରି ତାମଧ୍ୟରେ ବିଭିନ୍ନପ୍ରାଣୀ, ନଦୀ, ପର୍ବତ, ବିଭିନ୍ନଲୋକ, ଗୋକୁଳ, ଗୋପାଳ, ଗୋପାଙ୍ଗନା, ସ୍ୱତ୍ୟାଗଣ ପ୍ରଭୃତିଙ୍କୁ ନିର୍ଦ୍ଦେଶକରି ସର୍ବଶେଷ ଆବରଣ ବା ଷୋଡ଼ଶ ଆବରଣରେ ରାଧାକୃଷ୍ଣ ବିହାର କରୁଥିବା କଥା କହିଛନ୍ତି । ଏହାକୁ ମଧ୍ୟ କୁଞ୍ଜ କୁହାଯାଏ । ଏହାର ବର୍ଣ୍ଣନ ନବୀନଙ୍କୁ ଜଣି ପୂଜରି । ମଧ୍ୟ କୁଞ୍ଜର ଚତୁଃପାର୍ଶ୍ୱରେ ଅଷ୍ଟ ସଖୀ-ମାନଙ୍କର କୁଞ୍ଜଗୁଡ଼ିକ ଅବସ୍ଥିତ । ଏହି କୁଞ୍ଜଗୁଡ଼ିକ ଅବସ୍ଥିତ । ଏହି କୁଞ୍ଜଗୁଡ଼ିକରେ ରାଧା-କୃଷ୍ଣଙ୍କର ବିଭିନ୍ନ ଲୀଳା ସଖୀମାନଙ୍କର ସହାୟତାରେ ଅନୁଷ୍ଠିତ ହୋଇଥାଏ ।

ବୈଷ୍ଣବ ଗୋସ୍ୱାମୀମାନଙ୍କ ଦୃଷ୍ଟିରେ ଏହି ବୃନ୍ଦାବନ ହିଁ ପରମ-ଧାମ । ଏହା ସମସ୍ତ 'ସୁ'ର ଆଧାର । ଏଠାରେ ରାଗ, ମାନ, ତମ, ଦ୍ୱନ୍ଦ୍ୱ, ମଂଦ, ଛଂଦ, ଦଣ୍ଡ, ପର, ଦର, କଳଙ୍କ, କୁଟିଳ, ଚପଳ, ପ୍ରଭୃତି ଦୁର୍ଗୁଣର ସ୍ଥାନ ନାହିଁ । ଏହି ଧାମର ପ୍ରାପ୍ତି ନିମନ୍ତେ ବୈଷ୍ଣବ ଗୋସ୍ୱାମୀ-ମାନେ ତାଙ୍କ ଜୀବନରେ ଅହରହ ସାଧନା କରିଥାନ୍ତି । ଏପରିକି ଜୀବନରେ ଥରେ ମାତ୍ର ବୃନ୍ଦାବନ ଦର୍ଶନ କରିବା ହିଁ ସେମାନଙ୍କର ଅଭିଳାଷ ଥାଏ । ତେଣୁ ଓଡ଼ିଆ ବୈଷ୍ଣବ କବିମାନଙ୍କର କାବ୍ୟରେ ତାଙ୍କର ଏହି ଅଭିଳାଷ ଦେଖିବାକୁ ମିଳିଥାଏ । ବିଭିନ୍ନ ପଶୁପକ୍ଷୀ, ଫଳ-ପୁଷ୍ପ ଓ ବୃକ୍ଷଲତା, ପୁଷ୍କରିଣୀ ପାହାଡ଼ ପରିପୂର୍ଣ୍ଣ ଏହି ବୃନ୍ଦାବନ ହିଁ ପରବର୍ତ୍ତୀ-କାଳରେ ଚୈତନ୍ୟ ସମ୍ପ୍ରଦାୟର ପ୍ରଧାନ ପ୍ରଚାର ପୀଠରେ ପରିଣତ ହୋଇ ସମଗ୍ର ଦେଶରେ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର କାର୍ଯ୍ୟକୁ ତ୍ୱରାନ୍ୱିତ କରିଥିଲା । ଏହିଭଳି ଭାବରେ ବୈଷ୍ଣବମାନଙ୍କର ଶ୍ରେଷ୍ଠ ଧାମ ବୃନ୍ଦାବନର ତାତ୍ତ୍ୱିକ ବର୍ଣ୍ଣନା କରିବାରେ ଓଡ଼ିଆ ବୈଷ୍ଣବ କବିମାନେ ଯେଉଁ ପାଣ୍ଡିତ୍ୟ ଓ ବହୁଶାସ୍ତ୍ର ଦର୍ଶିତାର ପରିଚୟ ପ୍ରଦାନ କରିଛନ୍ତି, ତାହା ବିଦଗ୍ଧ ମଣ୍ଡଳୀର ହୃଦୟକୁ ଆକର୍ଷିତ କରିଥାଏ । କବିମାନଙ୍କ ଦ୍ୱାରା ବର୍ଣ୍ଣିତ ଧାମତତ୍ତ୍ୱ ଯେ ସମ୍ପୂର୍ଣ୍ଣ ବୈଷ୍ଣବ ପରମ୍ପରାରେ ସମୃଦ୍ଧ-ତାହା ଉପର୍ଯ୍ୟୁକ୍ତ ଆଲୋଚନାରୁ ସ୍ପଷ୍ଟ ହୋଇଥାଏ ।

(ଙ) ନାମତତ୍ତ୍ୱ :

ଚୈତନ୍ୟପନ୍ଥୀ ବୈଷ୍ଣବମାନେ ସର୍ବଦା ଷୋଡଶ ନାମାତ୍ମକ "ହରେକୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ । ହରେ ରାମ ହରେ ରାମ, ରାମ ରାମ ହରେ ହରେ ।" ମହାମନ୍ତ୍ରଟିକୁ ଜପ କରିଥାନ୍ତି । କଳିସନ୍ତରଣୋପନିଷଦ୍‌ରେ କଳିକଳ୍ମଷ ନାଶକ ମହାମନ୍ତ୍ର ଭାବେ "ହରେ ରାମ, ହରେ ରାମ, ରାମ ରାମ ହରେ ହରେ, ହରେ କୃଷ୍ଣ, ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ"କୁ ନିର୍ଦ୍ଦେଶ କରାଯାଇଥିଲେ ଚୈତନ୍ୟ ପରମ୍ପରାର ମହାମନ୍ତ୍ରଟି ଟିକିଏ ଭିନ୍ନ । ଭିନ୍ନ ଏଇ ଦୃଷ୍ଟିରୁ ଯେ ଏଥିରେ ପ୍ରଥମେ ରାମ ରାମ ଉଚ୍ଚାରଣ କରିବାକୁ କୁହାଯାଇଥିବା ବେଳେ ଚୈତନ୍ୟ ପରମ୍ପରାର ମହାମନ୍ତ୍ରରେ ପ୍ରଥମେ କୃଷ୍ଣନାମ ଉଚ୍ଚାରଣକୁ ଗୁରୁତ୍ୱ ପ୍ରଦାନ କରାଯାଇଛି । ଏହା ଚୈତନ୍ୟପନ୍ଥୀ ବୈଷ୍ଣବମାନଙ୍କର କୃଷ୍ଣପ୍ରୀତିର ପରିଚାୟକ ।

'ଶ୍ରୀହରି ଭକ୍ତିବିଳାସ' ଗ୍ରନ୍ଥରେ କୁହାଯାଇଛି ଯେ, ଭଗବାନଙ୍କର ସମସ୍ତ ନାମର ସମାନ ମହିମା ହେଲେହେଁ ଭଗବତ୍ ସ୍ୱରୂପ ସମୂହ ମଧ୍ୟରେ ଶ୍ରୀକୃଷ୍ଣଙ୍କର କୌଣସି କୌଣସି ନାମର ବିଶେଷତ୍ୱ ରହିଛି । (୧୧।୨୭୫) ଏହାର ଟୀକାରେ ସନାତନ ଗୋସ୍ୱାମୀ କହିଛନ୍ତି ଯେ, 'ରାମ ନୃସିଂହାଦି ବହୁତ ଭଗବାନ୍ ସ୍ୱରୂପ ରହିଛି । ଭଗବାନ ହିସାବରେ ସମସ୍ତେ ସମାନ ହେଲେହେଁ "କୃଷ୍ଣସ୍ତୁ ଭଗବାନ ସ୍ୱୟଂ" ପ୍ରମାଣାନୁଯାୟୀ କୃଷ୍ଣଙ୍କର କିଛି ବିଶେଷତ୍ୱ ରହିଛି । ଅନ୍ୟ ଭଗବତ୍ ସ୍ୱରୂପଗୁଡ଼ିକ 'ସ୍ୱୟଂ ଭଗବାନ' ନୁହନ୍ତି । × × ଶ୍ରୀକୃଷ୍ଣଙ୍କ ନାମ ସ୍ୱୟଂ ଭଗବାନଙ୍କର ନାମ ଓ ଏହା ସମସ୍ତ ଭଗବତ ସ୍ୱରୂପଙ୍କ ନାମର ଫଳ ଦେବାରେ ସମର୍ଥ । ତେଣୁ ଅନ୍ୟ ସମସ୍ତ ନାମ ଅପେକ୍ଷା ଶ୍ରୀକୃଷ୍ଣ ନାମର ବୈଶିଷ୍ଟ୍ୟ ରହିଛି ।" ପ୍ରଭାସ ପୁରାଣରେ ସ୍ୱୟଂ ଭଗବାନ କହିଛନ୍ତି – ହେ ପରନ୍ତପ । ମୋର ସମସ୍ତ ନାମ ମଧ୍ୟରେ କୃଷ୍ଣନାମ ହେଉଛି ଶ୍ରେଷ୍ଠତମ । କାରଣ ଏହା ଅଶେଷ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ଏବଂ ପରମ ମୁକ୍ତିପଦ । ବ୍ରହ୍ମାଣ୍ଡ ପୁରାଣରେ ମଧ୍ୟ କୃଷ୍ଣନାମକୁ ଗୁରୁତ୍ୱ ପ୍ରଦାନ କରି କୁହାଯାଇଛି—

"ସହସ୍ରନାମାଂ ପୁଣ୍ୟାନଂ ତ୍ରିରାବୃତ୍ୟା ତୁ ଯତ୍ ଫଳମ୍
ଏକା ବୃତ୍ୟା ତୁ କୃଷ୍ଣସ୍ୟ ନାମୈକଂ ତତ୍ ପ୍ରଯୁଚ୍ଛତି ।"

ପଦ୍ମୋତ୍ତର ପାତାଳଖଣ୍ଡରେ ଶିବ ପାର୍ବତୀଙ୍କୁ କୃଷ୍ଣନାମର ମାହାତ୍ମ୍ୟ ସମ୍ପର୍କରେ କହିବାକୁ ଯାଇ ତାରକ ଏବଂ ପାରକ ମନ୍ତ୍ର ଜପ-ଫଳାଫଳର ସୂଚନା ଦେଇଛନ୍ତି । ଏଥିରେ କୁହାଯାଇଛି, ଭଗବାନଙ୍କର ଯେତେ ନାମ ବା ମନ୍ତ୍ର ଅଛି, ତନ୍ମଧ୍ୟରୁ ତାରକ (ରାମ ନାମ) ଏବଂ ପାରକ (କୃଷ୍ଣନାମ) ହେଉଛି ଶ୍ରେଷ୍ଠ । 'ତାରକ' ନାମ ଜପ ଫଳରେ ମୁକ୍ତି ମିଳିଥାଏ ଓ କାଶୀ ବାସ ହୋଇଥାଏ । 'ପାରକ' ନାମ ଜପ ଫଳରେ ପ୍ରେମ ଭକ୍ତି ମିଳିଥାଏ । ଯେଉଁ ବ୍ୟକ୍ତି ପାରକ ନାମ ଜପକରେ ସେ ପ୍ରେମ ବିହ୍ୱଳ ହୋଇ ଅଶ୍ରୁତ୍ୟାଗ ପୂର୍ବକ ନୃତ୍ୟ କରି ମୂର୍ଚ୍ଛା ପ୍ରାପ୍ତ ହୋଇଥାଏ । ପାରକ ହେଉଛି ମହାମନ୍ତ୍ର ଓ ଏହା ଋଦ୍ଧି, ସିଦ୍ଧି ପ୍ରଦାନ କରି ଜପକର୍ତ୍ତାଙ୍କୁ ତ୍ରୈଲୋକ୍ୟରେ ପୂଜ୍ୟ କରାଇଥାଏ । ଯେଉଁଠି ପାରକ, ସେଇଠ ଅଷ୍ଟସିଦ୍ଧି ରହିଥାଏ । ଯାହାର ଜିହ୍ୱାରେ ପାରକ ଅବସ୍ଥାନ କରେ, ତାଠାରେ ସନ୍ତୋଷ ସର୍ବଦା ବାସ କରେ ଓ ତାହାର ସମସ୍ତ କାମନା ପରିପୂର୍ଣ୍ଣ ହୋଇଥାଏ । ( ପଦ୍ମପୁରାଣ, ପାତାଳଖଣ୍ଡ, ମଥୁରା ମାହାତ୍ମ୍ୟ )

ଏହିସବୁ ଦୃଷ୍ଟିରୁ ଚୈତନ୍ୟ ସମ୍ପ୍ରଦାୟରେ କୃଷ୍ଣନାମ ଜପକୁ ପ୍ରେମଭକ୍ତିର ସର୍ବଶ୍ରେଷ୍ଠ ମାର୍ଗ ଭାବରେ ଗ୍ରହଣ କରାଯାଇଛି । ତେଣୁ "ଶ୍ରୀଚୈତନ୍ୟ ଚରିତାମୃତ"ରେ କୁହାଯାଇଛି—

"ଏକ କୃଷ୍ଣ ନାମେ କରେ ସର୍ବ ପାପ ନାଶ
ପ୍ରେମେର କାରଣ ଭକ୍ତି କରେନ ପ୍ରକାଶ
ପ୍ରେମେର ଉଦୟେ ହୟ ପ୍ରେମେର ବିକାର
ସ୍ୱେଦ କମ୍ପ ପୁଲକାଦି ଗଦ୍‌ଗଦାଶ୍ରୁଧାର
ଅନାୟାସେ ଭବକ୍ଷୟ କୃଷ୍ଣେର ସେବନ
ଏକ କୃଷ୍ଣ ନାମେର ଫଳେ ପାଇ ଏତେ ଧନ ।"

(ଆଦିଲୀଳ, ୮/୨୨୩)

ରସକଲ୍ଲୋଳକାର ଘନକୃଷ୍ଣ ମଧ୍ୟ ତାଙ୍କ କାବ୍ୟରେ ଏହି କୃଷ୍ଣନାମକୁ ସର୍ବପାପ ବିନାଶକ ଭାବେ ଗ୍ରହଣ କରିଛନ୍ତି—"କୃଷ୍ଣ ନାମରେ ପାପ କ୍ଷୟ

ଯେତେ, କଳିନପାରେ ପାପୀ ପାପ ତେତେ" । ଏହି କୃଷ୍ଣ ନାମକୁ ଓଡ଼ିଆ ବୈଷ୍ଣବ କବିମାନେ ଭୁକ୍ତି ଓ ମୁକ୍ତିର ତଥା ଆନନ୍ଦ ଓ ଆହ୍ଲାଦର ଏକ ସମ୍ମିଶ୍ରିତ ରୂପ ଭାବରେ ଗ୍ରହଣ କରିନେଇଛନ୍ତି । ସେମାନେ ବାରମ୍ବାର ତାଙ୍କ କାବ୍ୟମାନଙ୍କରେ ଷୋଳନାମ ବତିଶ ଅକ୍ଷର ମହାମନ୍ତ୍ରକୁ ଉଲ୍ଲେଖ କରିଅଛନ୍ତି ।

କିନ୍ତୁ ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ମହାମନ୍ତ୍ରରେ ବ୍ୟବହୃତ 'ହରେ' 'ରାମ' ଓ 'କୃଷ୍ଣ'— ଏହି ତିନି ନାମ ପ୍ରତୀକାତ୍ମକ । 'ହରି' ଶବ୍ଦର ଅର୍ଥ ହେଉଛି ସର୍ବଚିତ୍ତର ହରି । 'ରାମ' ଶବ୍ଦର ଅର୍ଥ ହେଉଛି ସର୍ବଚିତ୍ତା-ନନ୍ଦଦାୟକ ଏବଂ 'କୃଷ୍ଣ' ଶବ୍ଦର ଅର୍ଥ ହେଉଛି ସର୍ବଚିତ୍ତାକର୍ଷକ । ଏହି ତିନି ନାମ ଭଗବାନଙ୍କ ସ୍ୱରୂପର ତିନୋଟି ଦିଗ । ଏହି ତିନି ନାମ ପୁଣି ତିନିଯୁଗର ତିନି ଅବତାରଙ୍କର ନାମ । ସତ୍ୟଯୁଗର ଅବତାର ଶ୍ରୀନୃସିଂହଙ୍କର ନାମ ହରି, ତ୍ରେତାଯୁଗର ଅବତାର ରାବଣାରିଙ୍କର ନାମ ରାମ ଓ ଦ୍ୱାପର ଯୁଗର ଅବତାର ଗୋପୀଜନ ବଲ୍ଲଭଙ୍କର ନାମ ଶ୍ରୀକୃଷ୍ଣ । ପ୍ରଥମ ଅବତାର ବିକ୍ରମର, ଦ୍ୱିତୀୟ ଅବତାର ମର୍ଯ୍ୟାଦାର ଓ ତୃତୀୟ ଅବତାର ମାଧୁର୍ଯ୍ୟର ପ୍ରକାଶକ । ତେଣୁ ଏହି ତିନି ନାମର ଏକତ୍ର ଉଚ୍ଚାରଣ ହିଁ ଭଗବତ୍ ସ୍ୱରୂପର ଉପଲବ୍ଧି କରିବାରେ ସମର୍ଥ । କିନ୍ତୁ ଅନୁଗାମୀ ଭେଦରେ କେହି କେହି କୌଣସି ନିର୍ଦ୍ଦିଷ୍ଟ ନାମରେ ଜୋର ଦେଇଥାନ୍ତି ।

ଏ ସମସ୍ତ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ଚୈତନ୍ୟ ପରମ୍ପରାର କବିମାନେ କୃଷ୍ଣନାମ ଜପକୁ ଜୀବନର ଶ୍ରେଷ୍ଠ ସମ୍ପଦ ଭାବରେ ଗ୍ରହଣ କରି କାବ୍ୟ ମଧ୍ୟରେ କୃଷ୍ଣନାମର ମାହାତ୍ମ୍ୟକୁ ବିଭିନ୍ନ ଶାସ୍ତ୍ରର ପ୍ରାମାଣିକ ଆଧାର ଉପରେ ପ୍ରତିଷ୍ଠିତ କରି ପ୍ରତିପାଦନ କରିଛନ୍ତି ।

## (୦) ସୃଷ୍ଟିତତ୍ତ୍ୱ

ଭାରତୀୟ ଧର୍ମ-ଦର୍ଶନରେ ସୃଷ୍ଟିତତ୍ତ୍ୱ ସମ୍ପର୍କରେ ଗଢିଉଠିଥିବା ବିଭିନ୍ନ ପ୍ରକାର ମତ ଯଥା ସତ୍‌ରୁ ସୃଷ୍ଟିତତ୍ତ୍ୱ, ଅସତ୍‌ରୁ ସୃଷ୍ଟି, ବିବର୍ତ୍ତବାଦ କାରଣବାଦ ବେଦାନ୍ତ ଓ ପୁରାଣମାନଙ୍କରେ ପ୍ରସ୍ଫୁଟିତ ହୋଇଛି । ଚୈତନ୍ୟ ପନ୍ଥୀ ବୈଷ୍ଣବଧର୍ମର ସୃଷ୍ଟି ତତ୍ତ୍ୱ ଶ୍ରୀମଦ୍ଭାଗବତର ସୃଷ୍ଟିତତ୍ତ୍ୱକୁ ପୂର୍ଣ୍ଣତଃ ଅନୁସରଣ କରିଛି । ଏହି ସୃଷ୍ଟିତତ୍ତ୍ୱ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ 'ଭାଗବତ ଟୀକା'

ଶ୍ରୀଜୀବଗୋସ୍ୱାମୀଙ୍କ 'ପରମାତ୍ମା ସନ୍ଦର୍ଭ', ବଳଦେବ ବିଦ୍ୟାଭୂଷଣଙ୍କ ଗୋବିନ୍ଦ ଭାଷ୍ୟ, କୃଷ୍ଣଦାସଙ୍କ 'ଶ୍ରୀଚୈତନ୍ୟ ଚରିତାମୃତ' ପ୍ରଭୃତି ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଛି । ଏହି ଗ୍ରନ୍ଥମାନଙ୍କରେ ବ୍ୟାଖ୍ୟାତ ସୃଷ୍ଟିତତ୍ତ୍ୱ ପ୍ରାୟ ଏକ ପ୍ରକାରର ଓ ତାହା ଓଡ଼ିଆ ବୈଷ୍ଣବ କବିମାନଙ୍କର ଗ୍ରନ୍ଥମାନଙ୍କରେ ଅନୁସୃତ ହୋଇଅଛି ।

ଚୈତନ୍ୟପନ୍ଥୀ ବୈଷ୍ଣବଧର୍ମରେ ପରିଣାମବାଦକୁ ସୃଷ୍ଟିତତ୍ତ୍ୱ ରୂପେ ଗ୍ରହଣ କରାଯାଇଛି । ଏଥିରେ ବ୍ରହ୍ମଙ୍କୁ ସୃଷ୍ଟି, ସ୍ଥିତି ଓ ଲୟର କାରଣ ଭାବେ ଗ୍ରହଣ କରାଯାଇଛି । ଅର୍ଥାତ୍ ଯେ ବିଶ୍ୱର ସୃଷ୍ଟି, ସ୍ଥିତି, ଲୟର କାରଣ, ସେ ଯେଉଁଛନ୍ତି ବ୍ରହ୍ମ । ଏହା ମଧ୍ୟ ବିଭିନ୍ନ ଉପନିଷଦ୍ ଦ୍ୱାରା ସମର୍ଥିତ । ସୃଷ୍ଟି ନିମନ୍ତେ ଏହି ବ୍ରହ୍ମ ହେଉଛନ୍ତି ମୁଖ୍ୟ ନିମିତ୍ତ କାରଣ । ପ୍ରକୃତି ହେଉଛି ଗୌଣ ନିମିତ୍ତ କାରଣ । ଶ୍ରୀମଦ୍ ଭଗବତ ଗୀତାରେ କୁହାଯାଇଛି- ମହତ୍ ବ୍ରହ୍ମ(ପ୍ରକୃତି ରୂପକ ବ୍ରହ୍ମ) ହେଉଛି ବ୍ରହ୍ମଙ୍କର ଯୋନି ସ୍ୱରୂପ । ସେଥିରେ ଜଗତ୍ ରୂପକ ଗର୍ଭକୁ ଆଧାନ କରନ୍ତି । (୧୮\୩) ଶ୍ରୀଚୈତନ୍ୟ ଚରିତାମୃତ'ରେ ମଧ୍ୟ ଅନୁରୂପ ମତ ପ୍ରକାଶ କରି କୁହାଯାଇଛି-"ମାୟା ବା ପ୍ରକୃତି ହେଉଛି ବିଶ୍ୱର ନିମିତ୍ତ ହେତୁ । ପୁରୁଷ (ବ୍ରହ୍ମ) ପ୍ରକୃତିକୁ କ୍ଷୋଭିତ କରି ସେଥିରେ ନିଜର ବୀର୍ଯ୍ୟକୁ (ଜୀବରୂପକ ବୀର୍ଯ୍ୟକୁ) ଆଧାନ କରିବା ଫଳରେ ମହତତ୍ତ୍ୱର ଉଦୟ ହୋଇଥାଏ । (ମଧ୍ୟଲୀଳା, ୨୨\୫୭୭-୭୮) ତେଣୁ ଏଥିରୁ ସ୍ପଷ୍ଟ ହୁଏ ଯେ ପୁରୁଷ ଓ ପ୍ରକୃତିର ମିଳନରେ ସୃଷ୍ଟି ସମ୍ଭବ ହୁଏ । ଯାହାଙ୍କଠାରୁ ନାନାବିଧ ଅବତାର ସୃଷ୍ଟି ହୁଅନ୍ତି, ଶାସ୍ତ୍ରରେ ତାହାଙ୍କୁ ପୁରୁଷବୋଲି କୁହାଯାଇଛି । ଏହି ପୁରୁଷ ହେଉଛନ୍ତି ବିଷ୍ଣୁ ବା ଆଦିଦେବ । ଷୋଡ଼ଶ କଳା ବିଶିଷ୍ଟ ଭଗବାନ ବିଷ୍ଣୁ ସୃଷ୍ଟି କରିବା ଇଚ୍ଛାରେ ଦୂରରୁ ମାୟା ବା ପ୍ରକୃତି ପ୍ରତି ଦୃଷ୍ଟିପାତ କଲେ ସେଥିରେ ସ୍ୱ-ଚିତଶକ୍ତିର ସଞ୍ଚାର ଘଟେ । ଫଳରେ ପ୍ରକୃତିରେ ଥିବା ଗୁଣତ୍ରୟର ସାମ୍ୟାବସ୍ଥା ନଷ୍ଟ ହୋଇ ବିକ୍ଷୁବ୍ଧାବସ୍ଥା ସୃଷ୍ଟି ହେବାରୁ ପ୍ରକୃତି କ୍ରିୟାଶୀଳ ହୋଇଥାଏ । ଉପରେ କଥିତ ବିଷ୍ଣୁ ବା ଆଦିଦେବଙ୍କର ତିନୋଟି ରୂପକୁ ତିନି ପୁରୁଷ ଭାବରେ ଶାସ୍ତ୍ରରେ ଗ୍ରହଣ କରାଯାଇଛି । ଏହି ପୁରୁଷ ତିନୋଟି କାର୍ଯ୍ୟ ପାଇଁ ଅଭିପ୍ରେତ ଥାଆନ୍ତି । ଏମାନଙ୍କୁ ପୁରୁଷାବତାର କୁହାଯାଇଥାଏ ।

ସୃଷ୍ଟିର ପ୍ରଥମ ପର୍ଯ୍ୟାୟରେ ସୃଷ୍ଟିର ପ୍ରଥମ ପୁରୁଷ ସଙ୍କର୍ଷଣଙ୍କର କାର୍ଯ୍ୟ ଆରମ୍ଭ ହୁଏ । ଏହାଙ୍କୁ ମହାବିଷ୍ଣୁ ମଧ୍ୟ କୁହାଯାଇଥାଏ । ଆଦିଦେବ ନାରାୟଣଙ୍କର ଦୃଷ୍ଟିପାତରେ ବିକ୍ଷୁବ୍ଧା ପ୍ରକୃତି ସ୍ଥିର ହୋଇ ରହି ନପାରିବାରୁ ଆଦିଦେବ ନାରାୟଣଙ୍କଠାରୁ ପ୍ରଥମ ପୁରୁଷ ସଙ୍କର୍ଷଣ ପ୍ରକଟିତ ହୋଇ ସେହି ପ୍ରକୃତି ମଧ୍ୟରେ କାର୍ଯ୍ୟ (ଆଧାନ ସ୍ଥାପନ) କରନ୍ତି । ବିକ୍ଷୁବ୍ଧା ପ୍ରକୃତିରେ ସଙ୍କର୍ଷଣଙ୍କର ବୀର୍ଯ୍ୟ (ଜୀବ) ବା ଚୈତନ୍ୟମୟୀ ଜୀବଶକ୍ତିର ଆଧାନ ହେବା ଫଳରେ ଚିତ୍ (ପୁରୁଷଙ୍କର ଚିତ୍‌ଶକ୍ତି) ଓ ଅଚିତ୍ (ଜଡ ପ୍ରକୃତି) ମିଶ୍ରିତ ମହତ ତତ୍ତ୍ୱର ବିକାଶ ଘଟିଥାଏ । ମହତ୍ ତତ୍ତ୍ୱ ହେଉଛି ବିଶ୍ୱର ଭ୍ରୂଣାବସ୍ଥା ।

ସୃଷ୍ଟିର ଦ୍ୱିତୀୟ ପର୍ଯ୍ୟାୟରେ ପ୍ରଦ୍ୟୁମ୍ନ ନାମକ ଦ୍ୱିତୀୟ ପୁରୁଷଙ୍କର ଆବିର୍ଭାବ ଘଟେ । ପୂର୍ବୋକ୍ତ ମହତ୍ ଅର୍ଥାତ୍ ଅଣ୍ଡ ବା ବିମ୍ବରେ ପ୍ରଦ୍ୟୁମ୍ନ ଅବଧାନ କରନ୍ତି । ଏହି ଦ୍ୱିତୀୟ ପୁରୁଷଙ୍କୁ ବିରାଟ ରୂପେ କଳ୍ପନା କରାଯାଇ ଚତୁର୍ଦ୍ଦଶ ଭୁବନକୁ ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ବୋଲି କୁହାଯାଇଛି । (ଶ୍ରୀମଦ୍‌ଭାଗବତ, ୨/୧/୨୬) ତାଙ୍କୁ ମଧ୍ୟ ଗର୍ଭୋଦକଶାୟୀ କୁହାଯାଇଥାଏ ।

ସୃଷ୍ଟିର ତୃତୀୟ ପର୍ଯ୍ୟାୟ ବେଳକୁ ଚିତ୍‌ଅଚିତ୍ ଶକ୍ତିର ସଂଯୋଗ ଫଳରେ ମିଶ୍ରିତ ପ୍ରକୃତି ବା ବିଶ୍ୱବ୍ରହ୍ମାଣ୍ଡ କ୍ରମେ ବିକାର ପ୍ରାପ୍ତ ହୋଇଥାଏ ଏବଂ ବିଭିନ୍ନ ଗୁଣର ମାତ୍ରାଧିକ୍ୟରେ ଅହଙ୍କାର ତତ୍ତ୍ୱର ଉଦୟ ହୋଇ-ଥାଏ । ଏହି ଅହଙ୍କାର ତ୍ରିବିଧ ରୂପେ ଆତ୍ମପ୍ରକାଶ କରିଥାଏ । ଯଥା— ସାତ୍ତ୍ୱିକାହଙ୍କାର, ରାଜସାହଙ୍କାର ଓ ତାମସାହଙ୍କାର । ସାତ୍ତ୍ୱିକ ଅହଙ୍କାର ସତ୍ତ୍ୱଗୁଣ ପ୍ରାଧାନ୍ୟ ଓ ଜ୍ଞାନଶକ୍ତିଯୁକ୍ତ ରାଜସାହଙ୍କାର ରଜୋଗୁଣ ପ୍ରାଧାନ୍ୟ ଓ କ୍ରିୟାଶକ୍ତିଯୁକ୍ତ ଏବଂ ତମସାହଙ୍କାର ତମୋଗୁଣ ପ୍ରାଧାନ୍ୟ ଓ ଦ୍ରବ୍ୟଶକ୍ତି ଯୁକ୍ତ । ଅର୍ଥାତ୍ ସାତ୍ତ୍ୱିକ ଅହଙ୍କାରରେ ଜ୍ଞାନସମୂହ ଉତ୍ପାଦନ କରିବାର ସାମର୍ଥ୍ୟ, ରାଜସାହଙ୍କାରରେ କ୍ରିୟା ବା ଇନ୍ଦ୍ରିୟ ସମୂହ ଉତ୍ପାଦନ କରି-ବାର କ୍ଷମତା ଓ ତାମସାହଙ୍କାରରେ ଆକଶାଦି ପଞ୍ଚମହାଭୂତ ଉତ୍ପାଦନ କରିବାର ସାମର୍ଥ୍ୟ ରହିଥାଏ । ଏହି ଅହଙ୍କାରଗୁଡ଼ିକ ବିକାର ପ୍ରାପ୍ତ ହୋଇ ସୃଷ୍ଟି କାର୍ଯ୍ୟ କରିଥାନ୍ତି । ପ୍ରଥମେ ତାମସାହଙ୍କାରରେ ବିକାର ଅବସ୍ଥା ସୃଷ୍ଟି ହୋଇ କ୍ରମେ ପଞ୍ଚ ମହାଭୂତ ଅର୍ଥାତ୍ ଆକାଶ, ବାୟୁ,

ଶବ୍ଦ, ସ୍ପର୍ଶ ଓ ପରିଶେଷରେ ମିଳିତ ହୋଇ ହୁଏ । ଆକାଶରେ ଶବ୍ଦଗୁଣ, ବାୟୁରେ ସ୍ପର୍ଶଗୁଣ, ତେଜରେ ରୂପଗୁଣ, ଜଳରେ ରସଗୁଣ ଓ ପୃଥିବୀରେ ଗନ୍ଧଗୁଣ ଏଗୁଡ଼ିକ ମୌଳିକ ଗୁଣଥିଲେ ହେଁ ପରିଶେଷରେ ପୃଥିବୀରେ କ୍ରମେ ଏ ସମସ୍ତ ପାଞ୍ଚଟିଗୁଣ ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଲକ୍ଷିତ ହୋଇଥାଏ । ଏହିପରିଭାବରେ ତମସାହଙ୍କାରରୁ ପଞ୍ଚ-ମହାଭୂତ ଓ ପଞ୍ଚତନ୍ମାତ୍ରର ବିକାଶ ଘଟିଥାଏ । ଏହାପରେ ରାଜସାହଙ୍କାର ବିକାରପ୍ରାପ୍ତ ହେବା ଫଳରେ ଚକ୍ଷୁ, କର୍ଣ୍ଣ, ଜିହ୍ୱା, ନାସିକା ଓ ତ୍ୱକ୍ ଆଦି ପଞ୍ଚେନ୍ଦ୍ରିୟ ଏବଂ ବାକ୍, ପାଦ, ପାଣି, ପାୟୁ ଓ ଉପସ୍ଥ (ଲିଙ୍ଗ) ଆଦି ପଞ୍ଚକର୍ମେନ୍ଦ୍ରିୟଙ୍କର ସୃଷ୍ଟି ହୁଏ । ତତ୍ପରେ ସାତ୍ତ୍ୱିକ ଅହଙ୍କାରର ବିକାରରୁ ମନ ଏବଂ ମନର ଅଧିଷ୍ଠାତା ଚନ୍ଦ୍ର, ପଞ୍ଚଜ୍ଞାନେନ୍ଦ୍ରିୟ କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା, ନାସିକାର ଦେବତା ଯଥାକ୍ରମେ ଦିକ୍, ବାୟୁ, ସୂର୍ଯ୍ୟ, ବରୁଣ, ଅଶ୍ୱିନୀକୁମାର ଓ ପଞ୍ଚକର୍ମେନ୍ଦ୍ରିୟ ବାକ୍, ପାଣି, ପାଦ, ପାୟୁ, ଉପସ୍ଥର ଅଧିଷ୍ଠାତା ଦେବତା ଯଥାକ୍ରମେ ଅଗ୍ନି, ଇନ୍ଦ୍ର, ଉପେନ୍ଦ୍ର, ମିତ୍ର ଏବଂ ପ୍ରଜାପତିଙ୍କର ସୃଷ୍ଟି ହୋଇଥାଏ ।

ସୃଷ୍ଟିର ପ୍ରଥମ ପର୍ଯ୍ୟାୟରେ ବିକାରପ୍ରାପ୍ତ ସମସ୍ତ ତତ୍ତ୍ୱଗୁଡ଼ିକୁ ଏକତ୍ର ସଂଯୁକ୍ତ କରିବାପାଇଁ ଚତୁର୍ଥପୁରୁଷ ଅନିରୁଦ୍ଧଙ୍କର ଆବିର୍ଭାବ ଘଟିଥାଏ । ସମସ୍ତ ତତ୍ତ୍ୱଗୁଡ଼ିକର ସଂଯୋଗ ଫଳରେ ଜଗତର ଚତୁର୍ଦ୍ଦଶ ଭୁବନର ସୃଷ୍ଟି ସମ୍ଭବ ହୋଇଥାଏ । ଚତୁର୍ଥ ପୁରୁଷାବତାରଙ୍କର ନାଭିପଦ୍ମରୁ ବ୍ରହ୍ମାଙ୍କର ଆବିର୍ଭାବ ଘଟେ ଏବଂ ସେ ବିଶ୍ୱ ଜଗତର ସୃଷ୍ଟି କରନ୍ତି । ସେ ପ୍ରଥମେ ସ୍ଥାବର, ତତ୍ପରେ ତିର୍ଯ୍ୟକ୍ ପ୍ରାଣୀ (ଗୋ, ଗୁଚ, ମହିଷାଦି) ଓ ପରେ ଦେବ, ପିତୃ, ଅସୁର, ମାନବ ପ୍ରଭୃତି ସର୍ଜନା କରିଥାନ୍ତି ।

ଉପରେ ବର୍ଣ୍ଣିତ ଭାଗବତର ସମସ୍ତ ସୃଷ୍ଟିତତ୍ତ୍ୱ ଶ୍ରୀଚୈତନ୍ୟ ଚରିତାମୃତରେ ଉପସ୍ଥାପିତ ହୋଇଛି । ସୃଷ୍ଟିର ଏହି ତତ୍ତ୍ୱ ଚୈତନ୍ୟ ସମ୍ପ୍ରଦାୟରେ ସ୍ୱୀକୃତ ହୋଇଥିଲା ।

(ଡ) ଦୂତୀଭେଦ :

ବୈଷ୍ଣବ ସାହିତ୍ୟରେ ଦୂତୀମାନଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ରାଧା କୃଷ୍ଣଙ୍କର ପ୍ରେମଲୀଳା ସମ୍ପାଦନାରେ ଏମାନଙ୍କର ସହାୟତା ଏକାନ୍ତ

ଅବଶ୍ୟକ ହୋଇପଡ଼ିଥାଏ । ତେଣୁ ଚୈତନ୍ୟ ସମ୍ପ୍ରଦାୟର ପ୍ରଧାନଗ୍ରନ୍ଥ 'ଉଜ୍ଜ୍ୱଳନୀଳମଣି'ରେ ବର୍ଣ୍ଣିତ ଦୂତୀ ପ୍ରକରଣ ଅନୁଯାୟୀ ବୈଷ୍ଣବ କାବ୍ୟକାରମାନେ ସ୍ୱକାବ୍ୟ ମଧ୍ୟରେ ଏହି ଦୂତୀଭେଦର ଉପସ୍ଥାପନା କରିଛନ୍ତି ।

ବୈଷ୍ଣବ ସାହିତ୍ୟରେ ଦୂତୀମାନଙ୍କୁ ମୁଖ୍ୟ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା ସ୍ୱୟଂ ଦୂତୀ ଓ ଆପ୍ତଦୂତୀ ।

**ସ୍ୱୟଂଦୂତୀ** ଯେଉଁ ଦୂତୀ ଅତ୍ୟନ୍ତ ଔତ୍ସୁକ୍ୟ ବଶତଃ ଲଜ୍ଜାହୀନା ହେତୁ ରାଗବଶତଃ ଅତି ବିମୋହିତ ହୋଇ ନିଜର ଅଭିପ୍ରାୟ ପ୍ରକାଶ କରିଥାଏ ତାହାକୁ ସ୍ୱୟଂଦୂତୀ କୁହାଯାଇଛି । ସେମାନଙ୍କର ଏହି ଅଭିପ୍ରାୟ ପ୍ରକାଶକୁ ତିନି ଭାଗରେ ଗ୍ରହଣ କରାଯାଇଛି । ଯଥା -- ବାଚିକ, ଆଙ୍ଗିକ ଓ ଚାକ୍ଷୁଷ । ବ୍ୟଞ୍ଜନା ବୃତ୍ତିମୟ ବାଗ୍‌ବିଳାସକୁ ବାଚିକ, ଅଙ୍ଗଭଙ୍ଗୀଦ୍ୱାରା ଅଭିପ୍ରାୟ ପ୍ରକାଶିତ ହେଲେ ତାହାକୁ ଆଙ୍ଗିକ ଓ ନେତ୍ରବିସ୍ମିତ, ନେତ୍ରାର୍ଦ୍ଧ ମୁଦ୍ରା, ନେତ୍ରାନ୍ତ ଭ୍ରମଣ, ନେତ୍ରାନ୍ତ ସଙ୍କୋଚନ, ବକ୍ରଦୃଷ୍ଟି, କଟାକ୍ଷ ପ୍ରଭୃତିକୁ ଚାକ୍ଷୁଷ ଅଭିଯୋଗ କୁହାଯାଇଥାଏ । ବାଚିକ ଅଭିଯୋଗ ମଧ୍ୟ ବିଭିନ୍ନ ପ୍ରକାରର ଓ ସେଗୁଡ଼ିକ ପ୍ରତ୍ୟେକ ଶବ୍ଦୋତ୍ଥ ଓ ଅର୍ଥୋତ୍ଥ ଭେଦରେ ଦୁଇ ଦୁଇ ପ୍ରକାର ହୋଇଥାନ୍ତି । ଆଙ୍ଗିକ ଅଭିଯୋଗଗୁଡ଼ିକ ଅଙ୍ଗୁଳି-ସ୍ଫୋଟନ, ଅଙ୍ଗାଚ୍ଛାଦନ, ଚରଣେ ଭୂଲେଖା (ପଦରେ ଭୂମିଲେଖନ), କର୍ଣ୍ଣକଣ୍ଡୂ, ତିଳକକ୍ରିୟା, ବେଶକ୍ରିୟା, ଭ୍ରୂକମ୍ପନ, ସଖୀପ୍ରତି ଆଲିଙ୍ଗନ, ସଖୀତାଡ଼ନ, ଅଧର ଦଂଶନ, ମଣ୍ଡନ ଶିଞ୍ଜିତ ବା ଅଳଙ୍କାରଧ୍ୱନି, ବାହୁମୂଳ ପ୍ରକଟନ, କୃଷ୍ଣନାମ ଲିଖନ, ତରୁରେଲତା ସଂଯୋଗ ପ୍ରଭୃତି ମାଧ୍ୟମରେ ପ୍ରକାଶିତ ହୋଇଥାଏ ।

**ଆପ୍ତଦୂତୀ**— ଯେଉଁ ଦୂତୀ ପ୍ରାଣ ବିନାଶ ହେଲେ ବି ବିଶ୍ୱାସ ଭଙ୍ଗ କରେନାହିଁ, ଯେ ବାକ୍ୟ ପ୍ରୟୋଗରେ ନିପୁଣା ଓ ସ୍ନେହଶୀଳା ବୈଷ୍ଣବ ସାହିତ୍ୟରେ ତାହାକୁ ଆପ୍ତଦୂତୀ ବୋଲି କୁହାଯାଇଛି । ଏହି ଦୂତୀ **ଅମିତାର୍ଥା, ନିସୃଷ୍ଟାର୍ଥା** ଓ ପତ୍ରହାରିଣୀ ଭେଦରେ ତ୍ରିବିଧ । ଯେଉଁ ଦୂତୀ ନାୟକ ଓ ନାୟିକାଙ୍କର ଇଙ୍ଗିତ ଜାଣି ବିବିଧ ଉପାୟରେ ତାଙ୍କର ମିଳନ ସମ୍ପାଦନ

କରାଇଥାଏ, ସେହି ଆପ୍ତଦୂତୀଙ୍କୁ ଅମିତାର୍ଥା କୁହାଯାଏ । ନାୟକ ବା ନାୟିକାଙ୍କ ଦ୍ୱାରା କାର୍ଯ୍ୟପ୍ରାପ୍ତ ହୋଇ ଯୁକ୍ତିଦ୍ୱାରା ଉଭୟଙ୍କର ମିଳନ ଯେଉଁ ଆପ୍ତ ଦ୍ୱାରା ସମ୍ଭବ ହୋଇଥାଏ । ତାଙ୍କୁ ନିସୃଷ୍ଟାର୍ଥା ଦୂତୀ କୁହାଯାଏ । ତେବେପରି ଯେଉଁ ଦୂତୀ କେବଳ ନାୟକ ଓ ନାୟିକାଙ୍କ ମଧ୍ୟରେ ବାର୍ତ୍ତା ବା ପତ୍ର ବହନମୟ କାର୍ଯ୍ୟ କରାଇଥାଏ, ସେ ପତ୍ରହାରିଣୀ ଦୂତୀ ଭାବେ ପରିଚିତ ।

ଏହିସବୁ ମୁଖ୍ୟ ଦୂତୀ ବ୍ୟତୀତ ବୈଷ୍ଣବ କବିମାନେ କେହି କେହି ତପସ୍ୱିନୀ ବେଶଧାରିଣୀଙ୍କ ଦୂତୀଙ୍କୁ ଲିଙ୍ଗିନୀ ଦୂତୀ ଓ ବୃନ୍ଦାବତୀଙ୍କୁ ବନଦେବୀ ଦୂତୀ ଭାବେ ଗ୍ରହଣ କରିଛନ୍ତି, କିନ୍ତୁ ଉପରେ ବର୍ଣ୍ଣିତ ସମସ୍ତ ଦୂତୀଙ୍କୁ ବାଦ୍ ଦେଲେ 'ଉଜ୍ଜ୍ୱଳନୀଳମଣି' ଗ୍ରନ୍ଥରେ ଆଉ କେତେକ ଦୂତୀଙ୍କୁ ଦେଖି-ବାକୁ ମିଳିଥାଏ । ସେମାନେ ହେଲେ ଶିଳ୍ପକାରୀ ଦୂତୀ, ଦୈବଜ୍ଞା ଦୂତୀ, ପରିଚାରିକା ଦୂତୀ, ଧାତ୍ରେୟୀ ଦୂତୀ ଓ ଦୂତୀକାର୍ଯ୍ୟ କରୁଥିବା ସଖୀ । ରୂପଗୋସ୍ୱାମୀ ଏହି ଦୂତୀମାନଙ୍କର ବିଭିନ୍ନ କାର୍ଯ୍ୟ ମଧ୍ୟ ଉକ୍ତ ଗ୍ରନ୍ଥରେ ନିରୂପଣ କରିଛନ୍ତି । ମାତ୍ର ଓଡ଼ିଆ ବୈଷ୍ଣବ ସାହିତ୍ୟରେ ଏହି ଦୂତୀ-ମାନଙ୍କର ପରିଚୟ ମିଳେନାହିଁ । ଉପରେ ବର୍ଣ୍ଣିତ ଦୁଇ ମୁଖ୍ୟ ଦୂତୀଙ୍କୁ ଓଡ଼ିଆ ବୈଷ୍ଣବ କବିମାନେ ବର୍ଣ୍ଣନା କରି ଉଜ୍ଜ୍ୱଳ ନୀଳମଣି ଗ୍ରନ୍ଥର ଆଧାରରେ ସେମାନଙ୍କର କାର୍ଯ୍ୟକୁ ନିର୍ଦ୍ଦେଶିତ କରିଛନ୍ତି । ରାଧାକୃଷ୍ଣଙ୍କର ମିଳନ କାର୍ଯ୍ୟରେ ଏମାନଙ୍କର ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ତାହାକୁ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ଦେଖାଇ ଦିଆଯାଇଛି ।

ଓଡ଼ିଆ ଶୁଦ୍ଧରାଗାନୁଗା ଭକ୍ତି ସାହିତ୍ୟର ଅବବୋଧ ପାଇଁ ଉପର୍ଯ୍ୟୁକ୍ତ ତତ୍ତ୍ୱଗୁଡ଼ିକ୍ର ଅନୁଧ୍ୟାନ ଓ ସ୍ମରଣ ଯେ ଏକାନ୍ତ ଆବଶ୍ୟକ ଏହାକୁ ଅସ୍ୱୀକାର କରିହେବ ନାହିଁ । ଅନେକ ଓଡ଼ିଆ ଗ୍ରନ୍ଥ ସାହିତ୍ୟର ନାୟକ ନାୟିକା ଓ ଶୃଙ୍ଗାର ରସ ବର୍ଣ୍ଣନା ପରିପ୍ରେକ୍ଷୀରେ ରୀତି ଲକ୍ଷଣ ମଣ୍ଡିତ କୃଷ୍ଣକାବ୍ୟର ଅନୁଶୀଳନ କରିବାକୁ ଚେଷ୍ଟା କରିଛନ୍ତି । ଏପ୍ରକାର ଚିନ୍ତା ଆଦୌ ସ୍ୱାଗତ ଯୋଗ୍ୟ ନୁହେଁ । ରୀତି ଲକ୍ଷଣ ମଣ୍ଡିତ କାଳ୍ପନିକ କାବ୍ୟ ଓ କୃଷ୍ଣକାବ୍ୟର ଭାଷା ଅଳଙ୍କାର ଓ ଶୈଳୀ ମଧ୍ୟରେ ଅନେକ ନୈକଟ୍ୟ ରହିଛି । ଏଗୁଡିକ

ତା'ର ଆଙ୍ଗିକ ରୂପ । କିନ୍ତୁ ଆତ୍ମିକ ରୂପ ବିଚାର କଲାବେଳେ ଉଭୟର ପୃଥକ ବାରି ହୋଇଯାଏ । ଦୃଷ୍ଟାନ୍ତ ସ୍ୱରୂପ ରୀତିକାବ୍ୟର ନାୟିକା ନବ-ଉଦ୍‌ଭବଯୁବତୀ ବା ଷୋଡ଼ଶୀ ଓ ପୂର୍ଣ୍ଣଯୌବନା । ପ୍ରଗଲ୍‌ଭ ଲକ୍ଷଣ ତାହାଠାରେ ବେଶୀ ପରିସ୍ଫୁଟ । ତାର ଶରୀରରେ ରହିଛି ସ୍ଥୂଳତା, ଭାଷାରେ ରହିଛି ଏକପ୍ରକାର ଗୌରବବୋଧ ବା ଆତ୍ମମର୍ଯ୍ୟାଦାବୋଧ । ତା'ର ପ୍ରେମରେ ନାହିଁ ତ୍ୟାଗସର୍ବସ୍ୱ ବ୍ୟାକୁଳ ଭାବ । ରୀତିକାବ୍ୟର ନାୟିକା ଠାରେ ଅଳଙ୍କାର, ବେଶଭୂଷା ଓ ବାଗବୈଦଗ୍ଧ୍ୟର କୌଣସି ଶୃଙ୍ଖଳା ବା ନିର୍ଦ୍ଦିଷ୍ଟ ମାତ୍ରାନୁପାତ ନାହିଁ । ସେ ରସିକା ହୋଇପାରେ କିନ୍ତୁ ରସୋତ୍କୃଷ୍ଟ ନୁହେଁ । ଅର୍ଥାତ୍ ରସ ପ୍ରକାଶ କରିବାର ସାମର୍ଥ୍ୟ ତା'ର ନାହିଁ । ରୀତିକାବ୍ୟ ନାୟିକାର ପ୍ରେମ କେବଳ ଉଦ୍ଦାମ ଯୌନ ଶୃଙ୍ଗାରରେ ସୀମାବଦ୍ଧ । କିନ୍ତୁ କୃଷ୍ଣକାବ୍ୟର ନାୟିକାଠାରେ ରହିଛି ଭାବ ବିହ୍ୱଳ ଆତ୍ମସମର୍ପଣତା । ସେହିଭଳି ରୀତିକାବ୍ୟର ନାୟକ ପୂର୍ଣ୍ଣ ଯୌବନପ୍ରାପ୍ତ କାମୀଯୁବକ ମାତ୍ର । ତା'ର ବୟସ, ବେଶ, ହାସ, ବାସ ଓ ଭାଷାରେ ବୈଦଗ୍ଧ୍ୟ, ସରସତା ବା ମୋହନଶୀଳତା ନାହିଁ । କୃଷ୍ଣ କାବ୍ୟର ନାୟକ କେବଳ ପୁରୁଷର ବର୍ଣ୍ଣିତ ଲକ୍ଷଣରେ ପୂର୍ଣ୍ଣ ନୁହେଁ; ସେ ହେଉଛି ପ୍ରେମର ମୂଳଉତ୍ସ । ତା'ର ପ୍ରେମ ମାୟାର ସ୍ପର୍ଶ ଲାଭ କଲେ ଶୃଙ୍ଗାରରେ ପରିଣତ ହୁଏ । ସେ ଚିର କିଶୋର । ତା'ର ଚାହାଣିର ଚଞ୍ଚଳତା, ବାକ୍‌ବିନ୍ୟାସ ବୈଦଗ୍ଧ, ପ୍ରେମିକାର ପ୍ରେମ ପାଇଁ ମନ୍ତ୍ରମୁଗ୍ଧ ଭାବ ସମସ୍ତଙ୍କ ହୃଦୟରେ ଏକ ଅପୂର୍ବ ଆବେଗ ସୃଷ୍ଟି କରିଥାଏ । କୃଷ୍ଣକାବ୍ୟର ଗୌଣ ନାୟିକା ରୀତି କାବ୍ୟର ଦୂତୀ ଶ୍ରେଣୀୟା ନୁହନ୍ତି । ସେମାନେ ଏକ ଏକ ନାୟିକାର ସମସ୍ତ ଗୁଣରେ ପରିପୂର୍ଣ୍ଣା । ସମସ୍ତେ କିଶୋରୀ, କୃଷ୍ଣକାବ୍ୟର ନାୟିକାର କାୟବ୍ୟୂହ ସେମାନେ । କୃଷ୍ଣକାବ୍ୟର ମୁଖ୍ୟ ନାୟିକାଠାରେ ଥିବା ଅପ୍ରକାଶିତ ଗୁଣ ଓ ଲକ୍ଷଣକୁ ପ୍ରକାଶ କରିବା ନିମନ୍ତେ ସେମାନଙ୍କର ଉପସ୍ଥାପନା । କୃଷ୍ଣକାବ୍ୟର ନାୟିକା ଏକପ୍ରକାର, ନିର୍ଦ୍ଦିଷ୍ଟ ଅଳଙ୍କାର, ବାସ ଓ ବେଶରେ ସୀମିତ ହେଲେହେଁ ତାହା ସର୍ବୋତ୍କୃଷ୍ଟତାର ପରିଚାୟକ । କୃଷ୍ଣକାବ୍ୟରେ ବର୍ଣ୍ଣିତ ପୂର୍ବରାଗ, ଅନୁରାଗ, ମିଳନ, ବିଚ୍ଛେଦ—ଏସବୁ ମଧ୍ୟରେ ଚମତ୍କାର ରସର ଅତ୍ୟନ୍ତ ପ୍ରବାହ ରହିଛି, ଯାହା ପାଠକ ହୃଦୟକୁ କେବଳ ଅଭିଭୂତ କରେ ନାହିଁ । ଭାବବିହ୍ୱଳ କରିଥାଏ ଏବଂ ଏହି ଭାବ

ବନ୍ଧୁପ୍ରେମର ଉଦ୍ରେକ ଘଟାଇଥାଏ । ଶ୍ରୀତ କାବ୍ୟର ପ୍ରେମବର୍ଣ୍ଣନା ଉଚ୍ଛୃଙ୍ଖଳ ଯୌନସମ୍ଭୋଗ ପାଇଁ ଉତ୍ତେଜିତ କରିଥାଏ । ତେଣୁ ଶ୍ରୀତକାବ୍ୟ ପରିପ୍ରେକ୍ଷୀରେ କୃଷ୍ଣକାବ୍ୟର ଅନୁଶୀଳନ ଏକ ବିଭ୍ରାନ୍ତିରେ ପର୍ଯ୍ୟବସିତ ହୋଇଅଛି ।

ଉପରେ ଯେଉଁସବୁ ତତ୍ତ୍ୱଗୁଡିକ ଆଲୋଚିତ ହୋଇଛି ତାହାକୁ କୃଷ୍ଣକାବ୍ୟ ଅନୁଶୀଳନରେ ସିମୀତ ନରହି କୃଷ୍ଣକେଳି ସାହିତ୍ୟର ବିଭିନ୍ନ ବିଭାବ ପର୍ଯ୍ୟନ୍ତ ପ୍ରବାହିତ ହୋଇଅଛି । ଏହି ବିଭିନ୍ନ ବିଭାଗଗୁଡିକ ହେଉଛି ଅସଂଖ୍ୟ ଚଉତିଶା, ଚଉପଦୀ, ପୋଇ, ବୋଲି, ଚମ୍ପୂ, ପଦାବଳୀ; ଗୀତିକା ଓ କ୍ଷୁଦ୍ରକାବ୍ୟ । ଏହି ସବୁରେ ଉପର୍ଯ୍ୟୁକ୍ତ ତତ୍ତ୍ୱମାନଙ୍କର ଏକ ଏକ ଦିଗ ଗୋଟିଏ ଗୋଟିଏ ଗୀତିକା ବା ପଦାବଳୀ ରୂପରେ ଆତ୍ମପ୍ରକାଶ କରିଛି । ବନମାଳୀ, ଗୋପାଳକୃଷ୍ଣ, ଦ୍ୱିଜଗୌରଚରଣ ଏବଂ ମାନଗୋବିନ୍ଦ ଓଡା—ଏ ସମସ୍ତ ନିଷ୍ଠାପର ବୈଷ୍ଣବଗଣ ପ୍ରେମମାର୍ଗର ଉପାସକ ଓ ବୈଷ୍ଣବୀୟ ତତ୍ତ୍ୱ ସମ୍ପର୍କରେ ଅବହିତଥିଲେ । ଶ୍ରୀତ ଲକ୍ଷଣ ମଣ୍ଡିତ ବିରାଟ କୃଷ୍ଣ କାବ୍ୟରେ ଦୁର୍ଭେଦ୍ୟ ଗମ୍ଭୀର୍ ମଧ୍ୟରେ ସୂକ୍ଷ୍ମତତ୍ତ୍ୱକୁ ଆଉର ଅବୋଧ ନକରିବା ପାଇଁ ସେମାନେ ସରଳ ଓ ସରସଗୀତିକାକୁ ପଥପ୍ରକାଶକ ମାଧ୍ୟମରୂପେ ଗ୍ରହଣ କରିଛନ୍ତି । ବାସ୍ତବରେ ସେଗୁଡିକ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଉଦାହରଣ ସ୍ୱରୂପ ବନମାଳୀଙ୍କର 'ଶ୍ୟାମ ନାଗର ହେ ଏ ବେଶ ହୋଇବନାହିଁ, ଏ ବେଶ ହୋଇଲେ ପାଷାଣ ତରଳେ ଯୁବତୀ ରହିବେ କାହିଁ', ଗୋପାଳକୃଷ୍ଣଙ୍କର 'ଦୟା ନକରନ୍ତୁ ମୁଁ ଦାସୀସିନାରେ, ଯେ ତାଙ୍କ ମନୋହାରୀ ତା ନଉକରି କରି କରି, ଦିନ ଦେବ ପଛେ ଗୁମାନ ନାରେ,' "ବୟସ କେତେ ତାଙ୍କର ଗୋ ଲଳିତେ, ବୟସ କେତେ ତାଙ୍କର, ନବତରୁଣିମା ବୟସ ତାଙ୍କର ହୋଇଥିବ ବାର ତେର ଗୋ," କବିସୂର୍ଯ୍ୟଙ୍କର 'ଗଲାଣିତ ଗଲା କଥ ରେ ସଙ୍ଗାତ ଗଲାଣିତ ଗଲାକଥା, ଗୁପତେ ସିନା ମୁଁ ତୋତେ ପଚାରିଲି ବୁଲି ପଡ଼ିବାରୁ ବ୍ୟଥା,' ଏବଂ ସର୍ବାଙ୍ଗବିସ୍ମୂରିକ 'ଗୋଲାରେ ପଛେମରୁ, ଆଜତୋ ହୁକୁମରୁ, ନିକୁଞ୍ଜ ଦଉଡକୁ ବାହିଲୁରେ' ଇତ୍ୟାଦି ଅନୁଧ୍ୟାନ ଯୋଗ୍ୟ । ପଦାବଳୀ ଓ ଗୀତିକାଭଳି ଗୀତନାଟ୍ୟଗୁଡିକ ମଧ୍ୟ ଏହି ସବୁ

ଚିତ୍ରରେ ମହିମାନ୍ୱିତ । ଚିକିଟି ରାଜା କିଶୋରଚନ୍ଦ୍ର ରାଜେନ୍ଦ୍ରଙ୍କର 'ଶ୍ରୀରାଧା ପ୍ରେମମାଳା ନାଟକ,' 'ବସନ୍ତ ରାହାସ'ଭଳି ଅନେକ ଗୀତାଭିନୟ ଏ କ୍ଷେତ୍ରରେ ଅନୁଧ୍ୟାନ ଯୋଗ୍ୟ ।

ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ମୁଖ୍ୟତଃ କୃଷ୍ଣସାହିତ୍ୟ । ସେହି ସାହିତ୍ୟର ସୌନ୍ଦର୍ଯ୍ୟ ହିଁ ବୈଷ୍ଣବ ତତ୍ତ୍ୱ ମଧ୍ୟରେ ନିହିତ । ତେଣୁ ବୈଷ୍ଣବ ସାହିତ୍ୟର ତତ୍ତ୍ୱଗୁଡ଼ିକୁ ହୃଦୟଙ୍ଗମ କରିପାରିଲେ କୃଷ୍ଣକାବ୍ୟକୁ ସହଜରେ ଅବଧାରଣା କରିହେବ । ସେହି ଦୃଷ୍ଟିରୁ ମୁଁ ମୋର ଏହି ଗ୍ରନ୍ଥରେ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ବର୍ଣ୍ଣିତ ସମସ୍ତ ତତ୍ତ୍ୱଗୁଡ଼ିକୁ ଆଲୋଚନା କରିଛି । ମୋର ବିଶ୍ୱାସ ଏହି ଗ୍ରନ୍ଥ ବୈଷ୍ଣବ ସାହିତ୍ୟର ସୌନ୍ଦର୍ଯ୍ୟ-ଅବବୋଧ ନିମନ୍ତେ ଯଥେଷ୍ଟ ସହାୟକ ହେବ ।



ସନରାଇଜ ପ୍ରେସ୍, ଶହୀଦ ନଗର, ଭୁବନେଶ୍ୱରରେ ମୁଦ୍ରିତ

# ସଙ୍କେତ ସୂଚୀ

୧ । ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ୍ ତୁହି–ବିଦଗ୍‌ଧ ଚିନ୍ତାମଣି, ୧।୩
୨ । ପ୍ରେମଚିନ୍ତାମଣି, ୬୬।୬୨-୬୯
୩ । ଶ୍ରୀଚୈତନ୍ୟ ଚରିତାମୃତ, ପୃ ୫୮୩
୪ । ବିଦଗ୍‌ଧ ଚିନ୍ତାମଣି, ୪୦।୨୦
୫ । ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ପରିଛେଦ ୨୩, ପୃ ୬୪୩
୬ । ଶ୍ରୀମଭାଗବତ, ୨।୭।୨
୭ । ତତ୍ରୈବ, ୧୦।୧।୨୩
୮ । ଶ୍ରୀ ଲଘୁଭଗବତାମୃତ, ୫।ପୃ ୪୪୧-୪୭୧
୯ । ତତ୍ରୈବ, ୫।୪୯୫
୧୦ । ତତ୍ରୈବ, ୫।ପୃ ୩୮୯-୩୯୧
୧୧ । ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ୨୩।ପୃ ୬୩୭
୧୨ । ଶ୍ରୀମଭାଗବତ, ୧।୩।୨୮
୧୩ । ବ୍ରହ୍ମସଂହିତା, ୫।୪୦
୧୪ । ତତ୍ରୈବ, ୫।୪୮
୧୫ । ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ୨୩।ପୃ ୬୩୭
୧୬ । ତତ୍ରୈବ, ୬୬।ପୃ ୨୯୦-୨୯୩
୧୭ । ତତ୍ରୈବ, ୨୦।ପୃ ୫୬୭
୧୮ । କୃଷ୍ଣୋପନିଷଦ୍, ୧।୧
୧୯ । ଗୋପାଳୋତ୍ତର ତାପିନୀ ଶ୍ରୁତି, ୧୮।୧୫
୨୦ । ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ୨୦।ପୃ ୫୬୭
୨୧ । ବିଷ୍ଣୁପୁରାଣ, ୧।୧୨।୬୯
୨୨ । ଶ୍ରୀ ଜୀବଗୋସ୍ୱାମୀଙ୍କ ଭଗବତ୍‌ସନ୍ଦର୍ଭ, ୧୮୦-୧୮୮
୨୩ । ତତ୍ରୈବ, ୯୮
୨୪ । ଶ୍ରୀମଦ୍‌ଭଗବଦ୍‌ଗୀତା,

୨୫ । ତତ୍ରୈବ
୨୬ । ଶ୍ରୀଚୈତନ୍ୟ ଚରିତାମୃତ, ଆଦିଲୀଳା, ପଞ୍ଚମ ପରିଛେଦ
୨୭ । ଭଗବତ୍ ସନ୍ଦର୍ଭ, .୧୦୨
୨୮ । ଶ୍ରୀ ଜୀବଗୋସ୍ୱାମୀକୃତ ପରମାତ୍ମାସନ୍ଦର୍ଭ, ୫୯
୨୯ । ଭଗବତ୍ ସନ୍ଦର୍ଭ, ୧୦୨
୩୦ । ଶ୍ରୀଚୈତନ୍ୟ ଚରିତାମୃତ, ମଧ୍ୟଲୀଳା, ପରିଛେଦ ୨୧
୩୧ । ତତ୍ରୈବ
୩୨ । ଭକ୍ତିରସାମୃତ ସିନ୍ଧୁଃ, ଦକ୍ଷିଣବିଭଗଃ, ବିଭବବଲ୍ଲରୀ, ଶ୍ଳୋକ-୫ ।
୩୩ । ତତ୍ରୈବ, ଶ୍ଳୋକ ୨୪୬-୪୭
୩୪ । ତତ୍ରୈବ, ଶ୍ଳୋ-୨୭୨
୩୫ । ତତ୍ରୈବ, ଶ୍ଳୋ-୩୩୦
୩୬ । ତତ୍ରୈବ ଶ୍ଳୋ ୩୩୬-୩୩୭
୩୭ । ତତ୍ରୈବ, ଶ୍ଳୋ ୩୬୮-୩୭୨
୩୮ । କୃଷ୍ଣ କର୍ଣ୍ଣାମୃତ, ଶ୍ଳୋ ୯୨
୩୯ । ତତ୍ରୈବ, ଶ୍ଳୋ ୮୨୮
୪୦ । ବୃହଦାରଣ୍ୟକ ଉପନିଷଦ୍, ୩।୯।୧୧
୪୧ । ତୈତିରୀୟ ଉପନିଷଦ୍, ବ୍ରହ୍ମାନନ୍ଦବଲ୍ଲୀ, ୭।୨
୪୨ ; ବୃହଦାରଣ୍ୟକ ଉପନିଷଦ୍, ୨।୫।୧-୧୦
୪୩ । ଶ୍ରୀଚୈତନ୍ୟ ଚରିତାମୃତ, ଆଦିଲୀଳା, ୪।୪୮-୪୯
୪୪ । ସମ୍ମୋହନ ତନ୍ତ୍ରୋକ୍ତ ଗୋପାଳ ସହସ୍ରନାମରେ ପ୍ରଦତ୍ତ
୪୫ । ନାରଦପଞ୍ଚରାତ୍ର, ୨।୩,୫୫-୬୫ :
୪୬ । ପଦ୍ମପୁରାଣ, ପାତାଳଖଣ୍ଡ, ୫୫।୫୩-୫୫
୪୭ । ଶ୍ରୀ ଜୀବଗୋସ୍ୱାମୀକୃତ ଶ୍ରୀକୃଷ୍ଣସନ୍ଦର୍ଭ, ଅନୁଛେଦ ୧୮୭
୪୮ । ଶ୍ରୀଚୈତନ୍ୟ ଚରିତାମୃତ, ଆଦିଲୀଳା, ପରିଛେଦ ୪

—୦—